# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November- 2017**

**୭୪ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର - ୨୦୧୭**



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

**ନଭେମ୍ବର-୨୦୧୭**

# ସୂଚୀ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ଲକ୍ଷ୍ମଣ ନାଏକ



ବିର୍ସା ମୁଣ୍ଡା



ଜୟୀ ରାଜଗୁରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ପଣ୍ଡିତ ଜବାହରଲାଲ ନେହେରୁ





# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ହରେକୃଷ୍ଣ ମହତାବ





ନବକୃଷ୍ଣ ଚୌଧୁରୀ



# ସମ୍ପାଦକୀୟ



ଉତ୍କଳୀୟ ସଂସ୍କୃତି ଓ ପରମ୍ପରା ସମଗ୍ର ବିଶ୍ୱବିଦିତ । ଓଡ଼ିଶାର ପ୍ରାଚୀନ ନାମ କଳିଙ୍ଗ ଏବଂ କଥିତ ଅଛି ଯେ, 'କଳିଙ୍ଗାଃ ସାହସିକାଃ' । ଉତ୍କଳୀୟ ନୌବାଣିଜ୍ୟ ପରମ୍ପରାରେ ସାଧବ ପୁଅର ଅପୂର୍ବ ବୀରତ୍ୱ ସ୍ମରଣ କରାଯାଇଥାଏ । ସାତ ସମୁଦ୍ର ତେର ନଦୀ ପାର ହୋଇ ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ, ଇଣ୍ଡୋନେସିଆ, ବାଲି ଓ ବ୍ରହ୍ମଦେଶକୁ ଯାଇ ବାଣିଜ୍ୟ କରିବା ସହ ଓଡ଼ିଶାର ସମୃଦ୍ଧିରେ ଅତୀତର ସାଧବ ପୁଅର ଭୂମିକା ଥିଲା ଅନନ୍ୟ । ଏତଦ୍‌ବ୍ୟତୀତ ଉକ୍ତ ଦେଶଗୁଡିକରେ ଉତ୍କଳୀୟ ସଂସ୍କୃତି ଓ ପରମ୍ପରାର ନିଦର୍ଶନ ଛାଡି ଆସିବାରେ ସେମାନଙ୍କ ଅବଦାନ ମଧ୍ୟ ସ୍ୱୀକୃତ ଓ ଓଡ଼ିଆ ଜାତି ଗର୍ବିତ ।

ନୌବାଣିଜ୍ୟ, ସ୍ଥାପତ୍ୟବିଦ୍ୟା, ବନ୍ଦର-ଦୁର୍ଗ ସଭ୍ୟତା, ଶିଳ୍ପ ନୈପୁଣ୍ୟ ମନୋବୃତ୍ତି, ଧାନଚାଷର ନିପୁଣତା, ସାହିତ୍ୟର ବିପୁଳାୟତନ ସୌଧ ସମଗ୍ର ବିଶ୍ୱ ଆମଠୁ ପାଇଛି । ଆଉ ଶୁଣାଉଛି ବିଶ୍ୱଜନୀନ ହେବାର ଉଦାତ୍ତପଣ । ବିସ୍ମିତ ହେବାକୁ ପଡେ, କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାରର ତିନିଶହ ବର୍ଷ ପୂର୍ବରୁ କଳିଙ୍ଗାଧିବାସୀ ନାବିକ ଆମେରିକାରେ ବସତି ସ୍ଥାପନ କରିଥିଲେ । ଯେଉଁମାନଙ୍କୁ ଦେଖି କଲମ୍ବସ୍ ସମ୍ବୋଧନ କରିଥିଲେ ଲୋହିତ ଭାରତୀୟ ବୋଲି । ଏହାର ପ୍ରାମାଣିକତା ଆମ ହାତ ପାଆନ୍ତାରେ । ଆମର ବୀରତ୍ୱ, ଯୁଦ୍ଧ କୁଶଳତା ଆମ ପାଇକ ପୁଅର ଗୌରବକୁ ଇତିହାସରେ ସ୍ଥାନିତ କରିଛି । ଯେଉଁଠାରୁ ଦିନେ ରଣ ସଂଗୀତ ଶୁଭିଥିଲା ଆଉ ଅସ୍ତ୍ରାଭ୍ୟାସର ଧ୍ୱନି ଶୁଭୁଥିଲା ରାଇବଣିଆ, ବାରବାଟୀ ପରି ଦୁର୍ଗ ଭିତରୁ । ମାଳମାଳ ଦୁର୍ଗର ଧ୍ୱଂସାବଶେଷ ଆମ ଲଢୁଆପଣର ପ୍ରମାଣ । ପୁନଶ୍ଚ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଆମ ପାଇକ ପୁଅର ପ୍ରାରମ୍ଭିକ ବିଦ୍ରୋହ ଇତିହାସର ମୋଡ ବଦଳାଇବାରେ ସହାୟକ ହୋଇଥିଲା । ଆଜି ସେଇ ସ୍ମୃତିର ଦୁଇଶହ ବର୍ଷ ପୂର୍ତ୍ତି ଅବସରରେ ଏ ଜାତି ଗର୍ବିତ ଓ ରୋମାଞ୍ଚିତ ।

ଜୟଦେବ କୃତ 'ଗୀତଗୋବିନ୍ଦ'ର ଲଳିତ ପଦାବଳୀ ଯେ ଆମ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ଦିନେ ପ୍ରମାଣିତ କରିବ, ଭାବିଲେ ବିସ୍ମିତ ହେବାକୁ ପଡେ । ଡାରଉଇନ୍ ପ୍ରଣୀତ 'ବିବର୍ତ୍ତନ ତତ୍ତ୍ୱ' ୧୮୫୯ରେ ଆଲୋଡନ ସୃଷ୍ଟି କରିଥିଲାବେଳେ ତାହାର ଛଅଶହ ବର୍ଷ ପୂର୍ବରୁ 'ଗୀତଗୋବିନ୍ଦ'ର ଦଶାବତାର ବର୍ଣ୍ଣନାରୁ ତାହାର ସୂଚନା ଆମେ ପାଉ । ପ୍ରଥମେ କିପରି ଜଳଜପ୍ରାଣୀ, ତା'ପରେ ଉଭୟଚର ପ୍ରାଣୀ ଓ ସ୍ତନ୍ୟପାୟୀ ମେରୁଦଣ୍ଡୀ ପ୍ରାଣୀର ସୃଷ୍ଟି ଏହା ଗୀତଗୋବିନ୍ଦର ମୀନ, କଚ୍ଛପ ଓ ବରାହ ଅବତାରକୁ ଦେଖିଲେ ସ୍ପଷ୍ଟ ହୋଇଯାଏ । ପ୍ରକୃତରେ ଦଶାବତାର ହେଉଛି ଜୀବସତ୍ତାର ଦଶଟି ସ୍ତର, ଯାହା ବିଜ୍ଞାନ ସମ୍ମତ । ପୁଣି ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର', ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣ', ଶତାନନ୍ଦଙ୍କ ଗଣିତଗ୍ରନ୍ଥ ଓ ପଠାଣି ସାମନ୍ତଙ୍କ 'ସିଦ୍ଧାନ୍ତ ଦର୍ପଣ' ଆମର ବହୁଶାସ୍ତ୍ରଦର୍ଶିତା ଓ ଯୁକ୍ତିସିଦ୍ଧତାକୁ ପ୍ରମାଣ କରେ ।

ସମୟର କରାଳ ଗର୍ଭରେ ଲୁପ୍ତ ଓଡ଼ିଶାର ଗୌରବ ଆଜି ଫେରିଆସିଛି । ବଢୁଛି ସୁବିଧାସୁଯୋଗ ଓ ବଦଳୁଛି ଓଡ଼ିଶା । ଆଜିର ଓଡ଼ିଶା ସମଗ୍ର ଭାରତବର୍ଷରେ ତଥା ଜାତୀୟସ୍ତରରେ ନିଜର ସୁନାମ ଫେରିପାଇଛି । ସାମଗ୍ରୀକ ଉନ୍ନତିସହ ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଶା ଅଧୁନା ଆଗରେ ଅଛି ।

ସହଭାଗିତା, ଅନୁକୂଳ ପରିବେଶ, ପୁଞ୍ଜିନିବେଶ ଏବଂ ଯଥାର୍ଥ ନୀତି ନିର୍ଦ୍ଧାରଣ ଜରିଆରେ ୨୦୨୦ ସୁଦ୍ଧା ଓଡ଼ିଶାକୁ ଭାରତବର୍ଷର ତୃତୀୟ ସର୍ବଶ୍ରେଷ୍ଠ ଷ୍ଟାର୍ଟ୍ ଅପ୍ ହବ୍‌ରେ ପରିଣତ କରିବା ପାଇଁ ଓଡ଼ିଶା ସରକାର ଷ୍ଟାର୍ଟ୍ ଅପ୍ ପଲିସି – ୨୦୧୬ର ଶୁଭାରମ୍ଭ କରିଛନ୍ତି ।

କୃଷି କ୍ଷେତ୍ରରେ ଚାଷ ଓ ଚାଷୀ ହିତୈଷୀ ଯୋଜନାଗୁଡିକ ସଫଳତାର ସହ କାର୍ଯ୍ୟକାରୀ ହୋଇଛି । ଫଳତଃ ୨୦୦୦ ମସିହାଠାରୁ ଆମ କୃଷି ଉତ୍ପାଦନ ବୃଦ୍ଧି ପାଉଛି ଓ କୃଷକଙ୍କ ଆୟ ଦ୍ୱିଗୁଣିତ ହୋଇପାରିଛି । ଦେଶର ଖାଦ୍ୟ ନିରାପତ୍ତାକୁ ସୁନିଶ୍ଚିତ କରିବା ଦିଗରେ ଓଡ଼ିଶାର ଅବଦାନ ଉଲ୍ଲେଖନୀୟ ହୋଇଛି । ନିକଟରେ କୃଷିକ୍ଷେତ୍ରରେ ରୋଗପୋକ ଉପଦ୍ରବର ସଫଳ ମୁକାବିଲା ନିମନ୍ତେ ରାଜ୍ୟ ସରକାର ୧୨୪ କୋଟି ଟଙ୍କାର ସ୍ୱତନ୍ତ୍ର ପ୍ୟାକେଜ୍ ଘୋଷଣା କରିଛନ୍ତି । ପ୍ରସଙ୍ଗର ରାଜନୀତିକରଣ ଛାଡି ଏପରି ଏକ ଦୁଃସମୟରେ ରାଜ୍ୟ ସରକାର ଚାଷୀମାନଙ୍କ ସହିତ ଅଛନ୍ତି ।

ନିକଟରେ ଅନୁଷ୍ଠିତ ହୋଇଯାଇଥିବା ଜିଲ୍ଲାପାଳ ସମ୍ମିଳନୀରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜିଲ୍ଲାପାଳମାନଙ୍କୁ ଉଦ୍‌ବୋଧନ ଦେଇ ସ୍ଥାନୀୟ ସମସ୍ୟା ପ୍ରତି ଯଥାଯଥ ଗୁରୁତ୍ୱାରୋପ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ଇତିମଧ୍ୟରେ ଭାରତର ରାଜଧାନୀ ନୂଆଦିଲ୍ଲୀଠାରେ ଆୟୋଜିତ ହେବାକୁ ଯାଉଛି ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା । ଚଳିତ ନଭେମ୍ବର ମାସରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହେବାକୁ ଥିବା ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ବିଷୟବସ୍ତୁ 'ଷ୍ଟାର୍ଟ୍ ଅପ୍ ଇଣ୍ଡିଆ' ଧାରାରେ ଷ୍ଟାର୍ଟ୍ ଅପ୍ ଓଡ଼ିଶା : ଷ୍ଟାଣ୍ଡ ଅପ୍ ଓଡ଼ିଶାର ପରିକଳ୍ପନା କରାଯାଇଛି । ଏଥିସହ ବ୍ରହ୍ମପୁରର ପ୍ରସିଦ୍ଧ ଠାକୁରାଣୀ ଯାତ୍ରା ଉପରେ ଧ୍ୟାନ କେନ୍ଦ୍ରୀଭୂତ କରି ଓଡ଼ିଶା ନିମନ୍ତେ ପ୍ରଜ୍ଞାପନ ମେଢ ପ୍ରସ୍ତୁତ କରାଯାଇଛି ।

ଏହି ସଂପାଦକୀୟଟି ଲେଖିଲା ବେଳକୁ ବିମୁଦ୍ରୀକରଣର ଏକ ବର୍ଷ ପୂରିଯାଇଛି । କଳାଧନ ବିରୁଦ୍ଧରେ ଅମୋଘ ଅସ୍ତ୍ର କୁହାଯାଉଥିବା ଏପରି ପଦକ୍ଷେପ ପ୍ରତି ପ୍ରାରମ୍ଭରୁ ଓଡିଶା ସରକାର ସମର୍ଥନ ଜଣାଇଥିଲେ । ପ୍ରଥମରୁ କୁହାଯାଉଥିଲା ଯେ, ଏହି ବିମୁଦ୍ରୀକରଣ ଯୋଗୁଁ କଳାଟଙ୍କାର କାରନାମା କମିଯିବ, ଆତଙ୍କବାଦ ପ୍ରତିହତ ହେବ ଏବଂ ଦେଶ ସମୃଦ୍ଧି ପଥରେ ଆଗେଇ ଯିବ । ତେବେ ଏହି ପଦକ୍ଷେପ ଏପରି କିଛି କରିବାରେ ପ୍ରାୟତଃ ସଫଳ ହେଲାନି । ଦେଶକୁ କଳାଟଙ୍କା ତ ଫେରିଲାନି ଅଧିକନ୍ତୁ ଦେଶର ଜି.ଡି.ପି ସର୍ବନିମ୍ନ ସ୍ତରକୁ କମିଗଲା । ଫଳତଃ ସରକାରୀ ନିଯୁକ୍ତି ହ୍ରାସ ପାଇ ବେକାରି ବଢିଲା, ଆତଙ୍କବାଦ ତା'ର କାୟା ମେଲିଚାଲିଲା । ତା' ସହିତ ତାଳଦେଇ ଦେଶର ଶାନ୍ତି ଓ ପ୍ରଗତି ବ୍ୟାହତ ହେଲା । ଦେଶର ପ୍ରତ୍ୟେକ ବର୍ଗ ଅକଥନୀୟ ଦୁର୍ଦ୍ଦଶା ଭୋଗିଲେ । କଥା କାମରେ ଲାଗିଲାନି । ବିମୁଦ୍ରାୟନ ବିଫଳ ହେଲା ।

ତେବେ ଆମ ଦେଶ ତୁଳନାରେ ଓଡିଶାର ଅଭିବୃଦ୍ଧି ହାର ଅଧିକ ରହିଛି । ଅନେକ ଯୋଜନାର ସଫଳ ରୂପାୟନ ପୂର୍ବକ ଓଡିଶା ଜାତୀୟ ହାରଠାରୁ ଆଗରେ ଅଛି । ଏହା ହିଁ ଆମ ରାଜ୍ୟ ଓ ରାଜ୍ୟବାସୀଙ୍କ ପ୍ରତି ଆଶ୍ୱାସନା । ଆଉ ସେଥିପାଇଁ ତ ଆମ ମୁଖ୍ୟମନ୍ତ୍ରୀ ଦେଶର ଶ୍ରେଷ୍ଠ ପ୍ରଶାସକ ବିବେଚିତ ।

ଲେନିନ୍ ମହାନ୍ତି

**ସମ୍ପାଦକ**

# ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସ୍ୱୟଂ ଆବିର୍ଭାବ

ଜଷ୍ଟିସ୍ ଦୁର୍ଗାପ୍ରସନ୍ନ ଚୌଧୁରୀ

ଶ୍ରୀଜଗନ୍ନାଥ ହିଁ ସମଗ୍ର ମାନବ ଜାତିର ପ୍ରାତଃ ସ୍ମରଣୀୟ ଆରାଧ୍ୟ ଦେବତା ଓ ପ୍ରାଣର ପ୍ରାଣ କଳା ଠାକୁର । ଶ୍ରୀଜଗନ୍ନାଥଙ୍କଠାରେ ସମସ୍ତ ମାନବ ଜାତିର ଅତୁଟ ଭକ୍ତି । ସେହି ମହାପ୍ରଭୁ ଇଷ୍ଟ, ବନ୍ଧୁ, ସହୋଦର, ପିତା, ମାତା, ଗୁରୁ, ମନ, ଆତ୍ମା ଓ ପ୍ରାଣ ।



ଶ୍ରୀକୃଷ୍ଣ ଜରାଶବର ଦ୍ୱାରା ଶରବିଦ୍ଧ ହେଲା ପରେ ଜରାଶବର ଯେତେବେଳେ ଶ୍ରୀକୃଷ୍ଣଙ୍କ ପାଦତଳେ ପଡି କାନ୍ଦୁଥାଏ ସେତେବେଳେ ଶ୍ରୀକୃଷ୍ଣ ତାକୁ କହିଲେ, 'ତୋ ହାତରେ ମୋର ମୃତ୍ୟୁ ସୁନିଶ୍ଚିତ ଥିଲା ।' ଏହା ପରେ ଶ୍ରୀକୃଷ୍ଣଙ୍କ ଆଦେଶରେ ଅର୍ଜୁନ ଏବଂ ଜରାଶବର ମିଶି ଶ୍ରୀକୃଷ୍ଣଙ୍କର ଦାହ କରିଲେ । ସମସ୍ତ ଶରୀର ପୋଡିଗଲା, ହେଲେ ନାଭି ପୋଡିଲା ନାହିଁ । ଏହାକୁ ଜରାଶବର ସମୁଦ୍ରରେ ଭସାଇ ଦେଲେ ।

କିଛିଦିନ ପରେ ଏହି ନାଭିକୁ ଶବର ଜାତିର ଲୋକ ବିଶ୍ୱାବସୁ ପାଇଲେ । ତାଙ୍କୁ ଠାକୁରରୂପେ ନୀଳଗିରି ପାହାଡ ଗୁମ୍ଫାରେ ରଖି ପୂଜା କଲେ । ଠାକୁରଙ୍କ ନାମଦେଲେ ନୀଳମାଧବ । ନୀଳମାଧବଙ୍କ ମହିମାରେ ସେଠାରେ କେହି ଯମଦଣ୍ଡ ଭୋଗିଲେ ନାହିଁ । ନୀଳମାଧବଙ୍କ ମହିମା ଚାରିଆଡେ ବ୍ୟାପିବାରେ ଲାଗିଲା ।

କିଛିଦିନ ପରେ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ କାନରେ ପଡିଲା ନୀଳମାଧବଙ୍କ ମହିମା । ଧର୍ମପରାୟଣ ଓ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ଠାକୁରଙ୍କୁ ନିଜ ରାଜ୍ୟକୁ ଆଣିବାକୁ ଇଚ୍ଛା ପ୍ରକାଶ କଲେ । ନିଜର ମନକଥାକୁ ମନ୍ତ୍ରୀ ବିଦ୍ୟାପତିଙ୍କ ଆଗରେ ପରିପ୍ରକାଶ କଲେ । ରାଜା ଆଜ୍ଞା ପାଇ ବିଦ୍ୟାପତି ନୀଳମାଧବଙ୍କୁ ଆଣିବାକୁ ଯାଇ ପହଞ୍ଚିଲେ ବିଶ୍ୱାବସୁଙ୍କ ପାଖେ । ବିଶ୍ୱାବସୁ ନୀଳମାଧବଙ୍କୁ ଲୁଚାଇ ରଖିଥିବାରୁ ବିଦ୍ୟାପତି ନୀଳମାଧବଙ୍କୁ ଦେଖିବାର ସୁଯୋଗ ପାଇଲେ ନାହିଁ । ବିଶ୍ୱାବସୁଙ୍କ କନ୍ୟା ଲଳିତାର ସାହାଯ୍ୟ ଲୋଡିଲେ ବିଦ୍ୟାପତି । ଲଳିତା ବିଦ୍ୟାପତିଙ୍କ କଥାକୁ ଭାଙ୍ଗି ନପାରି ବିଦ୍ୟାପତିଙ୍କୁ ଠାକୁର ଦର୍ଶନ କରାଇଲେ । ନୀଳମାଧବଙ୍କ ପାଖକୁ ନେବାବେଳେ ଓ ଆସିବାବେଳେ ଲଳିତା ବିଦ୍ୟାପତିଙ୍କ ଆଖିରେ ପଟି ବାନ୍ଧି ଦେଇଥିଲେ ବାଟ ନ ଜଣାଇବା ପାଇଁ । ହେଲେ ବିଦ୍ୟାପତି ବାଟରେ ଗଲାବେଳେ ସୋରିଷ ମଞ୍ଜି ବୁଣି ଯାଇଥିଲେ । ନୀଳମାଧବଙ୍କୁ ଦେଖି ବିଦ୍ୟାପତି ଅତ୍ୟନ୍ତ ମୁଗ୍ଧ ହୋଇଯାଇଥିଲେ । ସମସ୍ତ ବୃତ୍ତାନ୍ତ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲା ପରେ ରାଜା ନୀଳଗିରି ଭ୍ରମଣରେ ବାହାରିଲେ ।

ରାଜା ଇନ୍ଦ୍ରଦ୍ୟୁମ୍ନ ସେଠାରେ ପହଞ୍ଚିଲା ପରେ ଘଟିଲା ଅଦ୍‌ଭୁତ ଘଟଣା । ନୀଳମାଧବ ସଙ୍ଗେ ସଙ୍ଗେ ସେଠାରୁ ଉଭାନ ହୋଇଗଲେ ।

ରାଜାଙ୍କୁ ସ୍ୱପ୍ନାଦେଶ ହେଲା, 'ନିମ୍ବ ଗଛର ବଡ କାଠ ଭାସି ଆସି ଲାଗିବ ସମୁଦ୍ର କୂଳ ବାଙ୍କୀ ମୁହାଣରେ । ତାକୁ ଆଣି ମୂର୍ତ୍ତି ନିର୍ମାଣ କରିବ । ମନ୍ଦିରରେ ସ୍ଥାପନ କରି ପୂଜା କରିବ । କାଳ କାଳ ଧରି ସେଠାରେ ମୁଁ ପୂଜା ପାଇବି' । ଏହା ତାଙ୍କର ଇଚ୍ଛା ନୁହଁ ତ ଆଉ କ'ଣ ?

ଏହା ପରେ ନିର୍ଦ୍ଦେଶ ମୁତାବକ ରାଜା ନିମ୍ବକାଠ ଗଡ ସଂଗ୍ରହ କଲେ । ଯାହା କି ଦାରୁରୂପେ ବିଦିତ । ମୂର୍ତ୍ତି ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । କିନ୍ତୁ ଯେତେ ବଢେଇ ଆସିଲେ ମଧ୍ୟ ମୂର୍ତ୍ତି ଗଢିବାରେ ସମର୍ଥ ହୋଇପାରିଲେ ନାହିଁ । ଏହି ସମୟରେ ଜଣେ ବୃଦ୍ଧ କାରିଗର ମୂର୍ତ୍ତି ନିର୍ମାଣ ପାଇଁ ୨୧ଦିନ ସମୟ ମାଗିଲେ । ସର୍ତ୍ତ ରହିଲା, ମୂର୍ତ୍ତି ନ ସରିବା ଯାଏଁ ଦୁଆର ବନ୍ଦ ରହିବ ଏବଂ କେହି ମନ୍ଦିରକୁ ପ୍ରବେଶ କରିପାରିବେ ନାହିଁ । ରାଜା ପ୍ରସ୍ତାବରେ ରାଜି ହେଲେ । ମୂର୍ତ୍ତି ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ଇତିମଧ୍ୟରେ ୧୫ଦିନ ଯାଇଛି, ରାଣୀ ଗୁଣ୍ଡିଚାଙ୍କ ମନରେ ସନ୍ଦେହ ଆସିଲା । ରାଜାଙ୍କୁ ସଙ୍ଗରେ ଧରି ଦେଉଳ ଦୁଆର ମୁହଁରେ କାନ ଡେରି ଶୁଣିଲେ । କିନ୍ତୁ ଶବ୍ଦ ଶୁଭୁନାହିଁ ! ବୁଢା କାରିଗରଙ୍କ ମୃତ୍ୟୁ ହୋଇଯାଇଛି ଭାବି ମନ୍ଦିର ଦୁଆର ଖୋଲିବାକୁ ଆଦେଶ ଦେଲେ ରାଣୀ । ମନ୍ଦିର ଦୁଆର ଖୋଲା ହେଲା । ଭିତରକୁ ଯାଇ ଆଶ୍ଚର୍ଯ୍ୟ ହେଲେ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚା । ଭିତରେ ବୃଦ୍ଧ ବଢେଇ ନଥିଲେ, ଥିଲେ କେବଳ ତିନୋଟି ଅଧାଗଢା ମୂର୍ତ୍ତି ଓ କାଠ ଦଣ୍ଡଟିଏ । ଅନୁତାପ କରି ରାଜା ଏବଂ ରାଣୀ ଦୁଆର ବନ୍ଦ କରିବା ବେଳକୁ ଶୂନ୍ୟବାଣୀ ହେଲା– 'ଯେଉଁ ତିନି ମୂର୍ତ୍ତିଙ୍କୁ ଦେଖୁଛ, ତାହାଙ୍କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ଦଣ୍ଡକୁ ସୁଦର୍ଶନ ରୂପେ ପୂଜାକର ।'

ଏହା ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ତିନି ବିଗ୍ରହଙ୍କୁ ମନ୍ଦିରରେ ସ୍ଥାପନ କରାଇ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଲେ । ଏହା ପରେ ମହାପ୍ରଭୁଙ୍କ ଆଦେଶରେ ମନ୍ଦିରର ବିଧିବିଧାନ କାର୍ଯ୍ୟ ଆରମ୍ଭ ହେଲା ।

ଯେଉଁ ମହାପ୍ରଭୁ ଦାରୁରୂପେ ପୂଜିତ, ତାଙ୍କର ନୀତି ଆଦି ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ । ସେ ମାନବ ଭଳି ଦାନ୍ତ ଘଷନ୍ତି, ସ୍ନାନ କରନ୍ତି ଓ ଅନ୍ନ ଆଦି ଭକ୍ଷଣ କରନ୍ତି । ୫୬ଗୋଟି ଭୋଗ ମହାପ୍ରଭୁଙ୍କ ପାଖେ ଭୋଗ ରୂପେ ଲାଗିବା କିଛି ଆଶ୍ଚର୍ଯ୍ୟ କଥା ହୋଇପାରେ, କିନ୍ତୁ ଏହା ସତ୍ୟ । ସେ ମଧ୍ୟ ନିଦ୍ରା ଯାଆନ୍ତି ଓ ଭକ୍ତର ଗୁହାରି ଶୁଣନ୍ତି ।

ତାଙ୍କର ଦୟା ଅତୁଳନୀୟ । ସେ କ୍ଷମାଧାରୀ ଓ ଦଣ୍ଡାଧାରୀ ମଧ୍ୟ । ତାଙ୍କର ସ୍ପର୍ଶରେ ମଣିଷ ନିଜକୁ ହଜାଇ ଦିଏ । ତାଙ୍କୁ ସପନେ, ମନରେ, ପ୍ରାଣରେ ସ୍ପର୍ଶ କରିପାରିଲେ ସେ ଆଶୀର୍ବାଦ କରନ୍ତି । ତାଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିପାରିଲେ, ସେ ନିଜେ ସେହି ଭକ୍ତର ଦୁଃଖ ଦୂର କରନ୍ତି । ଗର୍ବ ଓ ଅହଂକାର ତାଙ୍କ ପାଖରେ କେବେ କେହି ଦେଖାଇ ତିଷ୍ଠି ରହିପାରିବ ନାହିଁ ଓ କେହି ତାଙ୍କ ପାଖରେ ନିଜର ଏକକତାର ଦ୍ୱାହି ଦେଇପାରିବେ ନାହିଁ । ତାଙ୍କର ବୈଚିତ୍ର୍ୟ ବିଧାନରେ ସମସ୍ତେ ନତମସ୍ତକ । କେହି ନିଜସ୍ୱ ବୋଲି କହିବା ଉଚିତ ନୁହେଁ । କାରଣ ସେ ସର୍ବବ୍ୟାପି ଓ ନିରାକାର। ଯଦି କେହି ତାଙ୍କୁ ଡାକେ, ନିଜର ନିଃସ୍ୱାର୍ଥ ସେବାରେ ପ୍ରାର୍ଥନା କଲେ ସେ ଶୁଣନ୍ତି । ଭକ୍ତକବି ଜୟଦେବ 'ଗୀତଗୋବିନ୍ଦ' ନ ପଢିଲେ ଠାକୁର ନିଦ୍ରା ଯାଆନ୍ତି ନାହିଁ । ଜୟଦେବ ଚାହାଁନ୍ତି ଭକ୍ତି । ତାଙ୍କର ଭକ୍ତିପୂତ ସଂଗୀତ ମହାପ୍ରଭୁଙ୍କୁ ବିସ୍ମୟ କରିଦିଏ । ସେ ଜୟଦେବଙ୍କର ଭକ୍ତିରେ ମୁଗ୍ଧ ହୋଇ 'ଗୀତଗୋବିନ୍ଦ'ର ପଦ ନିଜେ ଆସି ପୂରଣ କଲେ । ଏଣୁ ଯେଉଁ ଭକ୍ତ ତାଙ୍କୁ ନିଃସ୍ୱାର୍ଥ ସେବା ଦିଏ, ସେ ହିଁ ତା' ପାଇଁ ନିଜକୁ ପାଖରେ ଧରା ଦେଇଥାନ୍ତି ।

ମହାପ୍ରଭୁ ମଧ୍ୟ ଜାତି, ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ବ୍ୟତିବ୍ୟସ୍ତ । ସେଥିପାଇଁ ବନ୍ଧୁ ମହାନ୍ତିଙ୍କୁ ସାହାଯ୍ୟ କଲେ । ମନେଥିବ ସାଲବେଗ ନିଜେ ଠାକୁରଙ୍କ ପାଇଁ ସୁନ୍ଦର ଭଜନ ପରିବେଷଣ କରନ୍ତି । ଦାସିଆବାଉରୀ ମଧ୍ୟ ନଡିଆ ଠାକୁରଙ୍କୁ ଅର୍ପଣ କଲେ ଓ ତାକୁ ଠାକୁର ସାଦରେ ଗ୍ରହଣ କଲେ । ରଥଯାତ୍ରାରେ ମହାପ୍ରଭୁ ବାହାରକୁ ଆସି ସମଗ୍ର ମାନବ ଜାତିକୁ ଦର୍ଶନ ଦିଅନ୍ତି । ତା'ର କାରଣ ସେ ସମଗ୍ର ମାନବଜାତିର ମନକଥା ବୁଝିପାରନ୍ତି । ତାଙ୍କର ରୂପ ଦିବା-ରାତ୍ରରେ ସମାନ ନ ଥାଏ । ତାଙ୍କୁ ମନ ଧ୍ୟାନ ଦେଇ ପୂଜା କଲେ ଓ ନିଜକୁ ହଜାଇ ଦେଲେ, ସେ ସେହି ବ୍ୟକ୍ତିବିଶେଷ ତଥା ପରିବାର ଓ ସମାଜ ପାଇଁ ଅବତୀର୍ଣ୍ଣ ହୁଅନ୍ତି ।

ହେ ମହାପ୍ରଭୁ ! ଭକ୍ତିପୂତ ନୈବେଦ୍ୟରେ ଆପଣ ମୋତେ ଓ ଆମ ମାନବ ସମାଜକୁ କ୍ଷମାକରି ରକ୍ଷା କରନ୍ତୁ । ଆମ୍ଭର କୋଟି କୋଟି ପ୍ରଣାମ ଗ୍ରହଣ କରି ଅଶେଷ ଆଶୀର୍ବାଦ ଭରି ଦିଅନ୍ତୁ ଓ ସମଗ୍ର ମାନବ ଜାତିକୁ ସମସ୍ତ ବିପଦରୁ ରକ୍ଷା କରନ୍ତୁ ।

ଉଚ୍ଚ ନ୍ୟାୟାଳୟ, ଓଡ଼ିଶା

# ଅଁଳା ନବମୀ ଓ ରାଧାପାଦ ଦର୍ଶନ

ଡକ୍ଟର ଶ୍ରୀହରି ପଣ୍ଡା

ଭାରତୀୟ ଧର୍ମଭଣ୍ଡାରରେ ଓଷା, ବ୍ରତ, ପୂଜା-ପାର୍ବଣ ଆଦି ଅମୂଲ୍ୟ ସମ୍ପଦ । ଏହା ଭାରତୀୟଙ୍କ ମଧ୍ୟରେ ଭାଇଚାରାକୁ ବଞ୍ଚାଇ ରଖିବା ସହିତ ସଭିଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିଛି । ମାନସିକ ମନସ୍ତାତ୍ତ୍ୱିକ ପ୍ରତିଫଳନ ହେଉଛି ଓଷାବ୍ରତର ଚରମ ଆଭିମୁଖ୍ୟ । ଏହିସବୁ ବହୁ ପ୍ରାଚୀନ କାଳରୁ ମାନବ ସଂସ୍କୃତିକୁ ସୁସଂହତ କରିବା ସହ ଧର୍ମୀୟ ଭାବନାକୁ ବ୍ୟକ୍ତ କରେ । ଏହି ଭାବନା ପାଇଁ କାଷ୍ଠ ପାଷାଣରେ ଭଗବାନ ପ୍ରତିଫଳିତ ହୁଅନ୍ତି । ପାଷାଣରେ ସିନ୍ଦୂର ଲଗାଇ ଉପବାସ ରହି ମଣିଷ ଅଦୃଶ୍ୟକୁ ଦୃଶ୍ୟମନ୍ତ କରିପାରିଛି । ସେଇଥିପାଇଁ ସାରା ଦେଶରେ ବହୁ ଓଷାବ୍ରତ ଓ ପର୍ବପର୍ବାଣି ପ୍ରଚଳିତ । ତନ୍ମଧ୍ୟରୁ କାର୍ତ୍ତିକ ମାସରେ ପଡୁଥିବା ଶୁକ୍ଳ ନବମୀକୁ ଅଁଳା ନବମୀ ରୂପେ ନାମିତ କରାଯାଇଛି । ଏହି ନବମୀକୁ ମଧ୍ୟ ଅକ୍ଷୟ ନବମୀ ଓ ଧାତ୍ରୀ ନବମୀ ବୋଲି କୁହାଯାଏ । ଏହି ମାସରେ ଅଁଳା ବୃକ୍ଷମୂଳେ ଶ୍ରୀବିଷ୍ଣୁଙ୍କ ଉପାସନା କରାଯିବାର ପ୍ରଥା ଉକ୍ତ ନବମୀ ତିଥିର ବୈଶିଷ୍ଟ୍ୟ ଅଟେ । ଏହି ବୃକ୍ଷର ଅଁଳା କୋଳି ବହୁ ଔଷଧୀୟ ଗୁଣଯୁକ୍ତ ଏବଂ ବିଭିନ୍ନ ସ୍ୱାଦଯୁକ୍ତ ଅଟେ । ଏହାର ଅମ୍ଳରସ ଦ୍ୱାରା ବାୟୁ, ମଧୁରସ ଦ୍ୱାରା-ପିତ୍ତ ଓ କଷାୟ ରସଦ୍ୱାରା କଫ ନଷ୍ଟ ହୋଇ ଶରୀରକୁ ସୁସ୍ଥ ତଥା ନିରୋଗ ରଖିଥାଏ । ଏହି ବୃକ୍ଷ ମଧ୍ୟ ବହୁ ଶୁଭଫଳ ପ୍ରଦାନ କରିଥାଏ । ଏହି ବୃକ୍ଷକୁ ହିନ୍ଦୀରେ ଆଁଓଲ, ବଙ୍ଗଳାରେ ଆମଲକୀ, ତେଲୁଗୁରେ ଉଷରକାୟୁ, ମରହଟ୍ଟାରେ ଆଁବଲା, କର୍ଣ୍ଣାଟକରେ ନେଲି, ତାମିଲରେ ନେଲି, ବର୍ମିଜରେ ସେବଧି, ସିଂହଳିରେ ନେଲି, ଆରବୀରେ ଆମଜ, ପାର୍ସୀରେ ଆମନେ, ଇଂରାଜୀରେ ଏମିବ୍ଲିକ ଏବଂ ସଂସ୍କୃତରେ ଅନେକ ନାମ ମଧ୍ୟରେ ଅମୃତା, ଶ୍ରୀଫଳା, ଧାତ୍ରୀକା, ତିଷ୍ୟା ପ୍ରମୁଖ ଅଟନ୍ତି । ଅଁଳା ବୃକ୍ଷ ଓ ଫଳର ଅଶେଷ ମାହାତ୍ମ୍ୟ ଥିବାରୁ ମୁନିଋଷିମାନେ ଅଁଳାକୁ ଦେବୀରୂପେ ବର୍ଣ୍ଣନା କରିଛନ୍ତି ।



ନମାମ୍ୟାମଳକୀଂ ଦେବୀଂ ପତ୍ରମାଳାଦ୍ୟକ କୃତାଂ
ଶିବ ବିଷ୍ଣୁ ପ୍ରିୟାଂ ଦେବ୍ୟାଂ ଶ୍ରୀମତୀ ସୁନ୍ଦର ପ୍ରଭାଂ
ନମସ୍କୃତ୍ୟଂ ହ୍ୟାମଳକୀଂ ଗତାଦେଶ୍ଚ ଦ୍ୱିଜାତଥା
ବ୍ରହ୍ମା ବିଷ୍ଣୁ ଶିବଶ୍ଚପି ଚକ୍ରଶ୍ଚାପି ଚକ୍ରାଧିଷ୍ଠା ନମାସ୍ଥିତ ।

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଅତିପ୍ରିୟ ତଥା ବୃକ୍ଷମୂଳରେ ଦେବତାମାନଙ୍କ ପୂଜାକାର୍ଯ୍ୟ ସମ୍ପନ୍ନ ହେତୁ ଦେବତା ତଥା ବ୍ରାହ୍ମଣମାନେ ଉକ୍ତ ବୃକ୍ଷକୁ ଦେବୀରୂପେ ଗ୍ରହଣ କରି ଉପାସନା କରିଥାନ୍ତି ।

ଏହି ବୃକ୍ଷର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ପୁରାଣମାନଙ୍କରେ ବର୍ଣ୍ଣନା ମିଳେ ଯେ, ଏକଦା ଲକ୍ଷ୍ମୀ ଏବଂ ପାର୍ବତୀ ଭଗବାନଙ୍କୁ ଉପାସନା ଲାଗି ଏକ ନୂତନ ଦ୍ରବ୍ୟର ସନ୍ଧାନ କରୁକରୁ ଉଭୟଙ୍କ ଚକ୍ଷୁରୁ ଲୋତକ ବହି ପଡ଼ିଲା । ଉଭୟଙ୍କ ଅଶ୍ରୁ ଆନନ୍ଦାଶ୍ରୁ ଥିବାରୁ ଏହା ଅଁଳା ବୃକ୍ଷରୂପେ ଜନ୍ମ ନେଇ ସବୁ ଦେବତାଙ୍କ ପ୍ରିୟ

ହୋଇଥିଲା । ସେହିଦିନଟି ଥିଲା କାର୍ତ୍ତିକ ମାସର ଶୁକ୍ଳ ନବମୀ । ଏଣୁ ଏହି ଦିବସଟି ଅଁଳା ନବମୀ ଭାବରେ ପରିଚିତ । ପୁଣି ପଦ୍ମପୁରାଣର ବର୍ଣ୍ଣନାନୁସାରେ ଜଳନ୍ଧର ବଧ ପରେ ଶିବ ଧ୍ୟାନସ୍ଥ ହୋଇଥିଲେ, ଫଳରେ ଆଦିଶକ୍ତିଙ୍କ ଆବିର୍ଭାବ ଘଟିଲା ଓ ତାଙ୍କ ରଜଗୁଣା ସରସ୍ୱତୀଙ୍କ ଅଂଶରୁ ଧାତ୍ରୀ ବା ଅଁଳା ବୃକ୍ଷର ଉତ୍ପତ୍ତି ଘଟିଥିଲା । ସେହିପରି ଅନ୍ୟ ଏକ କଥାନୁସାରେ ଲକ୍ଷ୍ମୀ ଓ ପାର୍ବତୀ ଏକଦା ଏକ ଭୋଜି ଉତ୍ସବରେ ଭୋଜନ ବଢା ଯିବାବେଳେ ପାର୍ବତୀ ବେଲପତ୍ର ଓ ଲକ୍ଷ୍ମୀ ତୁଳସୀ ପତ୍ର ନେଇନଥିଲେ । ଏଣୁ ନାରଦଙ୍କ ପରାମର୍ଶ ଅନୁସାରେ ବେଲ ଓ ତୁଳସୀ ଉଭୟଙ୍କ ଗୁଣ ଥିବା ଅଁଳାଫଳଦ୍ୱାରା ଭୋଜନ କାର୍ଯ୍ୟ ସମାପନ କରି ଶ୍ରୀବିଷ୍ଣୁଙ୍କୁ ତୁଷ୍ଟ କରିଥିଲେ । କୁହାଯାଏ ଯେ,ସମୁଦ୍ର ମନ୍ଥନରୁ ବାହାରିଥିବା ୧୪ଟି ମୁଖ୍ୟ ବସ୍ତୁ ଲକ୍ଷ୍ମୀ, ଧନ୍ୱନ୍ତରୀ, ଅମୃତ, ଉଚ୍ଚୈଶ୍ରବା, ଅଶ୍ୱ, ଐରାବତ ହସ୍ତୀ, ପାରିଜାତ ପୁଷ୍ପ, କୌସ୍ତୁଭ ମଣି, ସୁଦର୍ଶନ ଚକ୍ର, ବିଷ ପ୍ରଭୃତି ଉତ୍ପତ୍ତି ପରେ ଶେଷକୁ ଯେଉଁସବୁ ପଦାର୍ଥମାନ ରହିଥିଲା, ତାହା କ୍ରମେ ଅଁଳାବୃକ୍ଷ ହୋଇ ଜନ୍ମ ନେଇଥିଲା । ଏହି ମହାନ ବୃକ୍ଷ ମୂଳରେ ନବମୀ ବ୍ରତ କରିବା ବିହିତ । ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରେ ନବମୀ ଦିନ ସ୍ନାନାଦି କର୍ମ କାଳରେ ଜଳ, ଅକ୍ଷତ, ପୁଷ୍ପ ଆଦି ଗ୍ରହଣ କରି ବ୍ରତର ସଂକଳ୍ପ କରିବା ସହ 'ଓଁ ଧାତ୍ରେ ନମଃ' ମନ୍ତ୍ରରେ ଆବାହନ ପୂର୍ବକ ଷୋଡ଼ଶ ଉପଚାରରେ ପୂଜା କରାଯାଏ । ପୂଜା ଶେଷରେ କର୍ପୂର ଓ ଘିଅ ଦୀପରେ ଆଳତି ବନ୍ଦାପନା କରି ବୃକ୍ଷକୁ ପ୍ରଦକ୍ଷିଣ କରାଯାଏ । ତତ୍ପରେ ବ୍ରାହ୍ମଣଙ୍କୁ ଭୋଜନ ଏବଂ ଦକ୍ଷିଣା ପ୍ରଦାନ କରି ବ୍ରତୀ ପ୍ରସାଦ ସେବନ କରେ ।

ଓଡ଼ିଶାରେ ଅଁଳା ନବମୀରେ ଶ୍ରୀରାଧାଙ୍କ ପାଦ ଦର୍ଶନ ଏକ ମହାନ ଉତ୍ସବ ଅଟେ । ପୌରାଣିକ ଆଖ୍ୟାନାନୁସାରେ ଏହିଦିନ ଶ୍ରୀହନୁମାନ ଦେବୀ ସୀତାଙ୍କ ପାଦଦର୍ଶନ କରିଥିଲେ ଲଙ୍କାପୁରୀରେ । ଏହିଦିନରେ ବୈଷ୍ଣବମାନଙ୍କର ଠାକୁରାଣୀ ରାଧାଦେବୀଙ୍କ ପାଦଦର୍ଶନ କରିବାର ପରମ୍ପରା ସ୍ୱୀକୃତ । ପୂର୍ବ ପରମ୍ପରା ଅନୁସାରେ ଅଁଳା ନବମୀରେ ରାଧାଙ୍କ ପାଦଦର୍ଶନ ଓ ଶରତରାସ ପାଳନ ଏକ ପୁଣ୍ୟତମ କର୍ମରୂପେ ବିବେଚିତ ହୋଇଥାଏ । ଏହାର ନିଦର୍ଶନ ରୂପେ ସାକ୍ଷୀଗୋପାଳରେ ରାଧାପାଦ ଦର୍ଶନ ମହାନ ଯାତ୍ରା ଭାବରେ ଗୃହୀତ ହୋଇଛି । ବୃନ୍ଦାବନରୁ ସାକ୍ଷୀ ଦେବା ନିମନ୍ତେ ଆସିଥିବା ଠାକୁର ପାଷାଣ ପାଲଟିଯିବା ପ୍ରବାଦ ସର୍ବତ୍ର ଶୁଣାଯାଏ । ସେଇଥିପାଇଁ ବୋଧହୁଏ ବୃନ୍ଦାବନର ପ୍ରଚଳିତ ଉତ୍ତର ଭାରତୀୟ ବେଶ ପୋଷାକ ଓ ଶୃଙ୍ଖିଳା ଭୋଗ ଅଦ୍ୟାପି ସାକ୍ଷୀଗୋପାଳରେ ପ୍ରଚଳିତ । ସାକ୍ଷୀଗୋପାଳଙ୍କ ବାମ ପାର୍ଶ୍ୱରେ ଓଡ଼ିଆଣୀ ଢଙ୍ଗରେ ଶ୍ରୀରାଧାଙ୍କ ଅଷ୍ଟଧାତୁ ନିର୍ମିତ କମନୀୟ ବିଗ୍ରହ ବିରାଜିତା । ଏହି ବିଗ୍ରହଙ୍କର ନିର୍ମାଣ ସମ୍ପର୍କରେ ଥିବା ଏକ ପ୍ରଚଳିତ ଜନଶ୍ରୁତିକୁ ଆଧାର କରି ଗବେଷକ ଲଛମନ ରାଉତ ମତବ୍ୟକ୍ତ କରନ୍ତି ଯେ,ପୂର୍ବେ ମନ୍ଦିର ବଡପଣ୍ଡା ବେଲେଶ୍ୱର ମହାପାତ୍ରଙ୍କ କନ୍ୟା ଲକ୍ଷ୍ମୀଙ୍କ ସହ ସାକ୍ଷୀଗୋପାଳଙ୍କ ମିଳନ ସମ୍ଭବ ହୋଇଥିଲା । ଠାକୁରଙ୍କ ସ୍ୱପ୍ନାଦେଶ ଅନୁସାରେ ଲକ୍ଷ୍ମୀଙ୍କ ଏକ ପ୍ରତିମା ଗଠନ କାଳରେ ଲକ୍ଷ୍ମୀ ଅସୁସ୍ଥ ହୋଇପଡିଲେ । ଅଁଳା ନବମୀ ଦିନ ରଣପୁର କାରିଗରଙ୍କ ଦ୍ୱାରା ୯୯୦ ବିଶା ଅଷ୍ଟଧାତୁରେ ନିର୍ମିତ ରାଧା ମୂର୍ତ୍ତି ପ୍ରତିଷ୍ଠା ହୋଇଥିଲା ଏବଂ ଏହିଦିନ ଲକ୍ଷ୍ମୀଙ୍କର ମହାପ୍ରୟାଣ ଘଟିଥିଲା ।

କାର୍ତ୍ତିକ ମାସ ଶୁକ୍ଳ ନବମୀ ତିଥିରେ ଶ୍ରୀରାଧା ରାଣୀ ଓଡ଼ିଆଣୀ ବେଶରେ କଣିଆ କଛାରେ ପାଟଶାଢୀ ପରିଧାନ କରନ୍ତି । ଏହାଦ୍ୱାରା ପାଦ ଉପରକୁ ଶାଢ଼ୀ ଉଠି ଯାଉଥିବାରୁ ପାଦ ଦୁଇଟି ସହ ପାଦରେ ଅଳଂକୃତ ଅଳଙ୍କାରମାନ ଭକ୍ତମାନେ ଦର୍ଶନ କରି କୃତାର୍ଥ ହୁଅନ୍ତି । ଏହିଦିନ ବ୍ୟତୀତ ବର୍ଷସାରା ମାତାଙ୍କ ପାଦ ଆବୃତ ହୋଇ ରହୁଥିବାରୁ ଅନ୍ୟ ଦିନମାନଙ୍କରେ ପାଦଦର୍ଶନ ଯୋଗ ମିଳି ନଥାଏ । ଏହିଦିନ ଶାଢ଼ୀ ପଣତକାନିରେ ଗୁଆ, ଅରୁଆ ଚାଉଳ, ଫୁଲ ଗଣ୍ଠିପଡ଼ି କାନ୍ଧରେ ବାମ ଭାଗରେ ପଛକୁ ଓହଳା ଯାଇଥାଏ । ଦେବୀ ରାଧାଙ୍କ ଓଡ଼ିଆ ବେଶଭୂଷା ପରିପାଟୀ ଅଳଙ୍କାର ଭୂଷଣ ସହିତ କମନୀୟ ପାଦଯୁଗଳ ଦର୍ଶନ କରି ଭକ୍ତ ଅଁଳାଫଳ ଓ ପତ୍ର ପ୍ରଦାନ କରି ଅନନ୍ତ ପୁଣ୍ୟ ଅର୍ଜନ କରିଥାଏ । ଏହିଦିନ ସାକ୍ଷୀଗୋପାଳରେ ଲକ୍ଷ ଲକ୍ଷ ଭକ୍ତଙ୍କ ସମାଗମ ହୋଇଥାଏ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ

# ଗରିବଙ୍କ ହୃଦୟର ଭାଷା ବୁଝୁଥିବା ଅନନ୍ୟ ବ୍ୟକ୍ତିତ୍ୱ

ଶ୍ରୀମୟୀ ଶ୍ୱେତାସ୍ନିଗ୍ଧା ମିଶ୍ର

କଳା, ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ରାଜ୍ୟ ଓଡ଼ିଶା । ଏହାର ପରିଚୟ ବଞ୍ଚାଇ ରଖିବା ପାଇଁ ଅନେକ ମହାପୁରୁଷ ତଥା କିମ୍ବଦନ୍ତୀ ପୁରୁଷ ଦେଇଯାଇଛନ୍ତି ଅନେକ ବଳିଦାନ । ଆଧାତ୍ମିକବାଦ ଅନୁସାରେ ସମାଜର କଲ୍ୟାଣ ପାଇଁ ଏହି ଧରାପୃଷ୍ଠରେ ଦେବତା ଅବତରଣ କରିଥାନ୍ତି ବିଭିନ୍ନ ଅବତାରରେ । ଠିକ୍ ସେହିଭଳି ସାମାଜିକବାଦ ଅନୁସାରେ ସମାଜର ଉନ୍ନତି ଓ ଜନସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତି ଆଣିବା ନିମନ୍ତେ, ସମାଜରେ ଜନ୍ମ ନେଇଥାନ୍ତି ଜନନାୟକ । ନୂତନ ଓଡ଼ିଶାର ଅର୍ଥନୀତିକ, ସାଂସ୍କୃତିକ, ସାମାଜିକ ସବୁସ୍ତରରେ ବିକାଶର ଶ୍ରେୟ ତଥା ରାଜ୍ୟର ସାଢେ ୪କୋଟି ଜନତାଙ୍କର ଆଶା ଓ ସମ୍ମାନର ପ୍ରତୀକ ପାଲଟିଛନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ସରଳ ଜୀବନଶୈଳୀରେ ବିଶ୍ୱାସ ରଖୁଥିବା ଓ ଜନତାଙ୍କର ହୃଦୟର ଭାଷାକୁ ବୁଝିପାରୁଥିବା ବ୍ୟକ୍ତିତ୍ୱ ସେ । ଓଡ଼ିଶାର ସମୃଦ୍ଧି ଓ ସ୍ୱାଭିମାନକୁ ବଞ୍ଚାଇ ରଖିବାରେ, ଜାତୀୟ ରାଜନୀତିରେ ପତିଆରା ଓ ପ୍ରଭାବ ସୃଷ୍ଟି କରିବାରେ, ସାଧାରଣ ଲୋକଙ୍କ ଆବଶ୍ୟକତା ପୂରଣ ପାଇଁ ଯୋଜନା ପ୍ରସ୍ତୁତ କରିବାରେ ତଥା ଯୋଜନାର ସୁଫଳ ଲୋକଙ୍କ ପାଖରେ ପହଞ୍ଚାଇବାରେ ସଫଳତା ଲାଭ କରି ଭାରତର ଶ୍ରେଷ୍ଠ ପ୍ରଶାସକଭାବେ ସମ୍ମାନିତ ଓ ପ୍ରଶଂସିତ ହୋଇଛନ୍ତି । ସେ ଆଉ କେହି ନୁହଁନ୍ତି, ଆମର ପ୍ରିୟ ତଥା ଓଡ଼ିଶାର ଜନମାନସର ପ୍ରତୀକ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ।



ଏହା ଭିତରେ ଅନେକ ବର୍ଷ ବିତିଗଲାଣି । କିନ୍ତୁ ସେଦିନର କଥା ଏବେ ବି ମନେ ପଡିଯାଉଛି । ଯେମିତି ଲାଗୁଛି ଅଳ୍ପଦିନ ବ୍ୟବଧାନର କଥା । ଶୈଳବାଳା ମହିଳା ମହାବିଦ୍ୟାଳୟରେ ପାଠ ପଢୁଥିବାବେଳେ କଲେଜର ବାର୍ଷିକ ଉତ୍ସବ ସମାରୋହରେ ଅନ୍ୟ ସମସ୍ତ ଛାତ୍ରୀଙ୍କ ଭଳି ମୋ' ମନରେ ମଧ୍ୟ ଉତ୍ସାହ ରହିଥାଏ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଅତି ନିକଟରୁ ଦେଖିବା ପାଇଁ । ନିର୍ଦ୍ଧାରିତ ସମୟରେ ମୁଖ୍ୟମନ୍ତ୍ରୀଙ୍କ କାଫିଲା ଆସି ପହଞ୍ଚିଲା ମହାବିଦ୍ୟାଳୟ ପରିସରରେ । ଛାତ୍ରୀ ସଂସଦର ସଭାନେତ୍ରୀଭାବେ ତାଙ୍କୁ ପାଛୋଟି ନେବାର ଦାୟିତ୍ୱ ବହନ କରିବାର ସୁଯୋଗ ମୋତେ ମିଳିଥାଏ । ଟେଲିଭିଜନ ପର୍ଦ୍ଦାରେ ଓ ଖବରକାଗଜରେ ଦେଖିଥିବା ବ୍ୟକ୍ତିତ୍ୱଙ୍କୁ ପ୍ରତ୍ୟକ୍ଷ ଭାବେ ସାମ୍ନାରେ ଦେଖି ଲାଗୁଥାଏ ଯେମିତି ଅନେକ ଦିନରୁ ମନରେ ବସା ବାନ୍ଧିଥିବା ଆଶାଟି ପୂରଣ ହୋଇଛି । ଅନ୍ୟମାନଙ୍କ ଖୁସି ତୁଳନାରେ ମୋ' ମନରେ ଖୁସିଥାଏ ଅଧିକ । କାରଣ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ସହ ମଞ୍ଚରେ ବସିବାର ସୁଯୋଗ ମିଳିଥାଏ । ଅନ୍ୟପଟରେ ମନରେ ଭୟ ଥାଏ ଯେ ଏତେବଡ ପ୍ରତିଭାଙ୍କ ସାମ୍ନାରେ ମୁଁ ବା କି ଅଭିଭାଷଣ

ଉପସ୍ଥାପନ କରିବି । ଅପରିପକ୍ୱ ଚିନ୍ତା ଓ ଚେତନା ଏବଂ ଅନଭିଜ୍ଞ ମନସ୍ତାତ୍ତ୍ୱିକ ଅବସ୍ଥା ସହ ସଂଘର୍ଷ କରି ସାହସ ଜୁଟାଇଲି ଛାତ୍ରୀଙ୍କ ଦାବି ଉପସ୍ଥାପନ କରିବା ପାଇଁ । ଅନ୍ୟ ଅତିଥିମାନଙ୍କ ଅଭିଭାଷଣ ଚାଲିଥିବା ସମୟରେ ମୁଖ୍ୟମନ୍ତ୍ରୀଙ୍କ ଗୋଟିଏ ପ୍ରଶ୍ନ ମତେ ଆଚମ୍ବିତ କରିଦେଇଥିଲା । ପ୍ରଶ୍ନଟି ଥିଲା, 'Where are you from' । ଉତ୍ତରରେ ରଖିଲି, "from Bolangir' । ଉତ୍ତର ପରେ ଯାହା ଶୁଣିଲି ବୋଧହୁଏ ସେହି ପଦକ କଥା ରାଜନୀତିକ ଜୀବନରେ ପଦାର୍ପଣ କରିବା ପାଇଁ ମୋତେ ପ୍ରେରଣା ଦେଇଥିଲା । ମୁଖ୍ୟମନ୍ତ୍ରୀଙ୍କ କଥା ପଦକ ଥିଲା, 'Women should be in politics for the development of society' । ସେତେବେଳେ ମହିଳା ସଶକ୍ତିକରଣ ଉପରେ ଅଧିକ ଜ୍ଞାନ ନଥିଲେ ମଧ୍ୟ ମନରେ ଗୋଟିଏ ଭରସା ଏବଂ ଉଦ୍ଦୀପନାର ସ୍ରୋତ ଉତ୍ପନ୍ନ ହୋଇଥିଲା । ବିଧିର ବିଧାନ ଓ ସୌଭାଗ୍ୟବଶତଃ ସେହି ଲୋକପ୍ରିୟ ବ୍ୟକ୍ତିତ୍ୱଙ୍କ ସହ କାର୍ଯ୍ୟ କରିବାର ସୁଯୋଗ ପ୍ରାପ୍ତି ହେଲା ପରବର୍ତ୍ତୀ ସମୟରେ ।

ଆଉ ଏକ ଘଟଣା ବି ମନେ ପଡିଯାଉଛି । ଥରେ କିଛି ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀର ସଦସ୍ୟମାନେ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବା ପାଇଁ ନବୀନ ନିବାସ ଯାଇଥିଲେ। ସେମାନଙ୍କ ସାଙ୍ଗରେ ମୁଁ ବି ଯାଇଥାଏ । ସେହି ମହିଳାମାନେ ପରସ୍ପର ସହ କଥାବାର୍ତ୍ତା କରୁଥାନ୍ତି କି, ମୁଖ୍ୟମନ୍ତ୍ରୀ ସେମାନଙ୍କ ସହ କ'ଣ କଥାବାର୍ତ୍ତା କରିବେ ? ନା କେବଳ ସାକ୍ଷାତ କରି ଆମକୁ ଫେରିବାକୁ ପଡିବ । ସେମାନେ ମୋତେ ବି ପ୍ରଶ୍ନ କରୁଥାନ୍ତି । ଏପରି କଳ୍ପନା ଜଳ୍ପନା ମଧ୍ୟରେ ମୁଖ୍ୟମନ୍ତ୍ରୀ ଆସି ପହଞ୍ଚିଲେ । ପଚାରିଲେ 'ମାଆମାନେ କେଉଁଠୁ ଆସିଛନ୍ତି' ? ଉତ୍ତରରେ ରଖିଲି, ' ସାର୍, ପଶ୍ଚିମ ଓଡ଼ିଶାରୁ ଆସିଛନ୍ତି' । ସଙ୍ଗେ ସଙ୍ଗେ ନମସ୍କାର ପରିବର୍ତ୍ତେ ଜୁହାର କହି ମାଆମାନଙ୍କୁ ସ୍ୱାଗତ କଲେ । ନିଜ ଅଞ୍ଚଳର ଶବ୍ଦ ଶୁଣି ମାଆମାନେ ଖୁସି ହୋଇଯାଇଥିଲେ । ତାଙ୍କର ସୁବିଧା–ଅସୁବିଧା ବିଷୟରେ ବୁଝିବା ସହ ତାଙ୍କର ଆତିଥ୍ୟରେ ଯେପରି କୌଣସି ଊଣା ନ ହୁଏ, ସେ ବିଷୟରେ ଧ୍ୟାନ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ। ଗାଁ ଗହଳିରୁ ଆସିଥିବା ମହିଳାମାନେ ଯେପରି ରାଜଧାନୀ ଓ ପୁରୀରେ ଥିବା ସବୁ ପର୍ଯ୍ୟଟନସ୍ଥଳୀ ସୁରୁଖୁରୁରେ ବୁଲି ଦେଖିବେ, ତାହା ଉପରେ ଗୁରୁତ୍ୱ ଦେବା ପାଇଁ ମଧ୍ୟ କହିଥିଲେ । ମହିଳାଙ୍କ ପାଇଁ ତାଙ୍କ ମନରେ ଥିବା ସମ୍ମାନ ତଥା କେବେ ଏଭଳି ସ୍ଥାନ ବୁଲିବାକୁ ସୁଯୋଗ ପାଇନଥିବା ମାଆମାନେ ଯେପରି ଏସବୁ ପର୍ଯ୍ୟଟନସ୍ଥଳୀ ବୁଲି ଦେଖିବେ, ସେଥିପାଇଁ ମୋତେ ପରାମର୍ଶ ଦେଇଥିଲେ । ତାଙ୍କର ଏହି ଆନ୍ତରିକତା ହିଁ ତାଙ୍କ ପ୍ରତି ମୋ' ମନରେ ଥିବା ସମ୍ମାନକୁ ବହୁଗୁଣିତ କରିଦେଇଥିଲା ।

ସଫଳ ନେତୃତ୍ୱ କ'ଣ ଓ ସଫଳ ବ୍ୟକ୍ତିତ୍ୱ କ'ଣ, ବହିରେ ପଢିଥିଲି ସିନା ହେଲେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ଯେ ଏପରି ଏକ ବ୍ୟକ୍ତିତ୍ୱଙ୍କ ନେତୃତ୍ୱରେ ମୋର ରାଜନୀତିକ ଜୀବନ ଆଗକୁ ବଢିବ । ବିଭିନ୍ନ ସମୟରେ ବିଭିନ୍ନ ଦାୟିତ୍ୱ ଦେବା ସହିତ ସେଗୁଡିକୁ ସୁଚାରୁରୂପେ ତୁଲାଇବାର ପ୍ରେରଣା ତଥା ସୁଖଦୁଃଖ ପଚାରି ବୁଝି, ସମସ୍ୟାର ସମାଧାନ କରିବାର ଶୈଳୀ ମତେ ତାଙ୍କ ପାଖରେ ଚିର ଋଣୀ କରିଦେଇଛି । ଆଜି ତାଙ୍କର ଜନ୍ମଦିନ ଅବସରରେ ଜଗତର ନାଥ ଜଗନ୍ନାଥଙ୍କ ପାଖରେ ମୋର ଅଳି ଓ ପ୍ରାର୍ଥନା ଯେ ଆମ ରାଜ୍ୟର ଉନ୍ନତି ଓ ବିକାଶ ତାଙ୍କ ଅଧିନାୟକତ୍ୱରେ ବଜାୟ ରହୁ ଏବଂ ତାଙ୍କ ନେତୃତ୍ୱରେ ଓଡ଼ିଶା ସଫଳତାର ଶୀର୍ଷରେ ପହଞ୍ଚୁ ।

ଅଧ୍ୟକ୍ଷା, ଓଡ଼ିଶା ମହିଳା ବିକାଶ ସମବାୟ ନିଗମ



# ବାଲିଯାତ୍ରା

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

ଓଡ଼ିଶା ଏକ ସଂସ୍କୃତି ସମ୍ପନ୍ନ ଦେଶ । ଓଡ଼ିଶାର ପର୍ବପର୍ବାଣି ଓ ଯାନିଯାତ୍ରା ତା'ର ସାଂସ୍କୃତିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ବାର ମାସର ତେର ପର୍ବ ଓଡ଼ିଆ ଜନଜୀବନକୁ ସରସ ସୁନ୍ଦର ଓ ମଧୁମୟ କରେ । କାର୍ତ୍ତିକ ପୂର୍ଣ୍ଣିମା ଓଡ଼ିଶାର ଏକ ବିଶିଷ୍ଟ ପର୍ବ । ଓଡ଼ିଶାର ଗୌରବମୟ ଐତିହ୍ୟକୁ ସ୍ମରଣ କରି ସର୍ବତ୍ର ପୁରପଲ୍ଲୀରେ ଏହି ପର୍ବ ପାଳିତ ହୁଏ । କାର୍ତ୍ତିକ ପୂର୍ଣ୍ଣିମା ଦିନଠାରୁ ଦୀର୍ଘ ପାଞ୍ଚଦିନ ବ୍ୟାପୀ କଟକର ଗଡ଼ଗଡ଼ିଆ ଘାଟଠାରେ ଅନୁଷ୍ଠିତ ହୁଏ ପ୍ରସିଦ୍ଧ ଐତିହାସିକ ବାଲିଯାତ୍ରା ।



**ବାଲି ଯାତ୍ରା ସୁନାବ୍ୟା ଓଡ଼ିଶାର ଐତିହାସିକ ଦସ୍ତାବିଜ:** ପ୍ରାଚୀନ କଳିଙ୍ଗର ନୌଯାତ୍ରା କାଳଜୟୀ । ସାମୁଦ୍ରିକ ନୌବାଣିଜ୍ୟ ଓ ବହିର୍ବାଣିଜ୍ୟର ପରମ୍ପରା ଗୌରବ ବିମଣ୍ଡିତ । ବିଶ୍ୱବନ୍ଦନୀୟ । ଉତ୍କଳର ନୌବାଣିଜ୍ୟର ଇତିହାସ ଭାରତ ଇତିହାସରେ ଅନନ୍ୟ ଓ ଏକଚାଟିଆ । ଅନ୍ୟ ପ୍ରଦେଶଗୁଡ଼ିକ ସମୁଦ୍ର ଉପକୂଳରେ ଥିଲେ ମଧ୍ୟ ଭାରତ ମହାସାଗରରେ ଏପରି ଦୁଃସାହସିକ ନୌବାଣିଜ୍ୟର ଶ୍ରେୟ କେବଳ ଉତ୍କଳୀୟଙ୍କୁ ହିଁ ମିଳିଥାଏ । ସେମାନେ ସାତସମୁଦ୍ର ତେର ନଈ ପାରି ହୋଇ ଯେପରି ବିଦେଶରେ ନିଜର ପତିଆରା ବିସ୍ତାର କରି ପାରିଥିଲେ, ତାହା ଆଜି ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ବାଣିଜ୍ୟ କରିବା ସହିତ ନିଜ ଦେଶର ସଂସ୍କୃତି, ସାହିତ୍ୟ ଓ ଧର୍ମର ମହତ୍ୱ ପ୍ରକଟିତ କରି ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ପାରିଥିଲେ ଉତ୍କଳୀୟମାନେ । ଆଜି ବି ଦରିଆ ସେପାରିରେ ଉତ୍କଳୀୟ ସଂସ୍କୃତିର ଛାପ ଦେଖିଲେ ଗର୍ବରେ ଛାତି ଫୁଲି ଉଠେ । ହିନ୍ଦୁ ଧର୍ମ ଶାସ୍ତ୍ରରେ ସମୁଦ୍ର ଯାତ୍ରା ପତନଯୋଗ୍ୟ ଓ ନିଷିଦ୍ଧ ଥିଲା । ଧର୍ମ ସୂତ୍ରରେ ଯେଉଁ ପଞ୍ଚାବନଟି ପଦାର୍ଥ 'କଳିବର୍ଜ୍ୟ' ବୋଲି କୁହାଯାଇ ନିଷିଦ୍ଧ କରାଯାଇଛି ତନ୍ମଧ୍ୟରୁ ସମୁଦ୍ରଯାତ୍ରା ଅନ୍ୟତମ । ତେବେ ଏହି ଶାସ୍ତ୍ରୀୟ ନିଷେଧାଜ୍ଞାକୁ ଅମାନ୍ୟ କରି ପ୍ରାଚୀନ କଳିଙ୍ଗର ଅଭିଜ୍ଞ ନାବିକ ଓ ସାଧବଗଣ ବଙ୍ଗୋପସାଗର ଓ ଭାରତ ମହାସାଗର ବକ୍ଷରେ ପୋତ ଚାଳନା କରି ଦକ୍ଷିଣ-ପୂର୍ବ ଏସୀୟ ରାଷ୍ଟ୍ରଙ୍କ ଉପରେ ବାଣିଜ୍ୟିକ ଓ ସାଂସ୍କୃତିକ ଆଧିପତ୍ୟ ଜାହିର କରିଥିଲେ । ତେଣୁ ମହାକବି କାଳିଦାସ ରଘୁବଂଶରେ କଳିଙ୍ଗର ରାଜାଙ୍କୁ 'ମହୋଦଧି ପତି' ବୋଲି ବର୍ଣ୍ଣନା କରିଛନ୍ତି । ପୁନଶ୍ଚ କଳିଙ୍ଗ ଜାତି ଓ ଜୀବନରେ ଦୁର୍ଦ୍ଧର୍ଷ ପଣିଆ ସମଗ୍ର ପୃଥିବୀରେ ତାକୁ 'କଳିଙ୍ଗାଃ ସାହସିକାଃ' ରୂପେ ମର୍ଯ୍ୟାଦାବନ୍ତ କରିପାରିଥିଲା । କଳିଙ୍ଗମାନେ ବଙ୍ଗୋପସାଗରକୁ ସେମାନଙ୍କର ଚରାଭୂଇଁରେ ପରିଚିତ କରିଦେଇଥିବାରୁ ବଙ୍ଗୋପ ସାଗରକୁ 'କଳିଙ୍ଗସାଗର' ବୋଲି କୁହାଯାଉଥିଲା ।

**କଳିଙ୍ଗ ନାମର ଯାଥାର୍ଥ୍ୟ :** ପ୍ରାଚୀନ ଓଡ଼ିଶାକୁ କାହିଁକି କଳିଙ୍ଗ କୁହାଯାଉଥିଲା ସେ ବିଷୟଟି ଅତ୍ୟନ୍ତ କୌତୂହଳପୂର୍ଣ୍ଣ ଅଟେ । ଅଶୋକଙ୍କ କଳିଙ୍ଗ ବିଜୟ ପୂର୍ବରୁ କଳିଙ୍ଗର ଲୋକମାନେ ବ୍ରହ୍ମଦେଶରେ ଉପନିବେଶ ସ୍ଥାପନ କରିଥିଲେ । ମାଲେସିଆ ଲୋକମାନେ ଏବେ ବି ଭାରତୀୟମାନଙ୍କୁ 'କ୍ଲିଙ୍ଗ' ବୋଲି କହନ୍ତି । ଜାଭାଦ୍ୱୀପରୁ ମିଳିଥିବା ଶିଳାଲେଖରୁ 'କ୍ଲିଙ୍ଗ' ଶବ୍ଦ ପ୍ରଭୃତି ପ୍ରାଚୀନ କଳିଙ୍ଗ ଶବ୍ଦର ଅପଭ୍ରଂଶ ବ୍ୟତୀତ ଅନ୍ୟ କିଛି ନୁହେଁ । ପ୍ରାଚୀନ କଳିଙ୍ଗରେ କଳି ସଂପ୍ରଦାୟ ଲୋକ ବସତି ସ୍ଥାପନ କରିବା ଏବଂ ତାଙ୍କଦ୍ୱାରା ଲିଙ୍ଗ ଉପାସନାର ପ୍ରସାର ଘଟିବା ହିଁ ପରବର୍ତ୍ତୀ ସମୟରେ ଏହି ରାଷ୍ଟ୍ରକୁ କଳିଙ୍ଗ ଆଖ୍ୟାୟିତ କରିବା ଯଥାର୍ଥ ମନେ ହୁଏ । ପରେ ପରେ କଳିଙ୍ଗ କଳାର ଉତ୍କର୍ଷ ହେତୁ ଉତ୍କଳ ବା ଉତ୍କଳିଙ୍ଗ ଓ ତ୍ରିକଳିଙ୍ଗ ହେବା ଯୁକ୍ତିସମ୍ମତ ।

**ପ୍ରାଚୀନ ଉତ୍କଳର ପ୍ରସିଦ୍ଧ ପୋତାଶ୍ରୟ :** ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଗ୍ରୀକ୍ ପର୍ଯ୍ୟଟକ ହେଉଛନ୍ତି ଟୋଲେମି । ତାଙ୍କ ରଚିତ ଭୂଗୋଳ ଗ୍ରନ୍ଥର ବିବରଣୀରୁ ଜଣାଯାଏ ଯେ କଳିଙ୍ଗର ବେଳାଭୂମି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସୁବିସ୍ତୃତ ଥିଲା । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ କାଳରେ ଓଡ଼ିଶା ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ଏବଂ ସାଗରଠାରୁ ଅମରକଂଟକ ପର୍ଯ୍ୟନ୍ତ ଏକ ଶକ୍ତିଶାଳୀ ରାଜ୍ୟ ରୂପେ ସଂଗଠିତ ହୋଇଥିଲା । ମାତ୍ର ତାଙ୍କର ପ୍ରପୌତ୍ର ଅଶୋକ ସମ୍ରାଟ ହେବା ପରେ ଖ୍ରୀଷ୍ଟପୂର୍ବ ୨୬୯ରେ କଳିଙ୍ଗ ଯୁଦ୍ଧ ସଂଘଟିତ ହେଲା । ଏହି ଯୁଦ୍ଧର ମୁଖ୍ୟ କାରଣ ଥିଲା ମଗଧର ସାମ୍ରାଜ୍ୟବାଦ । ଇତିହାସ ପୃଷ୍ଠାରୁ ଜଣାଯାଏ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି କଳିଙ୍ଗ ବିରୋଧରେ ଯେଉଁ ଶୀତଳ ଯୁଦ୍ଧ ଚାଲିଥିଲା, ତା'ର ଫଳସ୍ୱରୂପ କଳିଙ୍ଗର ବଣିକମାନେ ମଗଧକୁ ଅର୍ଥନୈତିକ ବାସନ୍ଦ ରଖିବାର ଉଦ୍ୟମ ଚଳାଇ ଆସୁଥିଲେ । ମଗଧର ଏହି ବହିର୍ବାଣିଜ୍ୟ ବନ୍ଦ ହୋଇଯିବାରୁ ମଗଧ ସାମ୍ରାଜ୍ୟ ଆର୍ଥିକ ସଙ୍କଟ ମଧ୍ୟ ଦେଇ ଗତି କରିଥିଲା । ତେଣୁ ମଗଧ ସାମ୍ରାଜ୍ୟ ପାଇଁ କଳିଙ୍ଗ ଆକ୍ରମଣ କରିବା ଅନିବାର୍ଯ୍ୟ ହୋଇ ପଡ଼ିଥିଲା ବୋଲି ଗବେଷକମାନେ ମତପୋଷଣ କରିଛନ୍ତି । ପାଲୁରା ବା ପାଲୁର ଗଞ୍ଜାମ ନିକଟସ୍ଥ ଏକ ନଗର କଳିଙ୍ଗର ସର୍ବଶ୍ରେଷ୍ଠ ବନ୍ଦର ଥିଲା । ଗ୍ରୀକ୍ ଭୌଗୋଳିକବିତ୍ ଟୋଲେମି ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସଂପର୍କରେ ସୂଚନା ଦେଇ କହନ୍ତି ଦ୍ୱିତୀୟ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଉପକୂଳରେ ଅବସ୍ଥିତ ପାଲୁର ବନ୍ଦର ଦକ୍ଷିଣ-ପୂର୍ବ ଏସିଆକୁ ଜଳଯାତ୍ରା ନିମନ୍ତେ ଆନ୍ତର୍ଜାତିକ ଖ୍ୟାତିଲାଭ କରିଥିଲା । ସେଠାରୁ ପୂର୍ବାଭିମୁଖୀ ପୋତମାନେ ଗଭୀର ସମୁଦ୍ର ବକ୍ଷରେ ଯାତାୟାତ କରୁଥିଲେ । ଏହା ବ୍ୟତୀତ 'ନିନିଗେନ୍' ଅଧୁନା ପୁରୀ 'କଟିକର୍ଦ୍ଦମ' ଅଧୁନା କଟକ 'କୋଣଗର' ଅଧୁନା କୋଣାର୍କ 'କୋଳାମ୍ବ' ଅଧୁନା ବାଲେଶ୍ୱର 'ପୁଲୁର'ଅଧୁନା ଜଳେଶ୍ୱର 'ଦୋଷରମ୍' ଅଧୁନା ବୈତରଣୀ 'ମନଦ' ଅଧୁନା ମହାନଦୀ 'ତିଲିସ୍' ଅଧୁନା ବ୍ରାହ୍ମଣୀ 'ଅଦମଣ' ଅଧୁନା ସୁବର୍ଣ୍ଣରେଖା 'ଚାରିତ୍ର' ବା 'ଚେଲି' ଅର୍ଥାତ୍ ଅଧୁନା ଚିତ୍ରୋତ୍ପଳା ଓ ତାମ୍ରଲିପ୍ତ ପ୍ରଭୃତି ବନ୍ଦର ଓ ନଦୀମାନ ପ୍ରଥମ ଶତାବ୍ଦୀର ବହୁ ପୂର୍ବରୁ କଳିଙ୍ଗର ବାଣିଜ୍ୟ କେନ୍ଦ୍ରମାନ ଥିଲା । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ମୌସଲିନ୍(ମସଲିପଟମ୍), ଚିଲିକା ହ୍ରଦରେ କାଳୁପଡ଼ାଘାଟ, ରମ୍ଭା ଓ ପାଲୁର ପୋତାଶ୍ରୟ ରହିଥିଲା । କାଳୁପଡ଼ା ସହିତ ସୁବର୍ଣ୍ଣରେଖା ମୁହାଣର ବାଣିଜ୍ୟିକ ଭୂମିକା ରହିଥିବାର ସ୍ପଷ୍ଟ ଚିତ୍ର ମିଳେ । ପିପିଲି, ହରିଶପୁର,ହୁଗୁଳି, କାକଟପୁର, ତାମ୍ରଲିପ୍ତ, ନରେଖା, ସାରୋଗା, ଲୋଇଚନପୁର, ଚୂଡ଼ାମନ ଓ ଧାମରା ପ୍ରଭୃତି ପ୍ରଧାନ ବନ୍ଦର ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ମନେହୁଏ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ ଓ ଋଷିକୁଲ୍ୟା ପ୍ରଭୃତି ନଦୀରେ ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟଦ୍ରବ୍ୟ ଆସି ନଦୀମୁହାଣରେ ଥିବା ବନ୍ଦର ନଗରୀରେ ଏକତ୍ରିତ ହେଉଥିଲା । ସେଠାରୁ ବାଣିଜ୍ୟ ପୋତରେ ସାଗର ପାରି ହୋଇ ବିଦେଶମାନଙ୍କୁ ଯାଉଥିଲା । ସେହି ସମୟରେ ଓଡ଼ିଶାର ଅନ୍ତର୍ନୌବାଣିଜ୍ୟ ବାହ୍ୟ ନୌବାଣିଜ୍ୟ ସୁସଂହତ ଥିଲା । କେତେକ ଅନୁଶାସନରୁ ଜଣାପଡ଼େ ଯେ ଖ୍ରୀଷ୍ଟପୂର୍ବ ତୃତୀୟ ଓ ଚତୁର୍ଥ ଶତାବ୍ଦୀରେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନରେ ସମୁଦ୍ର ଯାତ୍ରା ଓ ବାଣିଜ୍ୟ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା । ଏଥିରୁ ଜଣାପଡ଼େ, ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଖୁବ୍ ବିକଶିତ ହୋଇଥିଲା । ଅନ୍ତର୍ବାଣିଜ୍ୟ ଦୃଷ୍ଟିରୁ ଜଳେଶ୍ୱର, ବାଲେଶ୍ୱର, ବାମନଘାଟି, କଟକ, ଯାଜପୁର, ଆନନ୍ଦପୁର, ଚାନ୍ଦବାଲି, ବାରକୋଟ, ତାଳଚେର, ଭୁବନ, ଆଦିପୁରା, ଜେନାପୁର, ଇନ୍ଦିପୁର, ପଟମୁଣ୍ଡାଇ, ଆସ୍କା, ସମ୍ବଲପୁର ଓ ସୋନପୁର ପ୍ରଭୃତି ସମୃଦ୍ଧ ବାଣିଜ୍ୟନଗରୀ ଥିଲା ।

**ବହିର୍ବାଣିଜ୍ୟ ସମ୍ପର୍କିତ ଦେଶ :** ଐତିହାସିକମାନଙ୍କ ମଧ୍ୟରେ ପ୍ରାଚୀନ କଳିଙ୍ଗ ଏକ ମହାନ୍ ଶକ୍ତିଶାଳୀ ସାମ୍ରାଜ୍ୟ

ଥିଲା । ଆଶୁତୋଷ ପ୍ରସାଦ ପଟ୍ଟନାୟକ ସ୍ୱଲିଖିତ 'ଦି ୟର୍ଲି ଭୟେଜରସ୍ ଅଫ୍ ଦି ଇଷ୍ଟ' ପୁସ୍ତିକାରେ ଉଲ୍ଲେଖ କରିଛନ୍ତି ଯେ ନନ୍ଦ ରାଜତ୍ୱ ପରେ କଳିଙ୍ଗ ସାମ୍ରାଜ୍ୟର ଅଭ୍ୟୁଦୟ ଘଟେ । ଏହି ଦୀର୍ଘକାଳର ସମୟ ଖ୍ରୀଷ୍ଟପୂର୍ବ ସାତ ଶହ ବର୍ଷରୁ ଖ୍ରୀଷ୍ଟାବ୍ଦ ୧୫୬୮ ପର୍ଯ୍ୟନ୍ତ କଳିଙ୍ଗର ଅସ୍ତିତ୍ୱ ଥିଲା ବୋଲି ସେ ନିର୍ଣ୍ଣୟ କରିଛନ୍ତି । ଦୀର୍ଘ ବାଇଶି ଶହ ପଚାଶ ବର୍ଷର ଇତିହାସ ଯେତିକି ରୋମାଞ୍ଚକର ସେତିକି ଘଟଣାବହୁଳ । ମହାନଦୀର ଦକ୍ଷିଣକୁ ଗୋଦାବରୀ ନଦୀ ସୀମା ମଧ୍ୟରେ ଥିବା ଭୂଖଣ୍ଡ କଳିଙ୍ଗ ନାମରେ ପରିଚିତ ଥିଲା । କିନ୍ତୁ କେତେବେଳେ ଏହା ଗଙ୍ଗ ପର୍ଯ୍ୟନ୍ତ ତ ଆଉ କେତେବେଳେ ଉତ୍ତର ଭାରତ ଓ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଦୁଇ ହଜାର ଦୁଇ ଶହ ପଚାଶ ବର୍ଷ ମଧ୍ୟରେ ଯେଉଁ ସମ୍ରାଟମାନେ କଳିଙ୍ଗ ସିଂହାସନରେ ବସିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀର କରକଣ୍ଡୁ ଓ ସର୍ବାପେକ୍ଷା ପରାକ୍ରମୀ ମହାମେଘବାହନ ଖାରବେଳ ଏବଂ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ(୧୪୩୫-୧୪୩୮) । କିନ୍ତୁ ପରାକ୍ରମ ଓ ଶକ୍ତି ବଳରେ କଳିଙ୍ଗର ଓଡ଼ିଆ ସାଧବପୁଅମାନେ ସାତ ସମୁଦ୍ର ତେର ନଈ ପାର ହୋଇ ବାଣିଜ୍ୟ କରିବା ପାଇଁ ସୁଦୂର ପୂର୍ବ ଏସିଆର ଚୀନ୍, ଜାପାନ, ପେରୁ, ସିଂହଳ, ମାଲେସିଆ, କାମ୍ବୋଡ଼ିଆ,ବର୍ମା ଇଣ୍ଡୋନେସିଆ ଦ୍ୱୀପପୁଞ୍ଜର ଜାଭା ଦ୍ୱୀପ ଓ ବାଲି, ଶ୍ୟାମଦେଶ(ଥାଇଲାଣ୍ଡ), ବୋର୍ଣ୍ଣିଓ ଓ ସୁମାତ୍ରା ପ୍ରଭୃତି ଦେଶ ପର୍ଯ୍ୟନ୍ତ ଖେଦି ଯାଇଥିଲେ ଓ ସେଠାରେ ଉପନିବେଶମାନ ସ୍ଥାପନା କରୁଥିଲେ । ଦୀର୍ଘକାଳ କଳିଙ୍ଗ ଓ ସୁଦୂର ପୂର୍ବ ଏସିଆର ଦେଶମାନଙ୍କ ମଧ୍ୟରେ କେବଳ ଯେ ବ୍ୟବସାୟ ବାଣିଜ୍ୟ ଥିଲା ଏକମାତ୍ର କାର୍ଯ୍ୟ, ତାହା ନୁହେଁ, କଳିଙ୍ଗର ସାଂସ୍କୃତିକ ଐତିହ୍ୟ ଓ ପରମ୍ପରା ଏବଂ ସାମାଜିକ ବ୍ୟବସ୍ଥା ଏତେ ଉନ୍ନତ ଥିଲା ଯେ କଳିଙ୍ଗମାନେ ଅନାୟାସରେ ଦକ୍ଷିଣ ପୂର୍ବ ଏସିଆରେ ସାଂସ୍କୃତିକ ସାମ୍ରାଜ୍ୟ ସ୍ଥାପନା କରିବା ସହଜ ହୋଇଥିଲା ।

ସେତେବେଳେ ପାଲଟଣା ବୋଇତମାନ ଲହରୀଘେରା ଚକ୍ରବାଳ ସୀମାରୁ ଭାସି ଆସୁଥିବାର ଦେଖି ସୁବର୍ଣ୍ଣ ଦ୍ୱୀପର ଅଧିବାସୀମାନେ ଭାବୁଥିଲେ ଯେ କଳିଙ୍ଗର ଲୋକମାନେ ନୀଳ ଆକାଶରୁ ଧରାପୃଷ୍ଠକୁ ଓହ୍ଲାଇ ଆସୁଛନ୍ତି । ତେଣୁ ସେମାନେ କଳିଙ୍ଗବାସୀଙ୍କୁ ଭୟ ଓ ବିସ୍ମୟ ଦୃଷ୍ଟିରେ ଦେଖୁଥିଲେ । ଲାମା ତାରାନାଥ କଳିଙ୍ଗର ବୋଇତଜୀବୀଙ୍କୁ ସମୁଦ୍ରର ସର୍ପ ବୋଲି ବର୍ଣ୍ଣନା କରିଛନ୍ତି । ବଙ୍ଗୋପ ସାଗରରେ କଳିଙ୍ଗମାନଙ୍କର ଆଧିପତ୍ୟ ଅନୁଭବ କରି ସେହି ସାଗରକୁ କଳିଙ୍ଗ ସାଗର ବୋଲି କୁହାଯାଉଥିଲା ।

ଡଃ.ଆର.ସି.ମଜୁମ୍ଦାରଙ୍କ ମତରେ ତାମ୍ରଲିପ୍ତ ସେତେବେଳେ କଳିଙ୍ଗ ସାମ୍ରାଜ୍ୟର ଏକ ସମୃଦ୍ଧ ବନ୍ଦର ଥିଲା । ଖ୍ରୀଷ୍ଟପୂର୍ବ ୬୪୮ରେ କଳିଙ୍ଗମାନେ ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ ଏକ ହିନ୍ଦୁ ସାମ୍ରାଜ୍ୟ ଗଠନ କରିଥିଲେ ବୋଲି ଐତିହାସିକ ଜେରିନ୍ ମତବ୍ୟକ୍ତ କରିଛନ୍ତି । କଳିଙ୍ଗସାଗରର ଚତୁର୍ଦ୍ଦିଗରେ କଳିଙ୍ଗ ସାମ୍ରାଜ୍ୟ ଗଢି ଉଠିଥିଲା । ଡ଼. ଆର.ଡ଼ି ବାନାର୍ଜୀଙ୍କ ମତରେ କଳିଙ୍ଗର ବଣିକମାନେ ଆଫ୍ରିକାର ଉପକୂଳ ଅଞ୍ଚଳ ଓ ଆମେରିକାର ପେରୁ, ମେକ୍ସିକୋ ଅଞ୍ଚଳ ସହିତ ବାଣିଜ୍ୟ କାରବାର କରୁଥିଲେ ।

କଳିଙ୍ଗ, ଉତ୍କଳ, ଉଡ୍ର ବା କୋଶଳର ବିବିଧତା ସତ୍ୱେ ସମାନ ଜାତୀୟତାବୋଧ ଥିଲା । ଏହି କାରଣରୁ ଦୁଇ ହଜାର ବର୍ଷରୁ ଊର୍ଦ୍ଧ୍ୱ ସମୟ କାଳ ମଧ୍ୟରେ ବହୁ ଉତ୍ଥାନ ଓ ପତନ ପରେ ମଧ୍ୟ କଳିଙ୍ଗର ଲୋକମାନେ କେବେହେଲେ ପରାଜୟ ସ୍ୱୀକାର କରିନଥିଲେ । ଦକ୍ଷିଣ ପୂର୍ବ ଏସିଆର ଦେଶମାନଙ୍କରେ ସର୍ବତ୍ର ହିନ୍ଦୁ କଳିଙ୍ଗର ଜାତୀୟତାବୋଧ ସେମାନଙ୍କୁ ସଶକ୍ତ ଓ ସଂଗଠିତ କରି ରଖିଥିଲା ।

ସଂସ୍କୃତି, ପରମ୍ପରା, ରାଜନୀତି, ଭାଷା, ଶିଳ୍ପକଳା, ସାହିତ୍ୟ, ଭୌଗୋଳିକ ଓ ଐତିହାସିକ ସାମଞ୍ଜସ୍ୟକୁ ବିଚାରକୁ ନେଲେ ଦକ୍ଷିଣ-ପୂର୍ବ ଏସୀୟ ରାଷ୍ଟ୍ର ସହ ଓଡ଼ିଶାର ସମ୍ପର୍କ ଯେ ଅତି ନିବିଡ଼ ଏକଥା ଅନସ୍ୱୀକାର୍ଯ୍ୟ । ଗୌରବର କଥା ପ୍ରଥମ ଶତାବ୍ଦୀରେ ଓଡ଼ିଆମାନେ ଦରିଆପାରି ଦେଶମାନଙ୍କରେ ଭାରତୀୟ ସଂସ୍କୃତିର ପ୍ରସାର ଘଟାଇଥିଲେ । ଏହା ସଂପ୍ରତି ବିଭିନ୍ନ ଭୂଖନନରୁ ସ୍ପଷ୍ଟ । ସେହିସବୁ ଦେଶର ଅଭିଲେଖରୁ ପାଲି ଓ ସଂସ୍କୃତ ଭାଷାର ନିଦର୍ଶନ ମିଳିଛି । ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ ଓ ଜଗନ୍ନାଥ ଧର୍ମ ପ୍ରଚାରରେ ଓଡ଼ିଶା ନୌବାଣିଜ୍ୟର ଭୂମିକା ଉଲ୍ଲେଖନୀୟ ।

ବାଲିଦ୍ୱୀପର ଲୋକସଂଖ୍ୟା ମାତ୍ର ପଚିଶ ଲକ୍ଷ, ଏହା ସତ୍ୱେ କଳିଙ୍ଗର ଏହି ବଂଶଧରମାନେ ପରବର୍ତ୍ତୀ କାଳରେ ଧର୍ମ ପରିବର୍ତ୍ତନ କରି ନଥିଲେ କିମ୍ବା ସେମାନଙ୍କର ଆଚାର

ବ୍ୟବହାରରୁ କଳିଙ୍ଗ ସଂସ୍କୃତି ଲିଭି ଯାଇନଥିଲା । ଇଣ୍ଡୋନେସିଆର ବାଲିଦ୍ୱୀପର ହିନ୍ଦୁମାନଙ୍କର ସମ୍ପର୍କରେ କୁହାଯାଏ ଯେ ସମଗ୍ର ଇଣ୍ଡୋନେସିଆରେ ୯୦ ପ୍ରତିଶତ ଲୋକ ଇସଲାମଧର୍ମୀ ହୋଇଥିଲା ବେଳେ ବାଲିଦ୍ୱୀପର ୯୨ ପ୍ରତିଶତ ଲୋକ ହିନ୍ଦୁ । ଦୀର୍ଘକାଳ ସେଠାରେ ସେମାନେ ବସବାସ କରି ଆସୁଥିଲେ ହେଁ ସେ ଦେଶର ନାଗରିକ ହୋଇ ମଧ୍ୟ ଦେଶମାତୃକାର ବିକାଶ କକ୍ଷେ କାୟମନୋବାକ୍ୟରେ କାର୍ଯ୍ୟ କରୁଛନ୍ତି ସିନା, କିନ୍ତୁ ସେମାନଙ୍କର ମୂଳ ମାତୃଭୂମିର ଧର୍ମ ଓ ସଂସ୍କୃତିକୁ ଛାଡ଼ି ନାହାଁନ୍ତି ।

ସମଗ୍ର ଇଣ୍ଡୋନେସିଆରେ ରାମାୟଣ ଓ ମହାଭାରତ ଏବଂ ଭାରତୀୟ ଲୋକକଥା ଖୁବ୍ ଜନପ୍ରିୟ । ଦେଶ ମୁସଲମାନ ପ୍ରଧାନ ହେଲେ ସୁଦ୍ଧା ଜୀବନଶୈଳୀ ଓ ଜୀବନଚର୍ଯ୍ୟାରେ ହିନ୍ଦୁ ସଂସ୍କୃତିର ଚିହ୍ନ ସର୍ବତ୍ର । ସ୍ୱାଧୀନ ଇଣ୍ଡୋନେସିଆର ପ୍ରଥମ ରାଷ୍ଟ୍ରପତି ସୁକର୍ଣ୍ଣୋ ଓ ତାଙ୍କ କନ୍ୟା ମେଘବତୀ ସବୁ ହିନ୍ଦୁ ପରିବାରର ନାମ । ହିନ୍ଦୁ ସଂସ୍କୃତି ସମଗ୍ର ଇଣ୍ଡୋନେସିଆର ଜାତୀୟ ସମ୍ପତ୍ତି ଓ ଜୀବନ ଧାରା । ଇସଲାମ ଇଣ୍ଡୋନେସିଆରେ ପ୍ରବେଶ କରିବା ପୂର୍ବରୁ ହିନ୍ଦୁ ଓ ବୌଦ୍ଧ ସଂସ୍କୃତି ଧର୍ମଧାରା ସେ ଦେଶର ଲୋକାଚାରକୁ ଅଧିକ ସ୍ପନ୍ଦିତ ଓ ମହିମାନ୍ୱିତ କରିଥିଲା । ଏହି କାରଣରୁ ବୌଦ୍ଧମାନଙ୍କୁ ସେ ଦେଶରେ ହିନ୍ଦୁ ବୋଲି ଧରିନିଆଯାଏ । ଇଣ୍ଡୋନେସିଆର ଜାତୀୟ ଭାଷା ଯାହା ମାଲେସିଆ ଓ ସିଙ୍ଗାପୁରର ଜାତୀୟ ଭାଷା ମଧ୍ୟ ସେଇଆ ଓ ତାହା ହେଉଛି ସଂସ୍କୃତ ଭାଷା । ଧର୍ମ ଭିତରେ ଅପୂର୍ବ ସମନ୍ୱୟ ଥିବାରୁ ମୁସଲମାନ ଓ ଖ୍ରୀଷ୍ଟିଆନମାନେ କୌଣସି ପ୍ରକାର କୁଣ୍ଠା ନ କରି ହିନ୍ଦୁ ନାମ ଗ୍ରହଣ କରନ୍ତି ।

ଦୁଇ ଦେଶ ମଧ୍ୟରେ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ବୃଦ୍ଧି ପାଇବାରୁ କ୍ରମଶଃ ଜାଭା ଓ ବାଲିଦ୍ୱୀପରେ କଳିଙ୍ଗମାନଙ୍କ ପ୍ରଭାବ ମଧ୍ୟ ବୃଦ୍ଧି ପାଇଲା । ଐତିହାସିକମାନେ କହନ୍ତି ଯେ ଅଶୋକଙ୍କ କଳିଙ୍ଗ ବିଜୟ ପରେ ଖ୍ରୀଷ୍ଟପୂର୍ବ ୨୬୦ ପରେ କଳିଙ୍ଗରୁ ବାଣିଜ୍ୟ କରିବା ପାଇଁ ଯେଉଁମାନେ ଆସିଥିଲେ ସେମାନଙ୍କ ମଧ୍ୟରେ ସାଧବମାନଙ୍କ ସହିତ ବ୍ରାହ୍ମଣ ଓ ଅନ୍ୟ ଜାତିର ଲୋକମାନେ ମଧ୍ୟ ଆସିଥିଲେ । ସେମାନେ ସମସ୍ତେ ଥିଲେ କଳିଙ୍ଗବାସୀ । ସେମାନେ ଇଣ୍ଡୋନେସିଆର ବିଭିନ୍ନ ସ୍ଥାନରେ ବସତି ସ୍ଥାପନ କଲେ । କୁହାଯାଏ ଯେ କଳିଙ୍ଗ ରାଜକୁମାର କୋଡ଼ିଏ ହଜାର ପରିବାରକୁ ଜାଭାକୁ ପଠାଇଥିଲେ । ଇଣ୍ଡୋନେସିଆ ଇତିହାସରୁ ଜଣାଯାଏ ଯେ କେନ୍ଦ୍ର ଜାଭାରେ ସେମାନେ କଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ସପ୍ତମ ଶତାବ୍ଦୀ ବେଳକୁ ଜାଭା ଏକ ବିରାଟ ବୌଦ୍ଧ ସଂସ୍କୃତିର କେନ୍ଦ୍ର ଭାବେ ଗଢି ଉଠିଥିଲା ସେତେବେଳେ କଳିଙ୍ଗରେ ଭୌମକର ରାଜବଂଶର ରାଣୀ ସୀମା ସିଂହାସନରେ ବସିଥିଲେ । ସୀମା ଜଣେ ସୁଶାସିକା, ସତ୍ୟନିଷ୍ଠା ଓ ଧର୍ମପରାୟଣା ଶାସିକା ଥିଲେ । ତାଙ୍କ ସମୟରେ ଭାରତରୁ ଯେଉଁମାନେ ଜାଭାକୁ ଆସୁଥିଲେ ସେମାନଙ୍କୁ ରାଜା କୁହାଯାଉଥିଲା । ଦଶମ ଏକାଦଶ ଶତାବ୍ଦୀ ବେଳକୁ ଗୁଜରାଟର ମୁସଲମାନ ବଣିକମାନେ ଇଣ୍ଡୋନେସିଆ ଆସିଥିବାର ଅନୁମାନ କରାଯାଏ । ଫାଲଗୁନାଡ଼ି କହନ୍ତି ଯେ ସେ ଦେଶରେ ସମସ୍ତେ କଳିଙ୍ଗକୁ ଓଡ଼ିଶା ଜାଣିଥିଲେ । ସେହି କାଳରୁ ଓଡ଼ିଶାରେ ରାସପୂର୍ଣ୍ଣିମା ଦିନ ପାଳନ କରାଯାଉଥିବା ଡ଼ଙ୍ଗା ବନ୍ଦାଣ ଉତ୍ସବ ଏପର୍ଯ୍ୟନ୍ତ କେବଳ ଓଡ଼ିଶାରେ ଏକ ପବିତ୍ର ଉତ୍ସବ ଭାବେ ପାଳିତ ହେଉନାହିଁ, ବାଲି ଜାଭା ଅଞ୍ଚଳରେ ମଧ୍ୟ ତାହା ପାଳିତ ହେଉଛି । ଛୋଟ ଛୋଟ ଡ଼ଙ୍ଗାରେ ପାନଗୁଆ, ଫଳମୂଳ ସହିତ ଦୀପ ରଖି ସମୁଦ୍ରରେ ଭସାଇ ଦେବା ପରମ୍ପରା ସେମାନେ ମଧ୍ୟ ପାଳନ କରି ଆସୁଛନ୍ତି ଏପର୍ଯ୍ୟନ୍ତ । କଳିଙ୍ଗ ଯେ ଭାରତର ଏକ ଅଂଶ ଏହା ପରେ ପରେ ସାଧାରଣ ଲୋକ ଜାଣିବାକୁ ପାଇଲେ । ମହାନଦୀ ଏକ ପବିତ୍ର ନଦୀ ଭାବେ ଏବେବି ସେମାନଙ୍କ ସ୍ତୋତ୍ରରୁ ଜଣାଯାଏ :

ଓମ୍ ଗଙ୍ଗା, ସିନ୍ଧୁ, ସରସ୍ୱତୀ
ବିପାଶା, କୌଶିକୀ ନଦୀ, ଯମୁନା
ମହାନଦୀ ଶ୍ରେଷ୍ଠା ସରଜୁ ମହତି ॥

ଏହା ବ୍ୟତୀତ ବାଲିର ଲୋକଙ୍କ ଦୈନନ୍ଦିନ ଚଳଣି ଆଚାର ବିଚାର ଓ ଓଡ଼ିଶାବାସୀଙ୍କ ଚଳଣି, ଆଚାର ବିଚାର ମଧ୍ୟରେ ଅନେକ ସାମଞ୍ଜସ୍ୟ ଥିବା ଦେଖାଯାଏ । ସେ ଦେଶରେ ମା'ଙ୍କୁ ବୋଉ,ବାପାଙ୍କୁ ବାପା କୁହାଯାଏ । ଗୁଆକୁ ଗୁଆ ବା ବୁଆ । ବାଲି ଦ୍ୱୀପରେ ତିନି ଦେବତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପୂଜା କରାଯାଏ । ମୃତ୍ୟୁ ପରେ ଦ୍ୱାଦଶ ଦିନ ପର୍ଯ୍ୟନ୍ତ ଯେପରି ଅନ୍ତ୍ୟେଷ୍ଟି କରାଯାଏ ବାଲିରେ ମଧ୍ୟ ସେପରି ପ୍ରଥା ରହିଛି । ଦ୍ୱାଦଶ ଦିନ କ୍ରିୟା ସମାପ୍ତ ହେଲା ପରେ ଆତ୍ମା ମୁକ୍ତ ହୁଏ ବୋଲି ସେମାନଙ୍କର ବିଶ୍ୱାସ ।

**ନୌବାଣିଜ୍ୟର ପ୍ରମୁଖ ପଣ୍ୟ ଦ୍ରବ୍ୟ :** ଓଡ଼ିଆ ସାଧବ ପୁଅମାନେ ଓଡ଼ିଶାର ସୂକ୍ଷ୍ମ ରେଶମ ଓ କାର୍ପାସ ବସ୍ତ୍ର, ସୂକ୍ଷ୍ମ ପାଟ ବସ୍ତ୍ର, ହାତୀଦାନ୍ତର ସୂକ୍ଷ୍ମ କାରୁକାର୍ଯ୍ୟ ଖଚିତ ମହାର୍ଘ ଅଳଙ୍କାର, ମଣିମୁକ୍ତାମଣ୍ଡିତ ଅଳଙ୍କାର, ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ଅଳଙ୍କାର, ଭେଷଜ୍ୟ ଓ ରାସାୟନିକ ଦ୍ରବ୍ୟ , ସୁସ୍ୱାଦୁ ଖାଦ୍ୟ, ତାମ୍ବୁଳ(ପାନ), ପାନୀୟ(ମଦ), ଆଦି ଦୁର୍ଲ୍ଲଭ ପଦାର୍ଥ, ମୃତ୍ତିକା ନିର୍ମିତ ଖେଳନା, ପିତଳ ଓ କାଂସ୍ୟ ନିର୍ମିତ ପାତ୍ର, ବିଭିନ୍ନ ରଙ୍ଗର ମୌଳିକ ଖଣିଜ ପଦାର୍ଥ, କସ୍ତୁରୀ ଚନ୍ଦନ ଓ କର୍ପୂର ପ୍ରଭୃତି ଦେଶୀୟ ଶିଳ୍ପ ସାମଗ୍ରୀ ନେଇ ବିଦେଶରେ ବିକ୍ରୟ କରି ବହୁ ଧନରତ୍ନ ସ୍ୱଦେଶକୁ ବୋହି ଆଣୁଥିଲେ । ସେମାନେ ସାଥିରେ ଗୁଆ, ଲବଙ୍ଗ, ଅଳେଇଚ ଓ ଗୁଜୁରାତି ପ୍ରଭୃତି ଆଣୁଥିଲେ । ପ୍ରାଚୀନ ଯୁଗରେ କଳିଙ୍ଗର ହସ୍ତୀ ସିଂହଳକୁ ରପ୍ତାନି ହେଉଥିଲା । ସେତେବେଳେ ବାଣିଜ୍ୟ କ୍ଷେତ୍ରରେ ସତ୍ୟ ଓ ନ୍ୟାୟ ପ୍ରତିଷ୍ଠା ହେଲେ ଲକ୍ଷ୍ମୀ ପ୍ରସନ୍ନ ହୁଅନ୍ତି ବୋଲି ସାଧବପୁଅମାନଙ୍କର ମତ ଥିଲା । ତେଣୁ ସେମାନେ 'ବାଣିଜ୍ୟେ ବସତି ଲକ୍ଷ୍ମୀଃ' ବୋଲି ବିଶ୍ୱାସ କରୁଥିଲେ । ନିଜ ଆଚରଣରେ ସାଧୁତା ବଜାୟ ରଖୁଥିଲେ । ଭାଷାବିତ୍‌ମାନଙ୍କ ମତରେ ସାଧୁତାରୁ ସାଧୁ ଓ ସାଧୁରୁ ସାଧବ ଶବ୍ଦର ସୃଷ୍ଟି । ସୋମଦେବଙ୍କ 'କଥାସରିତ୍ ସାଗର', ବିଦ୍ୟାପତିଙ୍କ 'ପୁରୁଷପରୀକ୍ଷା' ଓ ହଜାରୀବାଗ ବୁଧପାନି ପାହାଡ଼ର ଅଙ୍କିତ ଲିପି ଆଦିରୁ ତତ୍କାଳୀନ ଓଡ଼ିଶାର ବହିର୍ବାଣିଜ୍ୟ ଓ ଅନ୍ତର୍ଦେଶୀୟ ବାଣିଜ୍ୟର ବିବରଣୀମାନ ଦେଖିବାକୁ ମିଳେ ।

**ନୌବାଣିଜ୍ୟର ପ୍ରକୃଷ୍ଟ ମାସ କାର୍ତ୍ତିକ :** କାର୍ତ୍ତିକ ମାସ ବେଳକୁ ବର୍ଷା ଛାଡ଼ି ଯାଇଥାଏ । ଆକାଶ ମେଘମୁକ୍ତ ଥାଏ । ପବନ ବହିବା କମି ଯାଇଥାଏ । ଝଡ଼ ତୋଫାନର ଆଶଙ୍କା ନଥାଏ । ଏଣେ ବର୍ଷାକାଳୀନ ଚାଷବାସ ସରି ଯାଇଥାଏ । କାର୍ତ୍ତିକ ମାସ ବେଳକୁ ନଈରେ ବନ୍ୟା ନଥାଏ । କିନ୍ତୁ ବଡ଼ ବଡ଼ ଜାହାଜ ନଈ ସୁଅରେ ସମୁଦ୍ରକୁ ଯିବା ନିମନ୍ତେ ଯଥେଷ୍ଟ ଜଳସ୍ରୋତ ଥାଏ । କାର୍ତ୍ତିକ ମାସର ପୂର୍ଣ୍ଣିମା ଦିନ ଶୁଭ ସକାଳୁ ସାଧବ ପୁଅମାନେ ଗଡ଼ଗଡ଼ିଆ ଘାଟଠାରେ ଏକାଠି ହୁଅନ୍ତି । ସାଙ୍ଗରେ ଥାଏ ଦୁର୍ଲ୍ଲଭ ପଣ୍ୟ ଦ୍ରବ୍ୟରେ ଭରା ଜାହାଜମାନ । ଆଗରେ ଦିଗନ୍ତ ବିସ୍ତାରୀ ଗଭୀର ସାଗର । ଉପରେ ସୀମାହୀନ ନୀଳ ଆକାଶ । ବିପଦସଂକୁଳ ଅନନ୍ତ ସାଗର ଯାତ୍ରାକୁ ଭୟ ନ କରି କର୍ତ୍ତବ୍ୟର ଅନୁରୋଧରେ ସେମାନେ ବହାରି ପଡୁଥିଲେ । ସେମାନଙ୍କର ଏହି ଦୁଃସାହସକୁ ପ୍ରଚୁର ଉତ୍ସାହ ଓ ସମର୍ଥନ ମିଳୁଥିଲା ।

ବିଦେଶ ଯାତ୍ରା ପାଇଁ ଏକ ପୁଣ୍ୟ ସମୟ ନିର୍ବାଚନ କରି ଯାତ୍ରା ଆରମ୍ଭ କରିବା ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଛି । ଏଥିପାଇଁ ମାହେନ୍ଦ୍ର ବେଳା ବୋଲି ଚିନ୍ତା କରାଯାଇ ଜ୍ୟୋତିଷ ଶାସ୍ତ୍ରର ଉପଯୁକ୍ତ ପରାମର୍ଶ ନିଆଯାଇଥାଏ । ଏହି ଧାର୍ଯ୍ୟ ସମୟରେ ଉତ୍କଳୀୟ ସାଧବ ପୁଅମାନେ ବାଣିଜ୍ୟ ପୋତ ଅନନ୍ତ ସାଗର ବକ୍ଷରେ ମେଲି ଦେବା ପାଇଁ ପ୍ରସ୍ତୁତ ହୋଇ ଯାଉଥିଲେ । ସେତିକି ବେଳେ ସାଧବ ବୋହୂମାନେ ଧୂପ ଦୀପ ନୈବେଦ୍ୟ ଅର୍ପଣ ପୂର୍ବକ ବୋଇତ ବନ୍ଦାପନା କରି ସାଧବ ପୁଅମାନଙ୍କୁ ତାମ୍ବୁଳ, ଅକ୍ଷତ ଓ ତିଳଫୁଲ, ଚନ୍ଦନ ଓ ସିନ୍ଦୂର ଦେଇ ବିଦାୟ ସମ୍ବର୍ଦ୍ଧନା ଜଣାଉଥିଲେ । ସେଠାରେ ଶୋକ ଓ ଆନନ୍ଦର ଏକ ଭାବୋଚ୍ଛ୍ୱାସ ଖେଳି ଯାଉଥିଲା । ଆଷାଢ଼ ମାସରେ ନଦୀଗର୍ଭ ଜଳମଗ୍ନ ଥିଲାବେଳେ ନଦୀର ସ୍ରୋତ ସାଧବମାନଙ୍କୁ ନଦୀରୁ ସାଗର ମଧ୍ୟକୁ ଯିବା ପାଇଁ ଅନୁକୂଳ ହୋଇଥାଏ । ଉକ୍ତ ସମୟରେ ଦକ୍ଷିଣ–ପଶ୍ଚିମ ମୌସୁମୀ ବାୟୁ ଦକ୍ଷିଣ–ପୂର୍ବ ଏସୀୟ ରାଷ୍ଟ୍ରମାନଙ୍କୁ ବହିର୍ବାଣିଜ୍ୟ ପାଇଁ ଅତ୍ୟନ୍ତ ଉପକାରକ ହୋଇଥାଏ । କାର୍ତ୍ତିକ ମାସରେ ଶୀତର ଆଗମନରେ ଉତ୍ତର–ପଶ୍ଚିମ ମୌସୁମୀ ବାୟୁ ସାଧବମାନଙ୍କ ପ୍ରତ୍ୟାଗମନ ଯାତ୍ରା ପାଇଁ ସହାୟକ ହୋଇଥାଏ । ସେହି ସମୟରେ ନଦୀର ଜଳପତ୍ତନ ସମୁଦ୍ରଠାରୁ ନିମ୍ନରେ ଥିବାରୁ ସହଜରେ ସାଗରରୁ ନଦୀ ଭିତରକୁ ପ୍ରବେଶ କରିବା ପାଇଁ ଉପଯୋଗୀ ହୋଇଥାଏ ।

**ବାଲିଯାତ୍ରା ନାମର ସାର୍ଥକତା :** ଉତ୍କଳର ସାଧବ ପୁଅମାନେ ବାଲିଦ୍ୱୀପ ପ୍ରଭୃତି ବହିଃ ଦୀପପୁଞ୍ଜମାନଙ୍କୁ ବାଣିଜ୍ୟ ଓ ଉପନିବେଶ ସ୍ଥାପନ କରିବା ଉଦ୍ଦେଶ୍ୟରେ ମହାନଦୀର ଗଡ଼ଗଡ଼ିଆ ଘାଟଠାରୁ ଯାତ୍ରା ଆରମ୍ଭ କରୁଥିବାରୁ ସେହି ସ୍ମୃତିକୁ ଉଜ୍ଜୀବିତ ରଖିବା ପାଇଁ ଏହି ଐତିହାସିକ ଯାତ୍ରାର ନାମ 'ବାଲିଯାତ୍ରା' ବୋଲି କୁହାଯାଉଛି । ଦ୍ୱିତୀୟରେ କୁହାଯାଉଛି ବୈଷ୍ଣବ ଧର୍ମର ପ୍ରଚାରକ ଓ ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ୧୫୧୦ ମସିହାରେ ପ୍ରଥମେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଗଡ଼ଗଡ଼ିଆ ଘାଟଠାରେ ପହଞ୍ଚି ଥିଲେ । ସେଠାରେ ସଂକୀର୍ତ୍ତନ ଆରମ୍ଭ କରି ବାଲିରେ ଚାଲି ଚାଲି ଶ୍ରୀକ୍ଷେତ୍ରକୁ ଗମନ କରିଥିଲେ । ତେଣୁ ବାଲିଯାତ୍ରା ବୋଲି ନାମକରଣ । ତୃତୀୟରେ କଟକରେ

ମହାନଦୀରେ ପଥର ବନ୍ଧ ହେବା ପୂର୍ବରୁ ବାଲି ବନ୍ଧ ଥିଲା । ଏହି ବନ୍ଧରେ ଧବଳେଶ୍ୱରଙ୍କ ବାଲୁକାମୂର୍ତ୍ତି ବାଲୁଙ୍କେଶ୍ୱର ନିର୍ମାଣ କରି ପୂଜା କରୁଥିଲେ । ବାଲୁଙ୍କେଶ୍ୱରଙ୍କ ପୂଜା ଓ ଦର୍ଶନ ସାରି ଯାତ୍ରୀମାନେ ଏହି ବାଲିବନ୍ଧରେ ଆନନ୍ଦ ଉଲ୍ଲାସର ସହିତ କିଣାବିକା କରି ନିଜ ନିଜ ଗାଁକୁ ଫେରୁଥିଲେ । ଅତଏବ ବାଲୁଙ୍କେଶ୍ୱରରୁ ବାଲି ଯାତ୍ରା ବୋଲି କେତେକ କହନ୍ତି । ପୁନଶ୍ଚ କାର୍ତ୍ତିକ ମାସରେ ସାଧବ ପୁଅମାନେ ବିଦେଶରୁ ବହିର୍ବାଣିଜ୍ୟ କରି ଯେଉଁ ବିଭିନ୍ନ ସାମଗ୍ରୀ ସବୁ ସ୍ୱଦେଶକୁ ଆଣୁଥିଲେ, ତାହା ଏଠାରେ କିଣାବିକା ହେଉଥିଲା । କଟକ ଏକ ପ୍ରାଚୀନ ନଗରୀ ଓ ଓଡ଼ିଶାର ରାଜଧାନୀ ଥିବାରୁ ଏଠାରେ ପ୍ରବଳ ଜନସମାଗମ ହେଉଥିବ । ସର୍ବୋପରି ବିସ୍ତୀର୍ଣ୍ଣ ବାଲି ପଡ଼ିଆରେ ଏହି ଯାତ୍ରା ହେଉଥିବାରୁ ଏହାର ନାମ ବାଲିଯାତ୍ରା ରଖାଯାଇଛି । ଏହା ବ୍ୟବସାୟୀମାନଙ୍କର ବାର୍ଷିକ ବିପଣୀ ମେଳା । ଉପଯୁକ୍ତ କାରଣଗୁଡ଼ିକ ଏକକ ଭାବରେ ହେଉ ବା ସାମୂହିକ ଭାବରେ ହେଉ ସାଂପ୍ରତିକ ବାଲି ଯାତ୍ରାକୁ ସମୃଦ୍ଧ କରିବାରେ ସେମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ।

**ବାଲିଯାତ୍ରାର ଅୟମାରମ୍ଭ କାଳ :** 'ଉତ୍କଳ ଦୀପିକା' ଭଳି କେତେକ ପୁରାତନ ସମ୍ବାଦପତ୍ରରୁ ଜଣାପଡ଼େ ଯେ କଟକର ବାଲିଯାତ୍ରା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଆରମ୍ଭ ହୋଇଥିଲା । ଏପରିକି ଡ଼ ହରେକୃଷ୍ଣ ମହତାବ କଟକ ବାଲିଯାତ୍ରା ପରମ୍ପରା ପ୍ରାକ୍ ସ୍ୱାଧୀନତା କାଳର ବୋଲି କହିଥିବା ପ୍ରକାଶ ।

**ପ୍ରାଚୀନ ନୌବାଣିଜ୍ୟର ଆଧୁନିକ ସ୍ମାରକୀ :** କଳିଙ୍ଗ ସାମ୍ରାଜ୍ୟ ଲୋପ ପାଇବା ପରେ ନୌବାଣିଜ୍ୟ ଏବଂ ଭାରତର ପୂର୍ବ ଉପକୂଳ ଓ ଦକ୍ଷିଣ ପୂର୍ବ ଏସିଆର ଆଦାନପ୍ରଦାନ ବନ୍ଦ ହୋଇଗଲା । କର୍ପୂର ଉଡ଼ିଯାଇଛି କନା ପଡ଼ିରହିଛି ନ୍ୟାୟରେ ଆଜି ମଧ୍ୟ ଓଡ଼ିଆ ଜାତି ତା'ର ସେହି ଗରିମାମୟ ଐତିହ୍ୟକୁ ଭୁଲି ପାରିନାହିଁ । ସାଧବ ପୁଅର ଦୁର୍ଦ୍ଧର୍ଷ ନୌଯାତ୍ରା ଓ ସମୃଦ୍ଧିଶାଳୀ ଓଡ଼ିଶାର ଐତିହାସିକ ଚିତ୍ର ତା'ର ମନରେ ଉଙ୍କି ମାରୁଛି । ଖାଲି ନଦୀମୁହାଣ ପାରାଦୀପ ଭଳି ବନ୍ଦରମାନଙ୍କରେ ବଡ଼ ଯାକଜମକରେ ସେ ବୋଇତ ବନ୍ଦାଣ ଉତ୍ସବ ପାଳନ କରୁନାହିଁ ସମୁଦ୍ର ନଈ ନାଳ ପୋଖରୀ ଗଡ଼ିଆ ଆଦି ନିଜ ନିଜ ପହୁଞ୍ଚ ଭିତରେ ଯେକୌଣସି ଜଳାଶୟରେ ଆବାଳବୃଦ୍ଧବନିତା ପବିତ୍ର କାର୍ତ୍ତିକ ପୂର୍ଣ୍ଣିମାର ପ୍ରତ୍ୟୁଷରୁ ଉଠି କଦଳୀ ବାହୁଙ୍ଗା କାଗଜ ବା ସୋଲନିର୍ମିତ ଡଙ୍ଗାରେ ଶୁଭ ଦୀପଟିଏ ଜଳାଇ ଦେଇ ଭସାଇ ଦେଉଛି । ଜାତି ଧର୍ମ ନିର୍ବିଶେଷରେ ଉତ୍କଳର ପୁରପଲ୍ଲୀର ପ୍ରତ୍ୟେକ ଉତ୍କଳୀୟ ଅତି ଆନନ୍ଦ ଉତ୍ସାହର ସହିତ ସାଙ୍କେତିକ ଡଙ୍ଗା ଭସାଇଲା ବେଳେ ସେ ପୂର୍ବପୁରୁଷଙ୍କ ସ୍ମୃତିକୁ ରୋମନ୍ଥନ କରି ଆଗାମୀ ଜୀବନକୁ ପବିତ୍ର କରିବା ଉଦ୍ଦେଶ୍ୟରେ ସେହି ଡଙ୍ଗାରେ ପାନଗୁଆ ଥୋଇ ପାଣିରେ ଭସାଇ ଡଙ୍ଗାକୁ ମେଲାଣି ଦେଇ କହୁଛି :

ଆ କା ବୈ ପାନ ଗୁଆ ଥୋଇ
ପାନ ଗୁଆ ତୋର ମାସକ ଧର୍ମ ମୋର ॥

**ଆ କା ମା ବୈ ର ତାତ୍ପର୍ଯ୍ୟ :** ଏହି ବଚନିକାର ଗୂଢାର୍ଥ ଭିନ୍ନ ଭିନ୍ନ ପ୍ରକାରେ ବ୍ୟାଖ୍ୟା କରାଯାଇଛି । ୧) ଆଷାଢରୁ କାର୍ତ୍ତିକ ମାସ ମଧ୍ୟରେ ପ୍ରତ୍ୟାବର୍ତ୍ତନ କରିବି । ଭୟ କର ନାହିଁ । ୨)ଆଏଁଳା, କାମ୍ବୋଡ଼ିଆ, ମାଳୟ, ବାଲିଦ୍ୱୀପ ଓ ଇଳ ଦ୍ୱୀପପୁଞ୍ଜ–ଏହି ଦେଶଗୁଡ଼ିକର ପ୍ରଥମ ନାମ ଯୋଗ କଲେ ଆ–କା–ମା–ବ–ଇ(ବୈ)ସଙ୍କେତ ସୃଷ୍ଟି ହୁଏ । ଓଡ଼ିଆ ସାଧବପୁଅମାନେ ଏହି ଦକ୍ଷିଣ–ପୂର୍ବ ଏସୀୟ ଦେଶମାନଙ୍କ ସହିତ ଦ୍ୱିପାକ୍ଷିକ ଦରିଆପାରି ବ୍ୟବସାୟ କରିଥା'ନ୍ତି । ଏହି ସାଙ୍କେତିକ ଶବ୍ଦଗୁଡ଼ିକର ଉଚ୍ଚାରଣ କରିବା ଦ୍ୱାରା ଦୁଃସାହସିକ ସାମୁଦ୍ରିକ ନୌବାଣିଜ୍ୟିକ ତଥା ସାଂସ୍କୃତିକ ସମନ୍ୱୟର ସ୍ମୃତି ଜାଗରିତ ହୋଇଥାଏ ।

**ସମୁଦ୍ରର ଅଧିଷ୍ଠାତ୍ରୀ ଦେବୀ ମା' ମଙ୍ଗଳା :** ସାଧବ ପୁଅମାନେ ବିଶାଳ ସମୁଦ୍ର ବକ୍ଷରେ ଜାହାଜ ମେଲି ଗଲାବେଳେ ସମୁଦ୍ର ଦେବୀଙ୍କୁ ମା' ମଙ୍ଗଳା ବୋଲି ଡାକି ଡାକି ନୌଯାତ୍ରାର ଶୁଭ ମନାସି ଅତଳ ସମୁଦ୍ର ଭିତରକୁ ପ୍ରବେଶ କରୁଥିଲେ । ଏଣେ ଭାଦ୍ରବ ମାସରେ ଖୁଦୁରୁକୁଣୀ ଓ ଆଶ୍ୱିନ ମାସରେ ମା'ମଙ୍ଗଳାଙ୍କ ପୂଜା ଏହି ବୋଇତର ଅଧିଷ୍ଠାତ୍ରୀ ଦେବୀ ମା' ମଙ୍ଗଳାଙ୍କ ପୂଜା ସହିତ ସାମଞ୍ଜସ୍ୟ ରକ୍ଷା କରେ । ସାଧବ ପୁଅମାନେ ସାଙ୍ଗରେ ଆଣିଥିବା ଗୁଆ ଲବଙ୍ଗ ଅଳେଇଚ ଗୁଜୁରାତି ପ୍ରଭୃତି ଓଡ଼ିଶା ପ୍ରସିଦ୍ଧ ପାନରେ ଦେଇ ମା' ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ଭକ୍ତିପୂତ ନୈବେଦ୍ୟ ଅର୍ପଣ କରନ୍ତି ।

କ୍ୱା.ନଂ ସି–୨୨/୧, ନାଲକୋ, ଦାମନଯୋଡ଼ି
କୋରାପୁଟ–୭୬୩୦୦୮

# ଉତ୍କଳର ଗରିମାମୟ ନୌବାଣିଜ୍ୟ

ଡକ୍ଟର ସର୍ବେଶ୍ୱର ସେଣ

ନିରବଧି କାଳ ବଡ଼ ନିର୍ମମ, ତା' ଝୁଲିରେ ବାନ୍ଧିନିଏ ଅନେକ ବସ୍ତୁ, ଘଟଣା । ଏପିରିକି ଗୋଟେ ସ୍ୱର୍ଦ୍ଧିତ ଜାତିର ଗରିମାମୟ ଅତୀତ । ଏଥିରୁ ବାଦ୍ ପଡ଼ିନି ଉତ୍କଳର ନୌବାଣିଜ୍ୟ । କେବଳ ଉତ୍କର୍ଷ କଳା ନୁହେଁ, ଶିକ୍ଷା, ସଂସ୍କୃତି, ବୀରତ୍ୱ, ସାହସିକତା ପାଇଁ ଉତ୍କଳ ବିଶ୍ୱବିଦିତ ଥିଲା । ଠିକ୍ ସେମିତି ତା'ର ଦରିଆ ପାରି ନୌବାଣିଜ୍ୟ । ଓଡ଼ିଶାର ସାଧବ ପୁଅଙ୍କ ଧୈର୍ଯ୍ୟ, ଦୁଃସାହସର ପଟ୍ଟାନ୍ତର ନଥିଲା । ସାତ ସମୁଦ୍ର ତେର ନଈ ପାର ହୋଇ ଚଳାଇ ଥିଲେ ବାଣିଜ୍ୟ ବ୍ୟବସାୟ । ଜାଭା, ବୋର୍ଣ୍ଣିଓ, ବାଲି, ସିଂହଳ, ସିଂହପୁର, ରୋମ୍ ତଥା ଅନ୍ୟାନ୍ୟ ୟୁରୋପୀୟ ରାଜ୍ୟରେ ଏମାନେ ବାଣିଜ୍ୟ କାରବାର ଚଳାଇ ଥିଲେ । ବୋହି ଆଣିଥିଲେ ବିପୁଳ ଧନ ସମ୍ପତ୍ତି । କେବଳ ସେତିକି ନୁହେଁ, ଅନେକତ୍ର ଶାସନ ଗାଦିରେ ବସିଥିଲେ । ଓଡ଼ିଶାର ସଂସ୍କୃତି ସେଠାର ବିକାଶ ଲାଭ କରିଥିଲା । ସେଦିନ ନଥିଲା ଯନ୍ତ୍ରଚାଳିତ ଜାହାଜ, ଆଧୁନିକ ଜ୍ଞାନକୌଶଳର ବି ଢେର ଅଭାବ ଥିଲା । ଏହା ସତ୍ତ୍ୱେ , ଓଡ଼ିଶାର ସାଧବପୁଅ, ଶହଶହ ବଢ଼େଇ, କମାର, ଦର୍ଜି ତିଆରି କରୁଥିଲେ ଅର୍ଣ୍ଣବ ପୋତ (ବୋଇତ)ମାନ । ଏଗୁଡ଼ିକ ପାଲଟଣା ବୋଇତ ଥିଲା । ଅଝାଳ ଉଡ଼େଇ ନୀଳ ଦରିଆର ଢେଉ କାଟି ଅନାୟାସରେ ଯାଇପାରୁଥିଲା ଏଇ ଅର୍ଣ୍ଣବ ପୋତଗୁଡ଼ିକ । କାର୍ତ୍ତିକ ପୁନେଇଁରୁ ସାଧବ ପୁଅ ଆରମ୍ଭ କରୁଥିଲା ନୌଯାତ୍ରା । ଆଜି ନାହାନ୍ତି ସେଇ ସାଧବମାନେ, ନାହିଁ ଅଝାଳଟଣା ବୋଇତ । ନାଚୁଛି ନୀଳ ଦରିଆ, ହସୁଛି ପୁନେଇଁ ଚାନ୍ଦ, କିନ୍ତୁ ଶୁଭୁନି ସାଧବାଣୀଙ୍କର ହୁଳହୁଳି ଓ ଶଙ୍ଖଧ୍ୱନି । ବୋଇତ ମଙ୍ଗରେ ମା' ମଙ୍ଗଳାଙ୍କ ବନ୍ଦାଣ ନାହିଁ । ଆସୁଛି ଫିସନ କାର୍ତ୍ତିକ ପୁନେଇଁ, ନଦୀ, ନାଳ ସମୁଦ୍ରରେ ଭାସେ ଶହଶହ କାଗଜଡଙ୍ଗା । ଓଡ଼ିଆଣୀ 'ଆ–କା–ମା–ବୈ' କହି ଭସାଇ ଦିଏ କାଗଜ ନାଆ । ପୁନଃଶ୍ଚ ଅତୀତ ମୁହାଁ ହୁଏ ଆମ ନୌବାଣିଜ୍ୟ ସ୍ମୃତି ଟିକକ । କର୍ପୂର ଗଲାଣି, କନା ବି, ରହିଛି, ଯାହା ଗରିମାମୟ ନୌବାଣିଜ୍ୟର ସ୍ମୃତିରୁ ଖିଏ !

ଉତ୍କଳର ଅତୀତ ନୌବାଣିଜ୍ୟକୁ ନେଇ ଠୋସ୍ ପ୍ରମାଣ ନାହିଁ । ଇତିହାସ ବି ନିରବ । ଯାହା କିଛି ତଥ୍ୟ ତାହା ଆନୁମାନିକ । ପରିବ୍ରାଜକଙ୍କ ବିବରଣୀ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ବିଭିନ୍ନ ସାହିତ୍ୟକୃତି – ଏସବୁରେ ନୌବାଣିଜ୍ୟ କଥା ବର୍ଣ୍ଣିତ । ଯେଉଁଠି ଇତିହାସ ଚୁପ୍, ସେଠାରେ ଉପଯୁକ୍ତ ତଥ୍ୟକୁ ଉତ୍କଳ ନୌବାଣିଜ୍ୟର ଭିତ୍ତି ଧରାଯାଏ । ମାଦଳା ପାଞ୍ଜି ଏକ ପ୍ରାମାଣିକ ପ୍ରାଚୀନ ଗ୍ରନ୍ଥ । ଏଥିରେ ନୌବାଣିଜ୍ୟ ସମ୍ପର୍କିତ ତଥ୍ୟ ନିହିତ । ଭୋଜରାଜା, ଜାହାଜ ପ୍ରସ୍ତୁତ କୌଶଳ ତାଙ୍କୁ ଜଣାଥିଲା । ଏଥି କଥାକୁ ସେ 'ଯୁକ୍ତି କଳ୍ପତରୁ' ଗ୍ରନ୍ଥରେ ପ୍ରକାଶ କରାଇଛନ୍ତି । ଏହାର ଭାଷା ସଂସ୍କୃତ । ଗ୍ରନ୍ଥଟିରେ ଜାହାଜ ନିର୍ମାଣ କୌଶଳ ବିଶଦ୍‌ଭାବେ ବର୍ଣ୍ଣିତ । ଆୟୁର୍ବେଦ ଶାସ୍ତ୍ରରେ ୪ ପ୍ରକାର ବୃକ୍ଷ ସମ୍ପର୍କିତ ସୂଚନା ରହିଛି । ଏଗୁଡ଼ିକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର । ଏଥିରେ ହାଲ୍‌କା, କୋମଳ, ଶକ୍ତ, ଭାରି କାଠର ବିବରଣୀ ପ୍ରଦତ୍ତ । 'ଯୁକ୍ତିକଳା' ପୁସ୍ତକରୁ ଅଝାଳଟଣା ଜାହାଜର ନାମ, ଗଠନ ପ୍ରଣାଳୀ, କେଉଁ ଜାହାଜ କେତେ ଶୁଭ, ତା'ର ନିଖୁଣ ନିଦର୍ଶନ ମିଳେ । ଭୀମ, ଚପଳ, ପାଟଳ, ଦୀର୍ଘା, ଭୟା, ପତ୍ରପୁତା, ଗର୍ଭରା, ମନ୍ତରା ଏମିତି ଜାହାଜଗୁଡ଼ିକର ନାମ । ଦୀର୍ଘା, ଉନ୍ନତା – ଏଇ ଦୁଇ ଶ୍ରେଣୀର ଜାହାଜ ଶୁଭ ଓ ଜଳଯାତ୍ରା ପାଇଁ ଉପଯୋଗୀ ମଧ୍ୟ । ଲମ୍ବ ୪୨ ହାତ, ପ୍ରସାର ୫୧/୪

ହାତ, ଉଚ୍ଚ ୪୧/୫ ହାତ – ଏହା ଦୀର୍ଘାର ଜାହାଜର ମାପ । ସମୁଦ୍ରର ନୀଳ ଲହରୀ କାଟି ଏଇ ଅର୍ଣ୍ଣବ ପୋତଟି ସ୍ୱଚ୍ଛନ୍ଦରେ ଚାଲେ । ସେସମୟରେ ଏହି ଜାହାଜଗୁଡ଼ିକ ସଜାଇବାର ବିଧି ଥିଲା । ସୁନା, ରୂପା, ତମ୍ବା – ଏଇ ତ୍ରିଧାତୁ ମିଶ୍ରିତ ପାତିଆ ଜାହାଜରେ ଖଞ୍ଜା ଯାଉଥିଲା । ଅବର୍ଣ୍ଣ ପୋତଗୁଡ଼ିକ ବିଶେଷ କରି ଚାରି ରଙ୍ଗର । ଯେଉଁ ଜାହାଜ ଚାରିମାସ୍ତୁଲ ବିଶିଷ୍ଟ ତା'ର ବର୍ଣ୍ଣ ଶ୍ୱେତ । ତିନିମାସ୍ତୁଲ, ଦୁଇମାସ୍ତୁଲ, ଏକ ମାସ୍ତୁଲ ଜାହାଜର ରଙ୍ଗ ଯଥାକ୍ରମେ ରକ୍ତ, ପୀତ, ନୀଳବର୍ଣ୍ଣ ରୂପଯୁକ୍ତ । ଆଧୁନିକ ଜାହାଜରେ ଶୀତାତାପ ନିୟନ୍ତ୍ରିତ କୋଠରୀମାନ ଦେଖାଯାଏ । ବୋଇତ ଗୁଡ଼ିକରେ ବି ଛୋଟ ଛୋଟ କୋଠରି ଥିଲା । ଏଗୁଡ଼ିକୁ ମନ୍ଦିରା କୁହାଯାଏ । ମନ୍ଦିରା ନାମକୁ ସାର୍ଥକ କରୁଥିଲା ତିନି ପ୍ରକାର ଜାହାଜ, (୧) ସର୍ବ ମନ୍ଦିରା, (୨) ମଧ୍ୟ ମନ୍ଦିରା, (୩) ଅଗ୍ର ମନ୍ଦିରା । ସର୍ବ ମନ୍ଦିରା ଜାହାଜରେ ରାଜକୋଷ ସହିତ ଅଶ୍ୱ ଏବଂ ସ୍ତ୍ରୀ ଲୋକଙ୍କ ଯାତାୟାତର ସୁବିଧା ଥିଲା । ମଧ୍ୟ ମନ୍ଦିରା ଜାହାଜ ରାଜା ରାଜୁଡ଼ାଙ୍କ ବିଳାସ ଭ୍ରମଣ ପାଇଁ ଉଦ୍ଦିଷ୍ଟ ଥିଲା । ଏହା ବର୍ଷାକାଳରେ ବ୍ୟବହୃତ ହେଉଥିଲା । ଅଗ୍ର ମନ୍ଦିରା ଜାହାଜ ଗ୍ରୀଷ୍ମ ଋତୁରେ ଚାଲେ । ଶୀତ ସମୟରେ ବି ଏହାର ବହୁତ ବ୍ୟବହାର ହେଉଥିବା କେତେକ ପୁସ୍ତକରେ ଉଲ୍ଲେଖ ରହିଛି ।

ରାମାୟଣ, ମହାଭାରତ – ଏ ଦୁଇଟି ମହାକାବ୍ୟ । ଏଥିରେ ସମୁଦ୍ରଯାତ୍ରା, ଅର୍ଣ୍ଣବ ପୋତର ବର୍ଣ୍ଣନା ରହିଛି । ରାଜର୍ଷି ତୂଗ୍ର, ସାଗର ଆରପାରିରେ ଥିବା ଶତ୍ରୁ ଦମନ କରିବାର ସାହସ କଲେ । ଜାହାଜରେ ନିଜେ ପୁତ୍ର ଭୂର୍ଯ୍ୟଙ୍କୁ ସେଠାକୁ ପଠାଇଲେ । ମାତ୍ର ଜାହାଜଟି ବୁଡ଼ିଗଲା । ସେମାନଙ୍କର ସଲିଳ ସମାଧି ହେଲା । ଦୈବୀକୃପାରୁ ସେମାନେ ବଞ୍ଚିଗଲେ – ସ୍ୱୟଂ ଅଶ୍ୱିନୀ କୁମାର ଦ୍ୱୟ ସେମାନଙ୍କୁ ଉଦ୍ଧାର କରିଥିଲେ । କୌରବମାନଙ୍କ ଅତ୍ୟାଚାର ଦୁର୍ବିସହ ହେଲା । ସ୍ୱୟଂ ବିଦୁର ପଣ୍ଡୁପୁତ୍ରଙ୍କୁ ଜାହାଜରେ ପଳାୟନରେ ସୁଯୋଗ ସୃଷ୍ଟି କରିଥିଲେ । ରାମାୟଣରେ ମଧ୍ୟ ଜାହାଜ କଥା ଉଲ୍ଲେଖ ରହିଛି । ଶତଶତ କୈବର୍ତ୍ତ ୫୦୦ ଶହ ଜାହାଜରେ ଯାଇ ଶତ୍ରୁ ପଥରୋଧ କରିଥିଲେ । ପ୍ରାଚୀନ ଉତ୍କଳ ସାହିତ୍ୟରୁ ନୌବାଣିଜ୍ୟର ଭୂରିଭୂରି ପ୍ରମାଣ ରହିଛି । ସେସମୟରେ କର୍ଣ୍ଣାଟକ ଦେଶ ଉତ୍କଳର ଏକ ଅଂଶବିଶେଷ ଥିଲା । ଉତ୍କଳର ରାଜା କର୍ଣ୍ଣାଟେଶ୍ୱର, ତାଙ୍କ ରାଜ୍ୟର ବହୁ ସଂଖ୍ୟକ ବୋଇତିଆଳ ବିଦେଶରେ ବାଣିଜ୍ୟ କାରବାର କରୁଥିଲେ । ସିଂହଳ ଦ୍ୱୀପକୁ ମଧ୍ୟ ଏମାନଙ୍କର ଗତାଗତ ଥିଲା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟ । ଏଥିରେ ବୋଇତିଆଳ, ସିଂହଳ ଦ୍ୱୀପ ଆଦି ନାନାକଥା ଚିତ୍ରିତ – ଏହିକାଳେ ଜଣାଇଲା ବେତ୍ରକର / ଆସି ବୋଇତିଆଳେକ ଅଛି ଦ୍ୱାର / ବୋଲେ ସିଂହଳ ଦ୍ୱୀପୁଁ ଆସିଅଛି ମୁହିଁ / ଇଚ୍ଛା ମୋର ଯୁବରାଜ ଭେଟିବା ପାଇଁ । ଅତୀତ ଉତ୍କଳର ବହିର୍ବାଣିଜ୍ୟ କବିସମ୍ରାଟଙ୍କ ପର୍ଯ୍ୟନ୍ତ ଚାଲୁଥିବାର ପ୍ରମାଣ ଏଥିରୁ ମିଳେ । କଥାଟି ଏତିକିରେ ସୀମିତ ନ ଥିଲା । ଉତ୍କଳୀୟ ବାଣିଜ୍ୟ ପ୍ରସଙ୍ଗ ପଲ୍ଲୀ ସାହିତ୍ୟ, ରାଜବାଲ୍ୟା, ଜନକ, ଜାତକ, ବାଳହଂସ ଜାତକ, ସମୁଦ୍ର ବାଣିଜ୍ୟ ଜାତକ, ଶଙ୍ଖ ଜାତକ, ଦଭଧାତୁ ବଂଶ ପ୍ରଭୃତି ବୌଦ୍ଧ ଗ୍ରନ୍ଥମାନଙ୍କରେ ଜାହାଜ ବିଷୟକ ତଥ୍ୟ ମିଳିଥାଏ ।

ଉତ୍କଳର ନୌବାଣିଜ୍ୟର ଇତିହାସ ଖ୍ରୀ.ପୂ. ଦେଢ଼ ହଜାର ବର୍ଷରୁ ଆରମ୍ଭ । ଏଇଟି ଏକ ଆନୁମାନିକ ଆକଳନ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ପେରିକ୍ଲିସ୍ ନାମକ ଗ୍ରନ୍ଥଟିଏ ରଚିତ । ଏଥିରେ ଓଡ଼ିଶାରେ ମିଳୁଥିବା ପ୍ରଚୁର ପରିମାଣର ପଣ୍ୟଦ୍ରବ୍ୟ କଥା ସ୍ଥାନିତ । ଓଡ଼ିଶାର ହାତୀଦାନ୍ତ, ସୂକ୍ଷ୍ମବସ୍ତ୍ର ତମଲୁକ ବନ୍ଦରରୁ ବିଦେଶକୁ ରପ୍ତାନି ହେଉଥିଲା । ଓଡ଼ିଶାର ଝିନ ବସନ ବିଦେଶିନୀଙ୍କର ଢେର ପସନ୍ଦ ଥିଲା । ଏବେବି ରଣପୁର, ତିଗିରିଆ ସୂକ୍ଷ୍ମବସ୍ତ୍ର ପାଇଁ ପ୍ରସିଦ୍ଧ । ତତ୍କାଳୀନ ଉତ୍କଳରେ ସୂକ୍ଷ୍ମବସ୍ତ୍ର ବାଉଁଶ ନଳୀରେ ରଖାଯାଇ ପାରୁଥିଲା । ଏ କଥାଟି ଲେଖିଛନ୍ତି ଉପେନ୍ଦ୍ର ଭଞ୍ଜ । ତାଙ୍କ ବୈଦେହୀସ ବିଳାସରେ ବର୍ଣ୍ଣିତ ଅଛି – ବେଢ଼ରେ ପାଦରେ ଲେଖିଲେ ଲାକ୍ଷା / ବାରିହେଲା ବେନି ରଙ୍ଗ କି ଦୀକ୍ଷା / ବିକଶିତ କୋକନଦ ମଧରେ / ବେଢ଼ି ଭ୍ରମେ କି ସରସ୍ୱତୀ ନୀର ସେ / ବଂଶ ନଳୀରେ ଥିବା ଯେ । ବାଛି ପିନ୍ଧି ଦୁର୍ବାଦଳ – ନୀଳ ଚେଳ କେଳି ଇଚ୍ଛା ଶ୍ରୀରାଗର ଯେ । କବି ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବ ସିନ୍ଧୁ' । ଏଥିରେ କବିଙ୍କ ବୋଇତ ନିର୍ମାଣ କଳାର ସୂଚନା ରହିଛି । – ସେ ଲୁହା କଟାଇ କରତ ପଟା / ନାବ ଖଞ୍ଜିବାକୁ ଗଢ଼ାଇ କଣ୍ଟା / ଦୁଇ ମୁଣ୍ଡ କଂଟା ଭିତରେ ପଶେ / ଯେସନେ ନାରାଚ ଦେହରେ ବସେ / ଏତେ ଶତ୍ରୁ ପଣ କର ଦୁର୍ଜନ / କାଷ୍ଠମନେ ଭିତରେ ଥୋଇ / ନାନା ଶାସ୍ତ୍ରମାନ ଭିତରେ ଥୋଇ / ଅକୂଳ ସମୁଦ୍ରେ ମେଲିବ ନେଇ ଇତ୍ୟାଦି । ଏହା ଜାହାଜ ନିର୍ମାଣ

ପ୍ରଣାଳୀର କାବ୍ୟିକ ପରିପ୍ରକାଶ। ଅତୀତ ଓଡ଼ିଶାର ନୌବାଣିଜ୍ୟକୁ ନେଇ ଦୁଇଟି ଲୋକପ୍ରିୟ କଥନିକା ବହୁଳ ଭାବରେ ପ୍ରଚଳିତ। ଗୋଟିଏ ଖୁଲଣାସୁନ୍ଦରୀ ଉପାଖ୍ୟାନ ଏବଂ ଅନ୍ୟଟି ତଅପୋଇ ଓଷାକଥା। ଏଥିରେ ଉତ୍କଳୀୟ ନୌବାଣିଜ୍ୟ ଓ ସାଧବମାନଙ୍କର ସମୁଦ୍ର ଯାତ୍ରା ପ୍ରସଙ୍ଗ ବର୍ଣ୍ଣିତ। ମା' ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ଏଇ ଦୁଇ ଓଷାକଥା ଲିଖିତ। ଡଃ ମାୟାଧର ମାନସିଂହ, ତାଙ୍କର ଦୀର୍ଘ ଗାଥା କବିତା ସାଧବ ଝିଅ । ଏଥିରେ ସାଧବ ଝିଅର ପ୍ରେମକାହାଣୀ ମୁଖ୍ୟ ବିଷୟ। କବିଙ୍କ ସ୍ୱଦେଶ ପ୍ରୀତି ଅତୀବ ଉଚ୍ଚକୋଟୀର। ତାଙ୍କର ଏଇ କବିତାରେ ଅତୀତ ଉତ୍କଳର ଗତ ଗୌରବ, ହୃତଗୌରବ ପ୍ରସଙ୍ଗ ଖୁବ୍ ମଞ୍ଜୁଳ। ଏମିତି ଓଡ଼ିଆ ସାହିତ୍ୟରେ ଅତୀତ ଗରିମାମୟ ନୌବାଣିଜ୍ୟର ରାଶିରାଶି ବର୍ଣ୍ଣନା ପରିଲକ୍ଷିତ।

କଥା ସମ୍ରାଟ ଫକୀରମୋହନ ସେନାପତି ଊନବିଂଶ ଶତାବ୍ଦୀର ଓଡ଼ିଶା ନୌବାଣିଜ୍ୟ ସମ୍ବନ୍ଧରେ ଉପାଦେୟ ତଥ୍ୟମାନ ପ୍ରଦାନ କରିଛନ୍ତି। ତାଙ୍କର 'ଆତ୍ମଚରିତ', କାଳିକା ପ୍ରସାଦ ଗୋରାପ, କାଳୀ ପ୍ରସାଦ ଗୋରାପ, ବାଲେଶ୍ୱରୀ ପଙ୍ଗାଲୁଣ ଆଦି ଗପଗୁଡ଼ିକରେ ବର୍ଣ୍ଣାଢ଼୍ୟ ନୌବାଣିଜ୍ୟ ଚିତ୍ର ଅତି ସ୍ପଷ୍ଟ। ସ୍ରଷ୍ଟାଙ୍କର 'ବାଲେଶ୍ୱରୀ ପଙ୍ଗାଲୁଣ' ସତ୍ୟ ଘଟଣା ଉପରେ ଆଧାରିତ। ସ୍ୱୟଂ ଫକୀର ମୋହନ ମଧ୍ୟ ସରକାରଙ୍କ ତରଫ ଲବଣ ମାହାଲରେ ସ୍ୱଳ୍ପକାଳ ସିରସ୍ତା କର୍ମଚାରୀ ଥିଲେ। ଲବଣ ପୋକ୍ତାନ ବିଷୟରେ ତାଙ୍କର ଅନୁଭୂତି ଗପଟିରେ ପ୍ରକଟିତ।

ଆବହମାନ କାଳରୁ ବାଲେଶ୍ୱର ତଥା ରାଜ୍ୟର ବିଭିନ୍ନ ଜିଲ୍ଲାରେ ବାଣିଜ୍ୟ ବ୍ୟବସାୟ ଚାଲୁଥିଲା। ଇଷ୍ଟ ଇଣ୍ଡିଆ କମ୍ପାନି ଓଡ଼ିଶା ଦଖଲ କଲେ ୧୮୦୩ ଖ୍ରୀ.ଅ.ରେ। ଏହା ପୂର୍ବରୁ ସେମାନେ ଧାମରା ବାଟ ଦେଇ ଓଡ଼ିଶା ସହ ବାଣିଜ୍ୟ ସଂପର୍କ ରଖିଥିଲେ । ସେହିପରି ପର୍ତ୍ତୁଗୀଜ, ଡଚ୍, ଓଲନ୍ଦାଜ, ଫରାସୀ ବଣିକମାନେ ମଧ୍ୟ ଓଡ଼ିଶା ପ୍ରତି ଆକୃଷ୍ଟ ଥିଲେ ଓ ବାଣିଜ୍ୟ କାରବାର ଚାଲୁ ରଖିଥିଲେ। ବାଲେଶ୍ୱରୀ ପଙ୍ଗା ଲୁଣ ଉତ୍ପାଦନରେ ବାଲେଶ୍ୱର ଜିଲ୍ଲାବାସୀ ନିମଜ୍ଜିତ ରହୁଥିଲେ। ୧୮୬୧ ମସିହାଠାରୁ ଲବଣ ପୋକ୍ତାନ ବନ୍ଦ ହେଇଗଲା। ଫଳରେ ବାଲେଶ୍ୱର ଅଧିବାସୀଙ୍କ ଦୁର୍ଦ୍ଦଶା ବଢ଼ିଲା। ଫକୀରମୋହନ ସେ କଥାକୁ ଲେଖିଲେ – ଜିଲ୍ଲାର ଏକ ତୃତୀୟାଂଶ ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଲବଣ ବ୍ୟବସାୟରେ ନିଯୁକ୍ତ ଥିଲେ। ବାଲେଶ୍ୱର ଉପକଣ୍ଠ ବୁଢ଼ାବଳଙ୍ଗ ନଦୀ ଜାହାଜ ଓ ନଦୀକୂଳ ଜନତାରେ ପରିପୂର୍ଣ୍ଣ ଥିଲା। ବର୍ତ୍ତମାନ ଶ୍ମଶାନ କ୍ଷେତ୍ରବତ୍ ପଡ଼ି ରହିଛି। ବାଲେଶ୍ୱରୀ ଜାହାଜର ଚିହ୍ନ ମାତ୍ର ନାହିଁ। କ୍ଷୀରାବଧିତନୟାଲକ୍ଷ୍ମୀ। ଲକ୍ଷ୍ମୀଙ୍କର ପିତୃଭବନ ସମୁଦ୍ର। ଲକ୍ଷ୍ମୀ ଚିରଦିନ ବାଲେଶ୍ୱର ଜିଲ୍ଲାରେ ବିରାଜିତା ଥିଲେ। ବଙ୍ଗଦେଶକୁ ପ୍ରବେଶ କରିବାର ତିନିବର୍ଷ ପୂର୍ବର କଥା, ସେଠାକୁ ଯିବା ପୂର୍ବରୁ ଓଲନ୍ଦାଜ, ଫରାସୀ, ଦିନେମାର, ଇଂରାଜୀ ବଣିକମାନେ ବାଲେଶ୍ୱରରେ ଦୋକାନ ମେଲିଥିଲେ। ନୌବାଣିଜ୍ୟର ପ୍ରସିଦ୍ଧି ଯୋଗୁଁ ବାଲେଶ୍ୱର 'ବନ୍ଦର ବାଲେଶ୍ୱର' ନାମରେ ପରିଚିତ ହେଇଗଲା । ବାଲେଶ୍ୱର ପରି କଟକ ଜିଲ୍ଲା ମଧ୍ୟ ଅତୀତ ନୌବାଣିଜ୍ୟର ମୂକସାକ୍ଷୀ। ଏହି ଜିଲ୍ଲାର ହରିଶପୁର ଗୋଟେ ପ୍ରଧାନ ବାଣିଜ୍ୟ ପେଣ୍ଠ। ଏଠାରେ ବହୁ ଧନୀ ବଣିକ ଥିଲେ। ପଣ୍ୟଦ୍ରବ୍ୟର ପ୍ରାଚୁର୍ଯ୍ୟ ରପ୍ତାନି ପଥ ସୁଗମ କରିଥିଲା। ଓଡ଼ିଶା ଆଗମନ ପରେ ଇଂରେଜମାନେ ଏଠାରେ ବାଣିଜ୍ୟ କୋଠି ବସାଇଲେ। ଏ ଅଞ୍ଚଳରେ ପ୍ରାୟ ୩୦୦୦ ତନ୍ତୀ ନାନାଦି ସୂକ୍ଷ୍ମବସ୍ତ୍ର ତିଆରି କରୁଥିଲେ। ପୁରୀ ଜିଲ୍ଲାର ହରିଶପୁର। ଏଇଟି ଥିଲା ପ୍ରାଚୀନ ବନ୍ଦର। ୧୬୩୩ ମସିହା, ଜୁଲାଇ ୨୨ ତାରିଖ। ଏହି ଦିନ ଇଂରେଜ ବଣିକଙ୍କ ଜାହାଜ 'ସ୍ୱାମ୍' ଏହି ବନ୍ଦର ମଧ୍ୟକୁ ପ୍ରବେଶ କରିଥିଲା। ପର୍ତ୍ତୁଗୀଜ ବଣିକମାନେ ଏଠାରୁ ଲୁଗା କିଣୁଥିଲେ। ବିଦେଶରେ ବିକ୍ରି କରୁଥିଲେ। ପୁରୀ ଜିଲ୍ଲାର କୁଶଭଦ୍ରା ନଦୀ। ଏଠାକାର ତୁଠର ନାଁ 'ବୋଇତଭଙ୍ଗା ତୁଠ'। ଏଠାରେ ଦିନେ ବୋଇତଟିଏ ଭାଙ୍ଗିଗଲା। ସେଇ ଅନୁଯାୟୀ ତୁଠର ଏପରି ନାଁ। ଏହି ସ୍ଥାନରୁ ପୁରାତନ ଜାହାଜମାନ ଯାତାୟାତ କରୁଥିଲା। ଏଇଟି କିମ୍ବଦନ୍ତୀର କଥା। ଅନୁରୂପ ଭାବେ ଏହି ଜିଲ୍ଲାର ଦେଉଳୀ ମଠ ନିକଟରେ ଏକ ବିରାଟ ବାଲିସ୍ତୂପ ଅଛି। ଏହାର ନାଁ 'ବୋଇତକୁଦ'। ଅତୀତରେ ବୋଇତଗୁଡ଼ିକ ଏହି ସ୍ଥାନରେ ଆଶ୍ରୟ ନେଉଥିଲା। ଏଇଟି ଆନୁମାନିକ ତଥ୍ୟ।

ନଦୀନାଳ ଘେରା ଓଡ଼ିଶା, ଓଡ଼ିଶା ମଧ୍ୟ ବଙ୍ଗୋପସାଗର ତଟରେ ଅବସ୍ଥିତ। ଅତୀତରେ ଏହି ସାଗର ନାଁ ଥିଲା 'କଳିଙ୍ଗ ସାଗର'। ଓଡ଼ିଶା ଉପକୂଳରେ ଅନେକ ବନ୍ଦର ଥିଲା। ତମଲୁକଠାରୁ ଚିଲିକା ହ୍ରଦ ଯାଏଁ ଏହାର ବ୍ୟାପ୍ତି। ସୁବର୍ଣ୍ଣରେଖା, ନରେଗା, ସାରୋଗା, ଛଳୁୟ, ବାଲେଶ୍ୱର, ଲୋଇଚନପୁର, ଚୁଡ଼ାମନ, ଧାମରା ଆଦି ବନ୍ଦରଗୁଡ଼ିକ ବେଶ୍

ପ୍ରସିଦ୍ଧି ଲାଭ କରିଥିଲା । ଆଉ ଗୋଟେ ଚମତ୍କାର ତଥ୍ୟ ଐତିହାସିକ କୃପାସିନ୍ଧୁ ମିଶ୍ର ଦେଇଛନ୍ତି । ଚିଲିକା ନିକଟରେ ଅଛି 'ଦ୍ୱୀପ ଆଡ଼ିଆ' ନାମକ ପାହାଡ଼ । ଏହା ଉପରେ ଏକ ପ୍ରକାଣ୍ଡ ଦୀପ ଖୋଦିତ ହୋଇଛି । ଏହି ଦୀପ ରାତିରେ ଜଳାଇ ଦିଆଯାଏ । ରାତିରେ ଯିବାଆସିବା କରୁଥିବା ଜାହାଜମାନ ଏହାକୁ ସଙ୍କେତ ରୂପେ ବ୍ୟବହାର କରୁଥିଲେ । ଆଜିକାଲିକା ପରି ସମୁଦ୍ରକୂଳରେ ବତୀଘରମାନ ନଥିଲା । ଜାହାଜଗୁଡ଼ିକ ବିପଦର ସୂଚନା ପାଉଥିଲେ । ପୁରାତନ କାଳରେ ଏସବୁ ବ୍ୟବସ୍ଥା ନଥିଲା । ଉଚ୍ଚ ପାହାଡ଼ ଉପରେ ଦୀପ, ମଶାଲ ଜାଳି ସଙ୍କେତ ଦିଆଯାଉଥିଲା । ସମୁଦ୍ର କୂଳିଆ ଗାଁମାନଙ୍କରେ ଦୀପାବଳି ଏକ ସ୍ୱତନ୍ତ୍ର ଶୈଳୀରେ ପାଳିତ ହୁଏ । ପଇଁଆଖାଡ଼ି ଜାଳି ବଡ଼ବଡ଼ିଆଙ୍କୁ ମଶାଲ ଦେଖାଯାଏ । ଏଇ କାର୍ଯ୍ୟଟି ସମୁଦ୍ରକୂଳରେ ହୋଇଥାଏ । ପଇଁଆଖାଡ଼ି ଆଲୁଅ ଦେଖି ଯାଏ ଅନେକ ଦୂରକୁ । ସମୟେ ସମୟେ ଫେରନ୍ତା ନାବିକମାନେ ଏହାକୁ ଦେଖି ଦିଗନିର୍ଣ୍ଣୟ କରିଥାଆନ୍ତି ।

ଅତୀତ ଉତ୍କଳର ନୌବାଣିଜ୍ୟ ଏକ ବିଭବଶାଳିନୀ କୀର୍ତ୍ତି । ସାହସୀ କଳିଙ୍ଗବାସୀଙ୍କର ନିଷ୍ଠା, ପରାକାଷ୍ଠା, ଦୁଃସାହସର ଏହା ଅନୁପମ ନିଦର୍ଶନ । ଏତଦ୍‌ଭିନ୍ନ ଟାଲମି ଖ୍ରୀ.ଅ. ପ୍ରଥମ ଶତାବ୍ଦୀରେ ଗ୍ରନ୍ଥଟିଏ ଲେଖିଥିଲେ । ଏହାର ନାଁ ଭୂଚିତ୍ର । ଏଥିରେ ଓଡ଼ିଶାର କେତେକ ମୁଖ୍ୟ ବନ୍ଦର ନାମ ଲିପିବଦ୍ଧ । ସେଗୁଡ଼ିକ ମଧ୍ୟରୁ ନିନିଗେନ–ପୁରୀ, କକର୍ଦ୍ଦମ–କଟକ, କୋଣାର୍କର କୋଣାର୍କ, କୋମ୍ଭେ – ବାଲେଶ୍ୱର, ପଲୁରୁ ଜଳେଶ୍ୱର, ମନଦ – ମହାନଦୀ, ତନ୍ଦିସ୍ – ବ୍ରାହ୍ମଣୀ, ଦୋସରମ୍ – ବୈତରଣୀ, ଅଦିମସ – ସୁବର୍ଣ୍ଣରେଖା – ଏସବୁ ନଗର ଓ ନଦୀମାନଙ୍କରେ ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀର ବହୁ ପୂର୍ବରୁ ବାଣିଜ୍ୟ ଉପଯୋଗୀ ଥିଲା । ପୁରୀରେ ଜଗନ୍ନାଥ ମନ୍ଦିରରେ ବୋଇତ ଚିତ୍ରଟି ପରିଦୃଷ୍ଟ । ଭୁବନେଶ୍ୱରର ଏକ ପ୍ରାଚୀନ ମନ୍ଦିର ବୋଇତାଳ । ଏହାର ଛାତ ବୋଇତାକାର । ପୁରୀ ମାର୍କଣ୍ଡ ଦେଉଳ ନିକଟସ୍ଥ ଆଉ ଏକ ଦେଉଳର ଅନୁରୂପ ଛାତ ରହିଛି । ଅତୀତ ଉତ୍କଳର ନୌବାଣିଜ୍ୟ ବିଲୁପ୍ତ ହେଲା, ଏହାର ସ୍ମୃତି ଏବେବି ଓଡ଼ିଶାବାସୀଙ୍କୁ ଆଚ୍ଛନ୍ନ କରିଛି । ତା'ର ନମୁନା କଟକ ବାଲିଯାତ୍ରା ପଡ଼ିଆର ପ୍ରବେଶପଥ ଅବା ପାରାଦ୍ୱୀପ ବାଲିଯାତ୍ରା ପଡ଼ିଆର ପ୍ରବେଶ ଫାଟକରେ ଦେଖିବାକୁ ମିଳେ । ଫାଟକଗୁଡ଼ିକ ଉପରେ ବୋଇତ ଚିତ୍ରମାନ ଶୋଭା ପାଉଛି ।

ବୋଇତ ବ୍ୟବସାୟ ଉତ୍କଳରେ ଖୁବ୍ ପ୍ରାଚୀନ । ଭାରତବର୍ଷର ତିନି ଦିଗରେ ସମୁଦ୍ର । ଉତ୍କଳ ମଧ୍ୟ ସାଗର କୂଳରେ । ଭାରତରେ ପୋତ ନିର୍ମାଣ ହେଉଥିଲା । ବିଭିନ୍ନ ରାଜ୍ୟର ବଣିକମାନେ ନୌବାଣିଜ୍ୟରେ ଲିପ୍ତଥିବା ଇତିହାସସିଦ୍ଧ । ଉତ୍କଳ ମଧ୍ୟ ଏ ଦିଗରେ ପଛରେ ପଡ଼ିନଥିଲା । ସମୁଦ୍ରକୂଳ ନିବାସୀ, ପୋତ ନିର୍ମାଣ କରିବା ସ୍ୱାଭାବିକ । ନଦୀ, ନାଳ ପାଖିଆ ଲୋକ ପହଁରା ଜାଣନ୍ତି । ନଈ ନାଳରେ ମଧ୍ୟ ନୌକା ଚାଲୁଥିଲା । ସମୁଦ୍ରରେ ଯାତ୍ରା କରିବା ଉପାୟ ସେମାନେ ଖୋଜିଥିବେ । ନାନା ପରୀକ୍ଷାନିରୀକ୍ଷାର ସୁଫଳ ହିଁ ଅର୍ଣ୍ଣବ ପୋତ । ସେତେବେଳେ ନଥିଲା ଦିଗନିର୍ଣ୍ଣୟ ଯନ୍ତ୍ର । ଉତ୍ତର ଆକାଶର ଧ୍ରୁବତାରା ଦେଖି ସେମାନେ ଦିଗନିର୍ଣ୍ଣୟ କରୁଥିଲେ । ଅନୁକୂଳ ଜଳବାୟୁ ସମ୍ପର୍କରେ ସେମାନେ ଅବଗତ ଥିଲେ । ଆଷାଢ଼ ସପ୍ତମୀଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ଜଳଯାତ୍ରା ଅନୁକୂଳ ବୋଲି ମନେ କରାଯାଉଥିଲା । ଅତୀତ ଉତ୍କଳ ନୌବାଣିଜ୍ୟ ସମ୍ପର୍କରେ ଐତିହାସିକ ହଣ୍ଟର ସାହେବ ସୁନ୍ଦର ତଥ୍ୟଟେ ଦେଲେ । ଓଡ଼ିଆମାନେ ତାଲୁକ, ଚିଲିକା ବନ୍ଦର ତଥା ଜାଭା, ବାଲି ଦ୍ୱୀପରେ ବସତି ସ୍ଥାପନ କଲେ । କୃତିତ୍ୱ ବି ଦେଖାଇଲେ । ହଣ୍ଟରଙ୍କର ଏତାଦୃଶ ମନ୍ତବ୍ୟ ସତ୍ୟ ଉପରେ ପର୍ଯ୍ୟବସିତ ।

ସମୟ ଗଡ଼ି ଚାଲିଲା । ୟୁରୋପୀୟ ବଣିକମାନେ ବାରମାସୀ ବାଣିଜ୍ୟ କାରବାର କରୁଥିଲେ । ସେମାନଙ୍କର ଯନ୍ତ୍ରଚାଳିତ ଷ୍ଟିମର, ଝଡ଼ ତୋଫାନକୁ ପ୍ରତିରୋଧ କରିବାର ସାମର୍ଥ୍ୟ ଏଗୁଡ଼ିକର ଥିଲା । ଅନ୍ୟ ପକ୍ଷରେ ଉତ୍କଳୀୟ ଅଝାଳଟଣା ବୋଇତ ଏହାର ସମକକ୍ଷ ନ ଥିଲେ ଫଳରେ ବେପାର ବଣିଜ ମାନ୍ଦା ପଡିଲା ଓ ଓଡିଆ ନାବିକମାନେ ହତୋତ୍ସାହ ହେଲେ ।

୧୮୬୬ ମସିହା, ସେତେବେଳେ ଉତ୍କଳର ନୌବାଣିଜ୍ୟ କାଳଗର୍ଭରେ ବିଲୁପ୍ତ ପ୍ରାୟ । ପଡ଼ିଲା ଦୁର୍ଭିକ୍ଷ (ନ'ଅଙ୍କ ଦୁର୍ଭିକ୍ଷ) । ଅନ୍ୟ ଜିଲ୍ଲାମାନଙ୍କ ପରି ବାଲେଶ୍ୱରରେ ପୋକମାଛି ପରି ଲୋକେ ମଲେ । ବିଦେଶରୁ ଚାଉଳ ଆମଦାନି ହେବ ମାତ୍ର ସେତେବେଳକୁ ନଥିଲା ଜାହାଜଟିଏ, ସରକାର କଲିକତାରୁ ବଡ଼ ବଡ଼ ମନୋହରି ଜାହାଜ ଭଡ଼ାକରି ଆଣିଲେ । ରେଙ୍ଗୁନ୍ ବ୍ରହ୍ମଦେଶରୁ ଚାଉଳ ଉଠାଗଲା । ସେତେବେଳର କଲେକ୍ଟର ଜନ୍ ବିମ୍ସ୍ ସାହେବ ଉତ୍କଳର ଏ ପ୍ରକାର ଦୁର୍ଦ୍ଦଶାରେ

ହତଚକିତ ହେଲେ । ଦିନେ ଜାଭା, ବାଲି, ମାଳୟ, ଥାଇଲାଣ୍ଡରେ ଉପନିବେଶ ସ୍ଥାପନ କରିଥିଲେ ଏ ଦେଶର ବଣିକମାନେ । ନିଜ ପ୍ରଚେଷ୍ଟାରେ ସାମ୍ରାଜ୍ୟ ତିଆରି କରିଥିଲେ । ସେମାନେ ଥିଲେ ପୃଥିବୀର ସର୍ବଶ୍ରେଷ୍ଠ ସୌଦାଗର । ସେଇ ଓଡ଼ିଶା ଉପକୂଳରେ ଜାହାଜ ମିଳୁନି । ଲୋକେ ହଜାର ହଜାର ସଂଖ୍ୟାରେ ମଲେ – ତାଙ୍କର ଏ ପ୍ରକାର ଟିପ୍ପଣୀରୁ ଅତୀତ କଳିଙ୍ଗର ଗରିମାମୟ ନୌବାଣିଜ୍ୟ ଚିତ୍ର ମିଳେ ।

ଏକଦା ସାରା ବିଶ୍ୱରେ ନାଁ କମେଇଥିବା ଉତ୍କଳୀୟ ସୌଦାଗରମାନଙ୍କର କ୍ରମଶଃ ଅଧୋଗତି ହେଲା । ଏହାର ନାନାବିଧ କାରଣ ରହିଛି । ଇଂରେଜି ବଣିକମାନଙ୍କର ସ୍ୱର୍ଦ୍ଧିତ ନୌବାଣିଜ୍ୟ ସାରା ବିଶ୍ୱକୁ ଚକିତ କରିଦେଲା । ପ୍ରତିସ୍ପର୍ଦ୍ଧୀ ୟୁରୋପୀୟ ବଣିକମାନେ ଇଂରେଜଙ୍କ ପରାକ୍ରମ ନିକଟରେ ମୁଣ୍ଡ ନୁଆଁଇଲେ । ସେମାନଙ୍କର ଅସ୍ତିତ୍ୱ ବିଲୟ ହେବା ସହିତ ଉତ୍କଳର ଅଝାଲଟଣା ବୋଇତମାନ ଭଜିଲେ । ଉତ୍‌ଥାନ ପତନ ଜଗତର ନିୟମ । ଚିରକାଳ କାହାରି ସମାନ ଯାଏ ନାହିଁ । ସ୍ମରଣାତୀତ କାଳରୁ ବାଲେଶ୍ୱର ନଦୀକୂଳ ସହସ୍ର ସହସ୍ର ଲୋକ ଯୋଗେ କୋଳାହଳପୂର୍ଣ୍ଣ ଥିଲା । ସେ ସ୍ଥାନ ଆଜି ନିର୍ଜନ, ଅରଣ୍ୟମୟ, ଶ୍ମଶାନତୁଲ୍ୟ ନିସ୍ତବ୍ଧ । ନଦୀଟା ପୋତି ହୋଇଗଲାଣି । ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଏଇଟି ଖେଦୋକ୍ତି । ଏଥିରୁ କେବଳ ବାଲେଶ୍ୱର ନୁହେଁ, ସାରା ଓଡ଼ିଶାର ଅତୀତ ନୌବାଣିଜ୍ୟ–ବିଲୟ– କାହାଣୀ ବେଶ୍ ଅନୁମେୟ । ସମୟ ଗଡ଼ିଚାଲିଲା । ସାଥିରେ ନେଲା ଉତ୍କଳର ଗରିମାମୟ ନୌବାଣିଜ୍ୟକୁ । ଅଧୁନା ଓଡ଼ିଶାର ବାଣିଜ୍ୟ କାରବାର ଚାଲିଛି, ଏବେ ଆଉ ଅଝାଲ ଟଣା ବୋଇତ ନାହିଁ । ବିଶାଳକାୟ ଜାହାଜମାନ ଏ କାର୍ଯ୍ୟରେ ନିଯୁକ୍ତ । ଜଗତ୍‌ସିଂହପୁର ଜିଲ୍ଲାର ପାରାଦ୍ୱୀପ ଏକ ସାମୁଦ୍ରିକ ନୌବାଣିଜ୍ୟ ପେଣ୍ଠ । ବଙ୍ଗୋପସାଗର କୂଳରେ ଏହା ଅବସ୍ଥିତ, ଏଇଟି ସୁନାମଧନ୍ୟ ବନ୍ଦର । ଏହାର ଉତ୍ତରୋତ୍ତର ଉନ୍ନତିରେ କଳିଙ୍ଗ ବରପୁତ୍ର ବିଜୁ ପଟ୍ଟନାୟକଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଖାଣ୍ଟି ଓଡ଼ିଆପ୍ରେମୀ ସ୍ୱର୍ଗତ ପଟ୍ଟନାୟକ । ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଥାଆନ୍ତି ଜବାହରଲାଲ ନେହେରୁ । ତାଙ୍କୁ ଆକାଶ ମାର୍ଗରେ ପାରାଦ୍ୱୀପ ସମୁଦ୍ର ତଟ ଦେଖାଇଥିଲେ । ତାଙ୍କ ରାତ୍ର ରହଣି ସ୍ଥାନଟିର ନାମ 'ନେହେରୁ ବଙ୍ଗଳା' । ପାରାଦ୍ୱୀପ କଳିଙ୍ଗ ବାଲିଯାତ୍ରା ପାଇଁ ତାଙ୍କ ଅବଦାନ ଅବିସ୍ମରଣୀୟ । ତାଙ୍କ ଜୀବିତାବସ୍ଥାର କଥା । ଫିସନ କାର୍ତ୍ତିକ ପୂର୍ଣ୍ଣିମାରେ ଆରମ୍ଭ ହେଲା ବୋଇତ ବନ୍ଦାଣ ଉତ୍ସବ । ସ୍ୱର୍ଗୀୟ ବିଜୁବାବୁ ଜାହାଜରେ ଓଡ଼ିଆ ସାଧବପୁଅଙ୍କୁ ବିଭିନ୍ନ ଦ୍ୱୀପକୁ ପଠାଉଥିଲେ ଏବଂ ମନେ ପକେଇ ଦେଉଥିଲେ ଗରିମାମୟ ଅତୀତକୁ । ଏବେବି ଚାଲିଛି ବାଲିଯାତ୍ରା, ବୋଇତ ବନ୍ଦାଣ ଉତ୍ସବ । ପୁନଃ ଜାଗରିତ କରୁଛି ପୂର୍ବ ସ୍ମୃତିକୁ । ଉପକୂଳବାସୀ ନାବିକଙ୍କ ସାହସ ସାମର୍ଥ୍ୟକୁ । ଠିକ୍ ସେମିତି ଚାଲିଛି କଟକ ମହାନଦୀ ତଟରେ ବାଲିଯାତ୍ରା କାହିଁ କେତେ କାଳରୁ । ମହାନଦୀ ଗଡ଼ଗଡ଼ିଆ ଘାଟ ଦେଖିଥିଲା ଶହଶହ ଛୋଟବଡ଼ ଜାହାଜର ଗତାଗତ । ଏବେ ସେସବୁ ଆଖିରେ ପଡ଼େନି, କେବଳ ବାଲିଯାତ୍ରା ସାଇତି ରଖିଛି ଆମ ନୌବାଣିଜ୍ୟ ସ୍ମୃତି ଇତିହାସକୁ ।

ଉପଯୁକ୍ତ ନୌବାଣିଜ୍ୟ କଥା ଏବେ ଆକାଶ କୁସୁମ ତୁଲ୍ୟ । ଉତ୍କଳର ଅଛି ଲବଣାକ୍ତ ହ୍ରଦ ଚିଲିକା ଓ ବଙ୍ଗୋପସାଗର ନିତି ଏହାର ପାଦ ଧୌତ କରୁଛି । ଦିନେ ଏଇ ଉତ୍କଳବାସୀ ଲୁଣ ଟିକକ ପାଇଁ ହାତ ପାତିଲେ ବିଦେଶୀ ଇଂରେଜମାନଙ୍କ ପାଖରେ । ଫକୀର ମୋହନ ଚମତ୍କାର କଥାଟିଏ କହିଲେ, ଆଜି ବିଜ୍ଞାନ ଯୁଗ । ହଜାର ବର୍ଷ ପୂର୍ବେ ସମୁଦ୍ରଗାମୀ ନୌଚାଳକ, ସମୁଦ୍ରକୂଳବାସୀ କୈବର୍ତ୍ତ ବଂଶ ଆଜି ବିଜ୍ଞାନ ଚର୍ଚ୍ଚା ସମୟରେ କେତେ ଉନ୍ନତି ଲାଭ କରିଥାଆନ୍ତା । ତାହା ତ ଆଉ ସମ୍ଭବ ନୁହେଁ । ଉତ୍କଳୀୟମାନେ ପଛକୁ ଅନାନ୍ତୁ, ଅତୀତ କଥା ସ୍ମରଣ କରନ୍ତୁ । ପୂର୍ବ ପୁରୁଷଙ୍କ ବଳ କାର୍ଯ୍ୟ ଉପରେ ଦୃଷ୍ଟି ନିକ୍ଷେପ କରନ୍ତୁ । ସେଇ ରକ୍ତ ଆଜି ଓଡ଼ିଶାବାସୀଙ୍କ ଶିରା ପ୍ରଶିରାରେ ବହୁଛି । ତାହା ଏ ପର୍ଯ୍ୟନ୍ତ ଲୋପ ପାଇନାହିଁ । ଅତୀତକୁ ପୁଞ୍ଜି କରିବାକୁ ପଡ଼ିବ, ଫେରାଇ ଆଣିବାକୁ ହେବ ଆମ ଗତଗୌରବ ଓ ହୃତ ଗୌରବକୁ । ପୁନଶ୍ଚ ଏହାର ଯଶ କୀର୍ତ୍ତିକୁ ଗାଇବେ କବିକୁଳ । ଉପେନ୍ଦ୍ର ଭଞ୍ଜଙ୍କ ସହ କଣ୍ଠ ମିଶାଇବେ, ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ, ସାଧବ ଯୁବତୀମାନେ ଅତି ପ୍ରମୋଦରେ ଗଲେ ବହିତ୍ର ବନ୍ଦାଇ, ଅର୍ଘ୍ୟଥାଳିମାନ କରେ ହୁଳହୁଳି ଦେଇ ।

---

ସା/ପୋ: ପୁରୁଷୋତ୍ତମପୁର, କେନ୍ଦ୍ରାପଡ଼ା
ପିନ୍–୭୫୪୨୨୩

# କର୍ପୂର ଆସିଛି ଫେରି

ପ୍ରଭାତ କୁମାର ନନ୍ଦ

ଊନବିଂଶ ଶତାବ୍ଦୀରେ ବହୁ ଐତିହାସିକ ଓ ସାହିତ୍ୟିକ ତତ୍‌କାଳୀନ ଓଡିଶାର ନୌବାଣିଜ୍ୟିକ ଦୁରାବସ୍ଥାକୁ ଲକ୍ଷ୍ୟ କରି ଲେଖିଥିଲେ ଯେ, କଳିଙ୍ଗର ସମୃଦ୍ଧ ସାଧବ ପରଂପରା ଓ ନୌବାଣିଜ୍ୟିକ ପ୍ରସିଦ୍ଧି ଲୁପ୍ତ ହୋଇଯାଇଛି । ସେ ପ୍ରସିଦ୍ଧି ରୂପକ କର୍ପୂର ଉଡିଯାଇଛି ଓ କେବଳ ପୂର୍ବ ବନ୍ଦର ସ୍ଥଳଗୁଡିକ ପୁରୁଣା କନାରୂପେ ପଡିରହିଛି । ମାତ୍ର ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ନବ କଳିଙ୍ଗ ବା ଓଡିଶାର ହୃତ ସାମୁଦ୍ରିକ ବାଣିଜ୍ୟ ପ୍ରସିଦ୍ଧି ଫେରିଆସିଲା ଓ ନୌବିତ୍‌ମାନେ ସମୃଦ୍ଧ ନୌବାଣିଜ୍ୟିକ ପ୍ରତିଷ୍ଠା ରୂପକ କର୍ପୂର ଫେରି ଆସିଲା ବୋଲି ଦୃଢ ମତପୋଷଣ କଲେ । ବିଶେଷତଃ ବୃହତ୍ ବନ୍ଦର ପାରାଦ୍ୱୀପ ସହିତ କ୍ଷୁଦ୍ର ବନ୍ଦର ଗୋପାଳପୁର ଓ ଧାମରାର ସଫଳ ରୂପାୟନ ଓଡିଶାକୁ ଅନ୍ୟତମ ନୌବାଣିଜ୍ୟିକ ପ୍ରଦେଶଭାବେ ପ୍ରତିଷ୍ଠା ଦେଲା ।

କେବଳ ପାରାଦ୍ୱୀପ, ଗୋପାଳପୁର ଓ ଧାମରା ନୁହେଁ, ଏହାବ୍ୟତୀତ ବହୁଦା ମୁହାଣରେ ସୋନେପୁର, ପାଲୁର, ବାଲି ହରଚଣ୍ଡୀ, ଅସ୍ତରଙ୍ଗ, ଜଟାଧାରୀ ମୁହାଣ, ବରୁଣେଇ ମୁହାଣ, ଚୁଡାମଣି, ଇଂଚୁରୀ, ଚାନ୍ଦିପୁର, ବାହାବଲପୁର, ସୁବର୍ଣ୍ଣରେଖା ମୁହାଣରେ କୀର୍ତ୍ତନିଆ, ବିଚିତ୍ରପୁର ବା ତଳସାହିରେ ରାଜ୍ୟ ସରକାର ନୂତନ ବନ୍ଦର ନିର୍ମାଣ ନିମିତ୍ତ ପଦକ୍ଷେପ ନେଇଛନ୍ତି । ସେହି ପ୍ରସ୍ତାବିତ ବନ୍ଦରଗୁଡିକର ଭୌଗୋଳିକ ସ୍ଥିତି ସଂଲଗ୍ନ ମାନଚିତ୍ରରେ ଦିଆଯାଇଛି । ସମସ୍ତ ବନ୍ଦରର ସମନ୍ୱିତ ବିକାଶ କଳ୍ପେ ସ୍ୱତନ୍ତ୍ର ବନ୍ଦର ନୀତି ୨୦୦୩ ମସିହାରେ ପ୍ରଣୟନ କରାଯାଇଛି । ପୁନଶ୍ଚ ଓଡିଶା ସରକାରଙ୍କ ଶିଳ୍ପ ବିଭାଗ ଦ୍ୱାରା ଜାରି ତା ୨୮.୦୧.୨୦୦୩ ଓ ତା ୦୩.୦୬.୨୦୦୩ ଆଦେଶ ଅନୁସାରେ ସରକାରୀ ଜମି ବନ୍ଦର ଶିଳ୍ପ ନିମିତ୍ତ ଯୋଗାଇ ଦେବା ପାଇଁ ସ୍ଥିର ହୋଇଛି । ବନ୍ଦର ଶିଳ୍ପକୁ ଉନ୍ନତ କରିବା ନିମନ୍ତେ ଇଚ୍ଛୁକ ଅଭିଜ୍ଞ ବ୍ୟବସାୟୀ ସଂସ୍ଥାକୁ BOT (Build Operate Transfer) ବା ନିର୍ମାଣ, ପରିଚାଳନା ଓ ହସ୍ତାନ୍ତର ଚୁକ୍ତିରେ ନିର୍ଦ୍ଦିଷ୍ଟ ବର୍ଷ ନିମିତ୍ତ ଆବର୍ତ୍ତନ କରିବା ପାଇଁ ସ୍ଥିର ହୋଇଅଛି । ଓଡିଶାର ନୌବାଣିଜ୍ୟକୁ ଅଧିକ କ୍ରିୟାଶୀଳ କରିବା ପାଇଁ ଓଡିଶା ସାମୁଦ୍ରିକ ପରିଷଦ ଗଠନ ହୋଇଛି । ଏ ସମସ୍ତ ଉନ୍ନତିମୂଳକ ପଦକ୍ଷେପ ଯୋଗୁଁ ଓଡିଶା ଯେ ଭାରତର ଏକ ପ୍ରସିଦ୍ଧ ସାମୁଦ୍ରିକ ରାଜ୍ୟ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ । ତେବେ ଏହି ପ୍ରବନ୍ଧରେ ବର୍ତ୍ତମାନ କାର୍ଯ୍ୟଶୀଳ ପାରାଦ୍ୱୀପ, ଗୋପାଳପୁର ଓ ଧାମରା ବନ୍ଦର ବିଷୟରେ ସୂଚନା ପ୍ରଦାନ କରିବା ଉପଯୋଗୀ ହେବ ।

ପାରାଦ୍ୱୀପ ଅଞ୍ଚଳ ଏକ ଉନ୍ନତ ଓ ଯୁଗେ ଯୁଗେ କୀର୍ତ୍ତି ଅର୍ଜନକାରୀ ସ୍ଥାନ ଭାବରେ ପ୍ରସିଦ୍ଧି ଅର୍ଜନ କରିଛି । ପାରାଦ୍ୱୀପ ଏକ ନୂତନ ସହର ନୁହେଁ । ପୌରାଣିକ ଯୁଗରୁ ପାରାଦ୍ୱୀପର ଖ୍ୟାତି ରହିଛି । ପରାଶର ମହାମୁନୀଙ୍କୁ ଏକ ରମଣୀୟ ବନାଞ୍ଚଳରେ ତପସ୍ୟା କରିବା ପାଇଁ ଐଶ୍ୱର ନିର୍ଦ୍ଦେଶ ମିଳିଥିଲା । ପରାଶର ମହାନଦୀ ମୁହାଣସ୍ଥ ପବିତ୍ର ଭୂମିକୁ ନିଜର ତପୋଭୂମିରୂପେ ଚୟନ କରିଥିଲେ । ତପ ସାଧନ କାଳରେ ପରାଶର ମହାମୁନୀଙ୍କର ନିକଟବର୍ତ୍ତୀ ଗ୍ରାମର ଧୀବର କନ୍ୟା ମତ୍ସ୍ୟଗନ୍ଧା ସହ ପ୍ରଣୟ ହୋଇଥିଲା ଓ ପୃଥିବୀର ଶ୍ରେଷ୍ଠ କବି ତଥା ପୁରାଣ ରଚୟିତା ବ୍ୟାସଦେବ ଏହି ସ୍ଥଳରେ ଜନ୍ମଗ୍ରହଣ କରିଥିଲେ । ପରାଶରଙ୍କର ପବିତ୍ର ନାମକୁ ଆଧାର କରି ଏହି ସ୍ଥାନର ନାମ ପରାଦ୍ୱୀପ ରଖାଯାଇଥିଲା । 'ପରା' ଅର୍ଥ ସ୍ୱର୍ଗୀୟ ଓ 'ଦ୍ୱୀପ' ଅର୍ଥ ଚତୁଃପାର୍ଶ୍ୱରେ ଜଳବେଣୀ ଦ୍ୱାରା ପରିବେଷ୍ଟିତ

ସ୍ଥଳଭାଗ । ଏହି ଅଞ୍ଚଳ ପବିତ୍ର ଓ ସ୍ୱର୍ଗୀୟ ଭାବଧାରାରେ ପ୍ଲାବିତ ଦ୍ୱୀପ । ପାରାଦ୍ୱୀପର ଭୌଗୋଳିକ ଅବସ୍ଥିତିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହାର ଚତୁଃପାର୍ଶ୍ୱ ଜଳରାଶି ଦ୍ୱାରା ପରିବେଷ୍ଟିତ । ପୂର୍ବ ଓ ଦକ୍ଷିଣରେ ବଙ୍ଗୋପସାଗର, ଉତ୍ତର ଦିଗରେ ମହାନଦୀ ଓ ଉତ୍ତର ଦିଗରେ ଅଠରବାଙ୍କୀ ନଦୀ ରହିଅଛି । କୌଣସି ଜଳରାଶିକୁ ଅତିକ୍ରମ ନ କରି କେହି ପାରାଦ୍ୱୀପରେ ପ୍ରବେଶ କରିପାରିବେ ନାହିଁ । ଜଳଯାନ ଯୋଗେ ବଙ୍ଗୋପ ସାଗରକୁ ଓ ମହାନଦୀକୁ ଅତିକ୍ରମ କରି ପାରାଦ୍ୱୀପକୁ ଯାତ୍ରା କରିହେବ । ମାତ୍ର ସ୍ଥଳଭାଗରୁ କୁଜଙ୍ଗ ଅତିକ୍ରମ କରି ଆସିବା ବେଳେ ଅଠରବାଙ୍କୀ ପୋଲ ଉପରେ ଯାତ୍ରା କରିବାକୁ ହେବ ।

କାଳକ୍ରମେ ଲୋକମୁଖରେ ପରାଦ୍ୱୀପ ପରିବର୍ତ୍ତିତ ହୋଇ ପାରାଦ୍ୱୀପ ହୋଇଛି । କେହି କେହି ଏହି ସ୍ଥଳକୁ ପାରାଦ୍ୱିପ ରୂପେ ନାମିତ କରନ୍ତି । ମାତ୍ର 'ଦ୍ୱିପ'ର କୌଣସି ଅଭିଧାନିକ ଅର୍ଥ ନାହିଁ । ଦୀପର ଅର୍ଥ ଆଲୋକବର୍ତ୍ତିକା, ଯାହାକି ସ୍ଥଳର ବୈଶିଷ୍ଟ୍ୟ ସହ ମେଳ ଖାଉନାହିଁ । ତେଣୁ ପବିତ୍ର ଦ୍ୱୀପ ଭାବରେ ଏହି ସ୍ଥଳର ନାମକୁ ପାରାଦ୍ୱୀପ କହିଲେ ଅଧିକ ଯୁକ୍ତିଯୁକ୍ତ ହେବ । ଆନ୍ତର୍ଜାତିକ ନୌ ନକ୍ସାରେ ପାରାଦ୍ୱୀପ ବନ୍ଦରକୁ 'PARADWIP' ଭାବରେ ଅଦ୍ୟାବଧି ଦର୍ଶାଯାଉଛି । ତେଣୁ ପୌରାଣିକ ଯୁଗରୁ ଏହି ସ୍ଥଳର ସୁଖ୍ୟାତି ଓ ଗୌରବମୟ ପରମ୍ପରା ରହିଆସିଛି । ମହାନଦୀ ମୁହାଣ ନିକଟରେ ବ୍ୟାସଦେବଙ୍କର ଏକ ପୂଜନ ପୀଠ ଘଞ୍ଚ ବନାନୀ ମଧ୍ୟରେ ଥିଲା । ପାରାଦ୍ୱୀପ ବନ୍ଦରର ହେଲିକେପ୍ଟର ଉତ୍ତରଣ ଓ ଉଡାଣ ଘାଟୀ ନିର୍ମାଣ ବେଳେ ଏହି ଆଶ୍ରମକୁ ଉଚ୍ଛେଦ କରାଯାଇଥିଲେ ମଧ୍ୟ ତତ୍ ନିକଟ ବଣରେ ଏବେ ସୁଦ୍ଧା ବ୍ୟାସଦେବଙ୍କର ପୂଜନ ପୀଠ ସେବକମାନଙ୍କ ଦ୍ୱାରା ପରିଚାଳିତ ହେଉଛି ।

ପୁରାଣ ଯୁଗ ପରେ ଐତିହାସିକ ଯୁଗରେ ପାରାଦ୍ୱୀପ ଅଞ୍ଚଳ ମନ୍ନଦ ନାମରେ ପ୍ରସିଦ୍ଧ ଥିଲା । ବିଶ୍ୱ ପ୍ରସିଦ୍ଧ ନୌବିତ୍ ଟଲେମି ତାଙ୍କର ବିଶ୍ୱ ଭୂଗୋଳ ଗ୍ରନ୍ଥର ଷଷ୍ଠ ତାଲିକାରେ କଳିଙ୍ଗସାଗର ଓ ବୃହତ୍ ନଦୀର ସଙ୍ଗମ ସ୍ଥଳରେ ମନ୍ନଦ ନାମକ ପୋତାଶ୍ରୟ ଥିଲା ବୋଲି ଉଲ୍ଲେଖ କରିଛନ୍ତି । ପରେ ଅନ୍ୟତମ ନୌବିତ୍ ଟି.ଇ.ଜେରିନି ଏହି ତଥ୍ୟକୁ ସମର୍ଥନ କରିଛନ୍ତି । ମନ୍ନଦ ସହ କଟିକର୍ଦମ, ଆଫେତେରିଆନ୍, ତାମ୍ରଲିପ୍ତି, କୋଣାଗାର ଓ ପାଲୁର ବନ୍ଦର ବିଷୟରେ ସୂଚନା ଦିଆଯାଇଛି । ବିଶ୍ୱର ଅନ୍ୟ ପ୍ରସିଦ୍ଧ ବନ୍ଦର ଭଳି ମହାନଦୀ ମୁହାଣସ୍ଥ ମନ୍ନଦ ବନ୍ଦର ଖ୍ୟାତିଲାଭ କରିଥିଲା । ଅନ୍ୟତମ ପରିବ୍ରାଜକ ହୁଏନ୍‌ସାଂ ତାଙ୍କର ଭ୍ରମଣ ଗାଥାରେ ଚୀନ୍ ରାଜକୁମାରୀ ନୌଯାତ୍ରାରେ ଆସି ଏକ ବୃହତ୍ ବନ୍ଦର ଦେଇ ଚେଲିତୋଳ ବନ୍ଦରକୁ ଯାଇ ସେଠାରୁ ବୌଦ୍ଧ ବିଶ୍ୱବିଦ୍ୟାଳୟକୁ ଯାଇ ତନ୍ତ୍ରଶିକ୍ଷା ଲାଭ କରିଥିଲେ ବୋଲି ବର୍ଣ୍ଣନା କରିଛନ୍ତି । ମହାନଦୀ ମୁହାଣର ପ୍ରାୟ ପଚାଶ କିଲୋମିଟର ଦୂରରେ ପୁଷ୍ପଗିରି ବୌଦ୍ଧ ବିଶ୍ୱବିଦ୍ୟାଳୟ ଥିଲା ଏବଂ ବର୍ତ୍ତମାନ ତାହାର ଭଗ୍ନାବଶେଷ ଦେଖିବାକୁ ମିଳିଥାଏ । ବର୍ତ୍ତମାନର ବଙ୍ଗୋପ ସାଗରକୁ ଖ୍ରୀଷ୍ଟପୂର୍ବ ସମୟରୁ କଳିଙ୍ଗ ସାଗର ନାମରେ ଅଭିହିତ କରାଯାଇଥିଲା । ସେହି ସାଗରରେ ସାଧବମାନେ ସାହସିକତାର ସହ ନିଜ ନିର୍ମିତ ନୌଯାନରେ ପୃଥିବୀର ବିଭିନ୍ନ ଦେଶକୁ ବାଣିଜ୍ୟ ଓ କଳିଙ୍ଗ ସଂସ୍କୃତିର ପ୍ରଚାର ନିମିତ୍ତ ସମସ୍ତ ବିପଦକୁ ଖାତିର ନ କରି ନୌଯାତ୍ରା କରିଥିବାରୁ କଳିଙ୍ଗର ଅଧିବାସୀମାନଙ୍କୁ 'କଳିଙ୍ଗାଃ ସାହସିକାଃ' ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା । ପରିବ୍ରାଜକ ହୁଏନ୍‌ସାଂଙ୍କ ଦ୍ୱାରା ସୂଚିତ ବୃହତ୍ ବନ୍ଦର ହିଁ ମନ୍ନଦ ବନ୍ଦର ଓ ବର୍ତ୍ତମାନର ତିର୍ତ୍ତୋଲ ହିଁ ପ୍ରାଚୀନ ଚେଲିତୋଳ ବନ୍ଦର ଥିଲା ବୋଲି ଐତିହାସିକମାନେ ନିରୂପଣ କରିଛନ୍ତି । ଚେଲିତୋଳ ବନ୍ଦରରେ ନୌଯାନରୁ ଅବତରଣ କରି ଚୀନ୍ ରାଜକୁମାରୀ ପାଲିଙ୍କି ଓ ହାତୀଯୋଗେ ସ୍ଥଳପଥରେ ପୁଷ୍ପଗିରି ବିଶ୍ୱବିଦ୍ୟାଳୟକୁ ଯାତ୍ରାକରି ତନ୍ତ୍ରଶିକ୍ଷା ଲାଭପରେ ପୁନଶ୍ଚ ସେହି ପଥରେ ଚୀନ୍‌କୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷ ମହାନଦୀର ପବିତ୍ର ଓ ରମଣୀୟ ମୁହାଣ ସ୍ଥଳରେ ପର୍ଯ୍ୟଟକମାନଙ୍କର ସୁବିଧା ବ୍ୟବସ୍ଥା ସହ 'ମନ୍ନଦ ଉଦ୍ୟାନ' ନିର୍ମାଣ କରି ତାହାର ରକ୍ଷଣାବେକ୍ଷଣ କରୁଛନ୍ତି । ମନ୍ନଦ ଉଦ୍ୟାନରୁ ବଙ୍ଗୋପ ସାଗରରେ ସୂର୍ଯ୍ୟୋଦୟ ଏବଂ ସଂଧ୍ୟା ସମୟରେ ଦୂର ବତୀଘର ଆଲୋକ ସ୍ତମ୍ଭର ଆଲୋକ ବିକିରଣ ଲକ୍ଷ୍ୟ କରି ପର୍ଯ୍ୟଟକମାନେ ଆନନ୍ଦଲାଭ କରନ୍ତି । ମନ୍ନଦ ବନ୍ଦର ଏକ ପ୍ରସିଦ୍ଧ ବନ୍ଦର ଥିବାରୁ ବହୁ ପ୍ରାକୃତିକ ସଂକେତ ରହିଛି । ମନ୍ନଦ ବନ୍ଦର କ୍ଷେତ୍ରରେ କାଉଡିଆ, ମୁଷାଡିଆ, ବୋଇତରା କୁଦ ଓ ସାରଳୀ କୁଦ ନାମରେ ବହୁ

ଦ୍ୱୀପ ରହିଛି । ଏହି ଦ୍ୱୀପଗୁଡ଼ିକରେ ବିଭିନ୍ନ ସାମୁଦ୍ରିକ ବାଣିଜ୍ୟ ଶିଳ୍ପ ଚାଲୁଥିଲା । ମୁଷାଡିଆ ଦ୍ୱୀପରେ ରପ୍ତାନି ପଣ୍ୟଦ୍ରବ୍ୟ ସାଇତି ରଖାଯାଉଥିବା ବେଳେ କାଉଡିଆ ଦ୍ୱୀପରେ ନୌଯାନ ବା ବୋଇତ ଚାଳନା କରିବା ନିମିତ୍ତ କୈବର୍ତ୍ତମାନେ ରହୁଥିଲେ । ବୋଇତରା କୁଦର ନାମ ପ୍ରକୃତରେ ବୋଇତରୁହା କୁଦ ଥିଲା । ଲୋକ ବଚନରେ ତାହା ପରବର୍ତ୍ତୀ ସମୟରେ ବୋଇତରା କୁଦ ବୋଲାଇଛି । ଖ୍ରୀଷ୍ଟପୂର୍ବ ସମୟରୁ ମହାନଦୀ ହିଁ କଳିଙ୍ଗ ନୌବାଣିଜ୍ୟର ମୁଖ୍ୟ ଆଧାର ଥିଲା । ମହାନଦୀର ଉତ୍ପତ୍ତି ସ୍ଥଳରୁ ପାରାଦ୍ୱୀପ ଯାଏଁ ନଦୀର ଉଭୟ କୂଳରେ ବହୁ ପ୍ରସିଦ୍ଧ ବନ୍ଦର ଥିଲା । ସେହି ବନ୍ଦରଗୁଡ଼ିକରୁ ବୋଇତରେ ମୂଲ୍ୟବାନ ବସ୍ତ୍ର, ଅଳଙ୍କାର, ହାତୀଦାନ୍ତ ଓ କୁଟୀର ଶିଳ୍ପଜାତ ରପ୍ତାନିଯୋଗ୍ୟ ପଣ୍ୟଦ୍ରବ୍ୟ ସଂଗ୍ରହ କରି ସାଧବମାନେ ମନ୍ନଦ ବନ୍ଦରରେ ପହଞ୍ଚୁ ଥିଲେ ଓ ବୋଇତକୁ ବୋଇତରୁ ବୋଇତ ରୁହା କୁଦରେ ସୁରକ୍ଷିତ ଭାବରେ ରଖୁଥିଲେ । ସମୁଦ୍ରରେ ଅନୁକୂଳ ପବନ ବହିବାବେଳେ ସାଧବମାନେ ନିକଟସ୍ଥ ସାରଳୀ କୁଦରେ ଥିବା ଏ ଅଞ୍ଚଳର ଅଧିଷ୍ଠାତ୍ରୀ ଦେବୀ ମା' ସାରଳାଙ୍କ ପୂଜାର୍ଚ୍ଚନା ପୂର୍ବକ ଶୁଭାଶୀର୍ବାଦ ଗ୍ରହଣ କରି ନୌଯାତ୍ରାରେ ବାହାରୁ ଥିଲେ । ତେଣୁ ଇତିହାସର ଖ୍ରୀଷ୍ଟପୂର୍ବ ସମୟରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ମନ୍ନଦ ବନ୍ଦର କଳିଙ୍ଗ ନୌବାଣିଜ୍ୟର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଥିଲା ।

ଭାରତର ମଧ୍ୟ ଯୁଗରେ ପାରାଦ୍ୱୀପ ଓ ତାହାର ନିକଟବର୍ତ୍ତୀ ଅଞ୍ଚଳରେ ନୌବାଣିଜ୍ୟିକ କାର୍ଯ୍ୟାବଳୀ ଉନ୍ନତ ମାନର ଥିଲା । ପାରାଦ୍ୱୀପ ନିକଟ କୁଜଙ୍ଗରେ 'କୁଂଜଗୁଆରେ' ନାମକ ବନ୍ଦର ଥିଲା । ମହାନଦୀର ମୁଖ୍ୟ ଜଳବେଣୀରେ ଯାତ୍ରା କରୁଥିବା ବୋଇତ କୁଂଜଗୁଆରେ ବନ୍ଦରରୁ ଖାଦ୍ୟଦ୍ରବ୍ୟ ଓ ପାନୀୟ ଜଳ ସଂଗ୍ରହ କରୁଥିଲେ । ମହାନଦୀର ଜଳସ୍ରୋତ ବିଭିନ୍ନ ମହାବାତ୍ୟା ଓ ବନ୍ୟାଯୋଗୁଁ ଅପସାରିତ ହୋଇଥିବାରୁ ବର୍ତ୍ତମାନର କୁଜଙ୍ଗ, ତିର୍ତ୍ତୋଲ ପ୍ରଭୃତି ଅଞ୍ଚଳରେ ଥିବା ବନ୍ଦର ଲୋପ ପାଇଗଲା । ମୋଗଲ ଶାସନ ଓ ପରେ ଇଂରେଜମାନଙ୍କର ଶାସନ କାଳରେ ପାରାଦ୍ୱୀପ ଓ ଜଗତସିଂହପୁର ଅଞ୍ଚଳ, ନୌବାଣିଜ୍ୟରେ ମୁଖ୍ୟ ଭୂମିକା ନିର୍ବାହ କରୁଥିଲେ । ହରିଶପୁର, ମରିଚପୁର ପ୍ରଭୃତି ଅଞ୍ଚଳ ନୌଯାନ ନିର୍ମାଣ ଓ କର୍ପାସ ଶିଳ୍ପ ପ୍ରସ୍ତୁତିରେ ସୁନାମ ଅର୍ଜନ କରିଥିଲେ । ପାରାଦ୍ୱୀପ ନିକଟରେ ଥିବା ଚଉମୁହାଣି, ହେଟାମୁଣ୍ଡିଆ, ବତୀଘର ପ୍ରଭୃତି କ୍ଷୁଦ୍ର ବନ୍ଦରରୁ ପଣ୍ୟଦ୍ରବ୍ୟ କାରବାର ହେଉଥିଲା । ପାରାଦ୍ୱୀପ ବନ୍ଦର ନିର୍ମାଣ ହେବା ପୂର୍ବରୁ ତାଳଦଣ୍ଡା କେନାଲରେ ଲୁହାପଥର ବୃହତ୍‌କାୟ ଡଙ୍ଗାରେ ଅଣାଯାଇ ଚଉମୁହାଣିଠାରୁ ହେଟାମୁଣ୍ଡିଆକୁ ଯନ୍ତ୍ରଚାଳିତ ନୌକା ବା ବାର୍ଜ ସାହାଯ୍ୟରେ ଅଣାଯାଉଥିଲା ଓ ସେଠାରୁ ସମୁଦ୍ର ବକ୍ଷରେ ଥିବା ବୃହତ୍‌କାୟ ଜାହାଜ ଉପରକୁ କ୍ରେନ୍ ଯୋଗେ ଡଙ୍ଗାରୁ ଅପସାରଣ କରାଯାଉଥିଲା । ଏବେ ମଧ୍ୟ ଚଉମୁହାଣି ନିକଟରେ ଗଜରାଜ, କାଇଟ୍ ପ୍ରଭୃତି ପୁରାତନ ବାର୍ଜ (ଉଚ୍ଚମାନର ଯାନ୍ତ୍ରିକ ନୌକା)ର ଭଗ୍ନାବଶେଷ ପଡି ରହିଛି । ତେଣୁ ପୌରାଣିକ, ପ୍ରାକ୍ ଐତିହାସିକ, ମଧ୍ୟ ଯୁଗରେ ବର୍ତ୍ତମାନ ପାରାଦ୍ୱୀପର ପୂର୍ବ ବନ୍ଦର ମନ୍ନଦ ଓ ଅନ୍ୟାନ୍ୟ କ୍ଷୁଦ୍ର ବନ୍ଦର ନୌବାଣିଜ୍ୟିକ ଉତ୍କର୍ଷର ପ୍ରମାଣ କରିସାରିଛନ୍ତି ।

ଆଧୁନିକ ଯୁଗରେ ପାରାଦ୍ୱୀପ ବନ୍ଦର କଳିଙ୍ଗର ସ୍ୱାଭିମାନ ନୌବାଣିଜ୍ୟିକ ପ୍ରସିଦ୍ଧିକୁ ପୁନଃ ପ୍ରତିଷ୍ଠା କରିବାରେ ସମର୍ଥ ହୋଇଛି । ବିଭିନ୍ନ ରାଜନୈତିକ ଓ ଭୌଗୋଳିକ କାରଣରୁ କଳିଙ୍ଗର ବିଶ୍ୱପ୍ରସିଦ୍ଧ ନୌବାଣିଜ୍ୟିକ ପ୍ରତିଷ୍ଠା ମୋଗଲ, ମରହଟ୍ଟା ଓ ଇଂରେଜ ଶାସନ ସମୟରେ ଅବହେଳିତ ହୋଇଗଲା । ସମସ୍ତ ସାମୁଦ୍ରିକ ଓ ବାଣିଜ୍ୟିକ ସୁବିଧା ସତ୍ତ୍ୱେ ଓଡିଶାର ବନ୍ଦରଗୁଡ଼ିକ କାର୍ଯ୍ୟକ୍ଷମ ହୋଇପାରିଲେ ନାହିଁ । ତେଣୁ ବହୁ ଐତିହାସିକ ମତ ଦେଇଥିଲେ ଯେ, କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟର କନା ପଡିରହିଛି, ମାତ୍ର କର୍ପୂର ଉଡି ଯାଇଛି । ଭାରତ ସ୍ୱାଧୀନତା ଲାଭ ପରେ ପୂର୍ବ ପାକିସ୍ଥାନର ଚିଟାଗଙ୍ଗ ବନ୍ଦରକୁ ପୂର୍ବ ଉପକୂଳରେ ହରାଇବାରୁ ଅନ୍ୟ ଏକ ବନ୍ଦର ନିର୍ମାଣ ନିମିତ୍ତ ନୌବିତ୍‌ମାନେ ସ୍ଥିର କଲେ । ପୂର୍ବ ଉପକୂଳରେ କେଉଁ ସ୍ଥଳକୁ ବନ୍ଦର ନିମିତ୍ତ ଚୟନ କରାଯିବ, ସେଥିନିମିତ୍ତ ବିଭିନ୍ନ ରାଜ୍ୟ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଗଲା । ଭାରତ ସରକାରଙ୍କ ଦ୍ୱାରା ବିଭିନ୍ନ ଉଚ୍ଚସ୍ତରୀୟ କମିଟି ଗଠନ କରାଗଲେ ମଧ୍ୟ ନିର୍ଦ୍ଦିଷ୍ଟ ମତପ୍ରକାଶ ପାଇ ପାରିନଥିଲା । ପୂର୍ବ ଉପକୂଳରେ କଲିକତା ଓ ବିଶାଖାପାଟଣା ବନ୍ଦର ମଧ୍ୟରେ ସ୍ଥାନ ଚୟନ କରାଯିବା ଲାଗି ୧୯୪୮ ମସିହାରେ ଭାରତ ସରକାରଙ୍କ ବନ୍ଦର ବୈଷୟିକ କମିଟି ମତ ଦେଇଥିଲେ । ୧୯୪୮ ରୁ ୧୯୫୮ ମଧ୍ୟରେ ବହୁ ବିଶେଷଜ୍ଞ ପାରାଦ୍ୱୀପଠାରେ ସାମୁଦ୍ରିକ ଉପଯୋଗିତା ଯୋଗୁଁ ନୂତନ ବନ୍ଦର

ନିର୍ମାଣ ପାଇଁ ମତ ଦେଇଥିଲେ । ଶେଷରେ ୧୯୫୮ ମସିହା ଜାନୁଆରୀ ମାସରେ ଭାରତ ସରକାର ପାରାଦ୍ୱୀପଠାରେ ଏକ କ୍ଷୁଦ୍ର ବନ୍ଦର ନିର୍ମାଣ ନିମିତ୍ତ ସ୍ୱୀକୃତି ପ୍ରଦାନ କରିଥିଲେ ।

ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଜଣେ ଦୂରଦୃଷ୍ଟିସମ୍ପନ୍ନ ରାଷ୍ଟ୍ରନାୟକ ଥିଲେ । ଓଡ଼ିଶାରେ ଗୋଟିଏ ବୃହତ୍ ବନ୍ଦର ନ ରହିଲେ ଓଡିଶାର ଶିଳ୍ପ, ଖଣିଜ ପଦାର୍ଥର ରପ୍ତାନି, ଉନ୍ନତ ଗମନାଗମନ ସୁବିଧା ଯେ ବ୍ୟାହତ ହେବ, ସେକଥା ସେ ଅନୁମାନ କରିପାରିଥିଲେ । ବିଶେଷତଃ ଆମର ଦୁଇ ପାର୍ଶ୍ୱବର୍ତ୍ତୀ ରାଜ୍ୟରେ ବୃହତ୍ ବନ୍ଦର ଥିବାରୁ ସେମାନଙ୍କର ଆର୍ଥିକସ୍ଥିତି ସୁଦୃଢ଼ ରହିବା ଭଳି ଓଡିଶାର ଆର୍ଥିକସ୍ଥିତି ଉନ୍ନତ କରିବା ପାଇଁ ସେ ପାରାଦ୍ୱୀପଠାରେ ବୃହତ୍ ବନ୍ଦର ନିର୍ମାଣ ନିଷ୍ପତ୍ତି ନେଇ ୧୯୬୨ମସିହା ଜାନୁଆରୀ ତିନି ତାରିଖରେ, ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଦ୍ୱାରା ବନ୍ଦରର ଶିଳାନ୍ୟାସ କରିଥିଲେ । କେନ୍ଦ୍ର ସରକାରଙ୍କ ଆର୍ଥିକ ସାହାଯ୍ୟକୁ ଅପେକ୍ଷା ନ କରି ସେ ଓଡିଶା ରାଜ୍ୟ ସରକାରଙ୍କ ଅର୍ଥ ବ୍ୟବସ୍ଥାରେ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ସହ ବିଜୁ ପଟ୍ଟନାୟକଙ୍କର ସୁସମ୍ପର୍କ ଥିଲା । ଜଣେ ରାଜ୍ୟର ମୁଖ୍ୟମନ୍ତ୍ରୀ ରୂପେ କେବଳ ନୁହେଁ, ଜଣେ ସାହସିକ ବୈମାନିକ, କୂଟନୀତିଜ୍ଞ ଓ ଦୂରଦ୍ରଷ୍ଟା ତଥା ଉଚ୍ଚମାନର ରାଜନୀତିଜ୍ଞ ଭାବରେ ସେ ନେହେରୁଙ୍କର ସମ୍ମାନ ଓ ଶ୍ରଦ୍ଧାର ପାତ୍ର ଥିଲେ । ପ୍ରଧାନମନ୍ତ୍ରୀ ଯେଉଁ ବନ୍ଦରର ଶିଳାନ୍ୟାସ କରିଛନ୍ତି, ତାହାର ଭବିଷ୍ୟତର ଉନ୍ନତି ପାଇଁ କିଏ ବା ବାଧା ଦେବ? ରାଜ୍ୟ ସରକାରଙ୍କ ସୀମିତ ଅର୍ଥ ବ୍ୟବସ୍ଥା ମଧ୍ୟରେ ପାରାଦ୍ୱୀପ ବନ୍ଦରର ନିର୍ମାଣ ଶେଷ କରିବା ସହଜ ନଥିଲା । ପରେ ରାଜ୍ୟ ସରକାରଙ୍କ ଅନୁରୋଧକ୍ରମେ କେନ୍ଦ୍ର ସରକାର ପାରାଦ୍ୱୀପ ବନ୍ଦର ନିର୍ମାଣ ଓ ପରିଚାଳନା ଭାର ୧୯୬୫ ମସିହା ଜୁନ୍ ଏକ ତାରିଖରେ ଗ୍ରହଣ କରି, ୧୯୬୬ ମସିହା ଅପ୍ରେଲ ଅଠର ତାରିଖରେ ବୃହତ୍ ବନ୍ଦର ଭାବେ ମାନ୍ୟତା ଦେଲେ । ଜଣେ ପାରିବାର ମୁଖ୍ୟମନ୍ତ୍ରୀଙ୍କ ଯୋଗୁଁ ଅତୀତରେ ନୌବାଣିଜ୍ୟରେ ସମଗ୍ର ବିଶ୍ୱରେ ପ୍ରସିଦ୍ଧ ଲାଭ କରି ପରେ ହୀନ ଚକ୍ରାନ୍ତ ଯୋଗୁଁ ହତଶିରୀ ହୋଇଥିବା କଳିଙ୍ଗଭୂମି, ହୃତ ନୌବାଣିଜ୍ୟିକ ପ୍ରତିଷ୍ଠା ପୁନରୁଦ୍ଧାର କଳ୍ପେ ବ୍ରତୀ ହେବା ପାଇଁ ସୁଯୋଗ ଲାଭ କଲା ।

ଏହି ଦୁଃସାହସିକ ପଦକ୍ଷେପ ଯୋଗୁଁ, ବିଜୁ ପଟ୍ଟନାୟକଙ୍କୁ ଓଡିଶା ପ୍ରଦେଶର ଓ ରାଷ୍ଟ୍ରସ୍ତରୀୟ ରାଜନୀତିରେ ବହୁ ସମାଲୋଚନାର ସମ୍ମୁଖୀନ ହେବାକୁ ପଡିଛି । ମାତ୍ର ସେସବୁ ସମାଲୋଚନା, ସୂର୍ଯ୍ୟ ଉଦୟ ହେଲେ ଅନ୍ଧକାର ଅପସରି ଗଲା ପରି ବିଜୁ ପଟ୍ଟନାୟକଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ଓଡିଶାର ନାଗରିକମାନଙ୍କର ସମର୍ଥନ ଯୋଗୁଁ ମଳିନ ପଡିଯାଇଥିଲା । ସର୍ବଭାରତୀୟ ସ୍ତରରେ ପାରାଦ୍ୱୀପ ବନ୍ଦରର ବିକାଶକୁ ପ୍ରତିହତ କରିବା ନିମିତ୍ତ ବହୁ ପ୍ରୟାସ କରାଯାଇଛି । ତାହାର ଜ୍ୱଳନ୍ତ ଉଦାହରଣ ହେଉଛି, ୧୯୬୬ ମସିହାରେ ବନ୍ଦରର ପ୍ରଥମ ବର୍ଥ ଲୁହାପଥର ବୋଝେଇ ପାଇଁ ନିର୍ମିତ ହୋଇଥିଲା ବେଳେ ତା'ର ନଅ ବର୍ଷ ପରେ ଦ୍ୱିତୀୟ ବର୍ଥ ଭାବେ ସାଧାରଣ ପଣ୍ୟବର୍ଥ ଉଦ୍‌ଘାଟିତ ହେଲା । ପାରାଦ୍ୱୀପ ବନ୍ଦରର ବିକାଶ ହେଲେ, ତା'ର ଦୁଇ ପାର୍ଶ୍ୱବର୍ତ୍ତୀ ରାଜ୍ୟର ବନ୍ଦରର ପଣ୍ୟଦ୍ରବ୍ୟ କାରବାର ଯେ ବ୍ୟାହତ ହେବ, ତାହା ହିଁ ଥିଲା ନୂତନ ବର୍ଥ ନିର୍ମାଣ ବିଳମ୍ବର ପ୍ରଧାନ କାରଣ । ପାରାଦ୍ୱୀପ ବନ୍ଦରର ପ୍ରକୃତିଦତ୍ତ ଗଭୀରତା, ବନ୍ଦର ମଧ୍ୟସ୍ଥ ପ୍ରଶସ୍ତ ଜଳକ୍ଷେତ୍ର, ବନ୍ଦର ନିକଟ ସମୁଦ୍ରର ପ୍ରାକୃତିକ ଗଭୀରତା, ବନ୍ଦର ନିକଟରେ ଉପଲବ୍ଧ ଭବିଷ୍ୟତରେ ଶିଳ୍ପ ଓ ବନ୍ଦର ସଂପ୍ରସାରଣ ନିମିତ୍ତ ଖାଲି ଜମି ଓ ପାରାଦ୍ୱୀପର ଶ୍ରମିକ ଓ କର୍ମଚାରୀମାନଙ୍କର ଅକ୍ଳାନ୍ତ ପରିଶ୍ରମ ଓ ବନ୍ଦରପ୍ରୀତି, ବିକାଶର ପଥକୁ ମୁକ୍ତ ଓ ଶ୍ରୀପୂର୍ଣ୍ଣ କରିଛି । ଏହା ପାରାଦ୍ୱୀପରେ ଉପଲବ୍ଧ ପ୍ରାକୃତିକ ଓ ସାମାଜିକ ପ୍ରତିଷ୍ଠାର ଅପୂର୍ବ ଗାଥା ।

ରାଷ୍ଟ୍ରନାୟକ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନ ଥିଲା ଯେ, ଦିନେ ପାରାଦ୍ୱୀପ ଭାରତର ଶ୍ରେଷ୍ଠ ବନ୍ଦର ହେବ ଓ ପୂର୍ବ ଭାରତର ଅର୍ଥନୈତିକ ପ୍ରବେଶ ଦ୍ୱାର ରୂପେ ପ୍ରଶଂସିତ ହେବ । ଦୂରଦୃଷ୍ଟିସମ୍ପନ୍ନ ମହାମାନବମାନଙ୍କର ସ୍ୱପ୍ନ କେବେ ବୃଥା ଯାଏ ନାହିଁ । ଗତ ଦୁଇବର୍ଷ ଧରି ପାରାଦ୍ୱୀପ ବନ୍ଦର ସମଗ୍ର ଭାରତର ବୃହତ୍ ବନ୍ଦରଗୁଡିକ ମଧ୍ୟରେ ପଣ୍ୟଦ୍ରବ୍ୟ କାରବାର କ୍ଷେତ୍ରରେ ଦ୍ୱିତୀୟ ସ୍ଥାନରେ ରହିଆସୁଛି । ଗତ ଆର୍ଥିକ ବର୍ଷରେ କାଣ୍ଡଲା ବନ୍ଦର ୧୦୫.୪୪ ନିୟୁତ ଟନ୍ ପଣ୍ୟଦ୍ରବ୍ୟ କାରବାର କରି ପ୍ରଥମ ସ୍ଥାନରେ ଥିଲାବେଳେ, ପାରାଦ୍ୱୀପ ୮୮.୯୫ ନିୟୁତ ଟନ୍ ପଣ୍ୟଦ୍ରବ୍ୟ କାରବାର କରି ଦ୍ୱିତୀୟ ସ୍ଥାନରେ ରହିଛି । କାଣ୍ଡଲା ବନ୍ଦର ଅଧିକ ତୈଳଜାତ ଦ୍ରବ୍ୟ କାରବାର କରିଥିବାରୁ ପଣ୍ୟ କାରବାର କ୍ଷେତ୍ରରେ ପ୍ରଥମ ସ୍ଥାନ

ଅଧିକାର କରିଛି । ତୈଳଜାତ ଦ୍ରବ୍ୟର ବନ୍ଦରରେ କାରବାର ଅତି ସହଜ । ଏହାର ସଂଗ୍ରହ ବା ଅପସାରଣ ନଳୀ ମାଧ୍ୟମରେ ଯାନ୍ତ୍ରୀକ ଉପାୟରେ ହୋଇଥାଏ । ଏହି ପଣ୍ୟଦ୍ରବ୍ୟ କାରବାର ନିମିତ୍ତ ସର୍ବନିମ୍ନ ଶ୍ରମିକ ନିୟୋଜିତ ହୋଇଥାଆନ୍ତି । ତୈଳଜାତ ଦ୍ରବ୍ୟ ମୁଖ୍ୟତଃ ଯନ୍ତ୍ର ସାହାଯ୍ୟରେ ସଂଗ୍ରହ ଓ ଅପସାରଣ କରାଯାଇଥାଏ । ଅନ୍ୟାନ୍ୟ ବିବିଧ ପଣ୍ୟଦ୍ରବ୍ୟକୁ ସାଧାରଣ ପଣ୍ୟଦ୍ରବ୍ୟ ରୂପେ ଗ୍ରହଣ କରାଯାଇଥାଏ । ଏହାର କାରବାର ଏକାଧିକ ପଦ୍ଧତିରେ ଜଟିଳ ଶୈଳୀରେ ହୋଇଥାଏ । ଏହା ମଧ୍ୟ ସମୟ ସାପେକ୍ଷ ଓ କଷ୍ଟକର ।

କାଣ୍ଡଲା ବନ୍ଦରର ଗତ ଆର୍ଥିକ ବର୍ଷ (୨୦୧୬ – ୧୭) ରେ କାରବାର ହୋଇଥିବା ପଣ୍ୟଦ୍ରବ୍ୟରୁ ତୈଳଜାତ ଦ୍ରବ୍ୟକୁ ବାଦ୍ ଦେଲେ, କେବଳ ୪୫.୧୦ ନିୟୁତ ସାଧାରଣ ପଣ୍ୟଦ୍ରବ୍ୟ କାରବାର ହୋଇଛି । ପାରାଦ୍ୱୀପ ବନ୍ଦରରୁ କାରବାର କରାଯାଇଥିବା ଦ୍ରବ୍ୟରୁ ତୈଳଜାତ ଦ୍ରବ୍ୟକୁ ବାଦ୍ ଦେଲେ ୬୧.୨୬ ନିୟୁତ ସାଧାରଣ ପଣ୍ୟଦ୍ରବ୍ୟ କାରବାର କରାଯାଇଛି । ତେଣୁ ସାଧାରଣ ପଣ୍ୟଦ୍ରବ୍ୟ କ୍ଷେତ୍ରରେ ପାରାଦ୍ୱୀପ ବନ୍ଦର ସମଗ୍ର ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଛି । ଏହା ସବୁ ଓଡିଆମାନଙ୍କ ପାଇଁ ଗର୍ବର ବିଷୟ ଓ ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷ, ଶ୍ରମିକ, କର୍ମଚାରୀ, ବନ୍ଦର ବ୍ୟବହାର କରୁଥିବା ସମସ୍ତ ବାଣିଜ୍ୟ ସଂସ୍ଥାଙ୍କ ପକ୍ଷରୁ କଳିଙ୍ଗ ଭାରତୀଙ୍କୁ ନିଜର କୃତିତ୍ୱର ପ୍ରମାଣ ପ୍ରଦର୍ଶନ ପୂର୍ବକ ସଗୌରବ ଉପହାର ।

ଗୋପାଳପୁର ବନ୍ଦର ଏକ ପୁରାତନ ବିଖ୍ୟାତ ବନ୍ଦର । ପ୍ରସିଦ୍ଧ ନୌବିତ୍ ଟଲେମି ତାଙ୍କର ବିଶ୍ୱ ଭୂଗୋଳ ପୁସ୍ତକରେ ବର୍ତ୍ତମାନ ଗୋପାଳପୁର ବନ୍ଦର ସ୍ଥାନରେ ଖ୍ରୀଷ୍ଟପୂର୍ବ ସମୟରୁ ଆଫେଟେରିଆନ୍ ବନ୍ଦର ଥିଲା ବୋଲି ଉଲ୍ଲେଖ କରିଛନ୍ତି । ଏହି ବନ୍ଦରକୁ ୧୯୮୬ ମସିହାରେ ଏକ ଋତୁଭିତ୍ତିକ କ୍ଷୁଦ୍ର ବନ୍ଦର ଭାବେ ରାଜ୍ୟ ସରକାର କାର୍ଯ୍ୟକାରୀ କରିଥିଲେ । ବର୍ଷର ନିର୍ଦ୍ଦିଷ୍ଟ ଋତୁରେ ଗୋପାଳପୁର ବନ୍ଦରରୁ ଯାନ୍ତ୍ରିକ ପୋତରେ ପଣ୍ୟଦ୍ରବ୍ୟକୁ ସମୁଦ୍ରରେ ଅପେକ୍ଷା କରିଥିବା ବଡ ଜାହାଜରେ ବୋଝେଇ କରାଯାଉଥିଲା । ପରେ ୨୦୦୬ ମସିହାରେ ବନ୍ଦରର ନିର୍ମାଣ, ପରିଚାଳନା ଓ ଚୁକ୍ତି ଅନୁସାରେ ହସ୍ତାନ୍ତର ନୀତିରେ ଗୋପାଳପୁର ପୋର୍ଟସ୍ ଲିମିଟେଡ୍‌କୁ ସୁଯୋଗ ଦିଆଯାଇଥିଲା । ଏହି ଚୁକ୍ତି ଅନୁସାରେ ବନ୍ଦର ପରିଚାଳନା ଆରମ୍ଭ ହେବାର ଦଶମ ବର୍ଷରେ କମ୍ପାନି ନିଜ ଆୟର ୭.୫% ଅର୍ଥ ରାଜ୍ୟ ସରକାରଙ୍କୁ ଦେବା ପାଇଁ ସ୍ଥିର ହୋଇଥିଲା । ୨୦୦୬ ମସିହାରେ ଆରମ୍ଭ ହୋଇଥିବା ଗୋପାଳପୁର ବନ୍ଦର ପ୍ରକଳ୍ପ ୨୦୦୯-୧୦ ଆର୍ଥିକ ବର୍ଷରେ ୪,୯୯,୦୭୭.୯୮୦ ମେଟ୍ରିକ ଟନ୍ ପଣ୍ୟଦ୍ରବ୍ୟ କାରବାର କରିଥିଲା । ମାତ୍ର କ୍ରମାଗତ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ବନ୍ଦରର ବିକାଶ ବାଧାପ୍ରାପ୍ତ ହେଲା । ପୁନଶ୍ଚ ୨୦୧୬ ମସିହାରେ ବନ୍ଦର ପରିଚାଳନାରେ ପରିବର୍ତ୍ତନ ହେଲା ଓ ଅର୍ଥ ବିନିଯୋଗର ୫୧% ଅଂଶ ନେଇ ସାପୁର୍ଜୀ ପାଲୋଂଜୀ ବ୍ୟବସାୟିକ ସଂସ୍ଥା ବନ୍ଦରକୁ କାର୍ଯ୍ୟକ୍ଷମ କରିବା ପାଇଁ ଚେଷ୍ଟା କରୁଛନ୍ତି । ସମୁଦାୟ ତିନୋଟି ଉନ୍ନତ ମାନର ବର୍ଥ ନିର୍ମାଣ ପାଇଁ ଯୋଜନା ହୋଇଛି । ଗୋପାଳପୁର ବନ୍ଦରର ବାର୍ଷିକ ପଣ୍ୟଦ୍ରବ୍ୟ କାରବାର କ୍ଷମତାକୁ କୋଡିଏ ନିୟୁତ ମେଟ୍ରିକ ଟନ୍ ରୂପେ ଆକଳନ କରାଯାଇଛି । ଏହି ବନ୍ଦର ଅଧିକ କ୍ରିୟାଶୀଳ ହେଲେ, ଓଡିଶାର ଅନ୍ୟତମ ସଫଳ ବନ୍ଦର ଭାବେ ପରିଗଣିତ ହେବ ।

ପ୍ରସ୍ତାବିତ ଚୁଡାମଣି ଓ ବରୁଣେଇ ବନ୍ଦର ମଧ୍ୟରେ ଧାମରା ବନ୍ଦର ଅବସ୍ଥିତ । ୧୯୯୭ ମସିହାରେ ଇଣ୍ଟର ନାସନାଲ ସି ପୋର୍ଟସ୍ ଲିମିଟେଡ୍ ସହିତ ବନ୍ଦର ବିକାଶ ତଥା ପରିଚାଳନା ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା ଚୁକ୍ତି ହୋଇଥିଲା । ପରେ ଟାଟା ଷ୍ଟିଲ୍ କମ୍ପାନି ଓ ଧାମରା ପୋର୍ଟ କମ୍ପାନି ଉଭୟ ୫୦% ଅଂଶଧନ ଭିତ୍ତିରେ ବନ୍ଦର ବିକାଶ ନିମିତ୍ତ କାର୍ଯ୍ୟ କରିବାକୁ ଅନୁମତି ପାଇଥିଲେ । ଲାର୍ସନ୍ ଏଣ୍ଡ ଟ୍ୟୁବ୍ରୋ କମ୍ପାନି ଓ ଟିସ୍‌କୋ ପ୍ରାରମ୍ଭରେ ୩୨୩୯ କୋଟି ଟଙ୍କାରେ ବନ୍ଦର ବିକାଶ ପ୍ରକଳ୍ପ ଆରମ୍ଭ କରିଥିଲେ । ଧାମରା ବନ୍ଦର ନିମିତ୍ତ ଭଦ୍ରକରୁ ୬୨ କିଲୋମିଟର ଦୈର୍ଘ୍ୟ ରେଳପଥ ନିର୍ମାଣ ହୋଇସାରିଛି । ୨୦୧୧ ମସିହାରେ ଧାମରା ପୋର୍ଟ କମ୍ପାନି ତିନୋଟି ଉନ୍ନତ ବର୍ଥରେ ପଣ୍ୟଦ୍ରବ୍ୟ କାରବାର କରିଥିଲେ । ବନ୍ଦରର ବାର୍ଷିକ ପଣ୍ୟଦ୍ରବ୍ୟ କାରବାର କ୍ଷମତା ୧୨ ନିୟୁତ ମେଟ୍ରିକ ଟନ୍ ରହିଛି । ୨୦୧୪ ମସିହାରେ ଆଦାନି କମ୍ପାନି ରାଜ୍ୟ ସରକାରଙ୍କ ସହ ଚୁକ୍ତି କଲା ପରେ ଗୋପାଳପୁର ବନ୍ଦରର ପରିଚାଳନା ଦାୟିତ୍ୱ ନେଇଛନ୍ତି । ଏହି ବନ୍ଦରରେ ୧୫ଟି ବର୍ଥ ନିର୍ମାଣ ଯୋଜନା ରହିଛି ଓ ବାର୍ଷିକ ପଣ୍ୟଦ୍ରବ୍ୟ କାରବାର

କ୍ଷମତାକୁ ୧୦୦ ନିୟୁତ ଟନ୍‌କୁ ବୃଦ୍ଧି କରିବାକୁ ସ୍ଥିର ହୋଇଛି । ଧାମରା ବନ୍ଦର କ୍ରମଶଃ ଅଧିକ କ୍ରିୟାଶୀଳ ହୋଇ ସମସ୍ତ ପ୍ରକାର ପଣ୍ୟଦ୍ରବ୍ୟ କାରବାର ନିମିତ୍ତ ପ୍ରସ୍ତୁତ ହେଉଛି । ବନ୍ଦରର ପ୍ରାକୃତିକ ଗଭୀରତା, ଉନ୍ନତ ଗମନାଗମନ ସୁବିଧା ଓ ପାଶ୍ଚାତ୍ ଭୂମିରେ ବହୁ ରପ୍ତାନିଯୋଗ୍ୟ ପଣ୍ୟଦ୍ରବ୍ୟ ଥିବାରୁ ଏହି ବନ୍ଦର ଭବିଷ୍ୟତରେ ଭାରତର ଅନ୍ୟତମ ସଫଳ ବନ୍ଦର ହୋଇପାରିବ ।

ସାମଗ୍ରିକ ଭାବେ ବିବେଚନା କଲେ ପାରାଦ୍ୱୀପ, ଗୋପାଳପୁର, ଧାମରା ବନ୍ଦର ସହ ଅନ୍ୟ ପ୍ରସ୍ତାବିତ ବାରଟି ବନ୍ଦର କାର୍ଯ୍ୟକାରୀ ହେଲେ, ସମଗ୍ର ଭାରତବର୍ଷରେ ଓଡିଶା ସବୁଠାରୁ ସମୃଦ୍ଧ ନୌବାଣିଜ୍ୟିକ ରାଜ୍ୟରୂପେ ପ୍ରତିଷ୍ଠା ଲାଭ କରିପାରିବ । ୨୦୨୫ ମସିହା ବେଳକୁ ଓଡିଶାର ୪୮୦ କିଲୋମିଟର ବ୍ୟାପୀ ଉପକୂଳରେ ଥିବା ପନ୍ଦରଟି ବନ୍ଦର ୪୦୦ ନିୟୁତ ମେଟ୍ରିକ ଟନ୍ ପଣ୍ୟଦ୍ରବ୍ୟ କାରବାର କରି କଳିଙ୍ଗର ପୂର୍ବ ନୌବାଣିଜ୍ୟ ରୂପକ କର୍ପୂରକୁ ସଫଳ ରୂପେ ଫେରାଇ ଆଣିବାକୁ ସମର୍ଥ ହେବେ ।

'ଆତିଥ୍ୟ', ସତ୍ୟସାଇ ଏନ୍‌କ୍ଲେଭ
ଲେନ୍ – ୨୨, କୋଳଥିଆ, ଖଣ୍ଡଗିରି
ଭୁବନେଶ୍ୱର–୭୫୧୦୩୦

# ଚାଚା ନେହେରୁ

**ଆରତିରାଣୀ ଡାକୁଆ**

ଆସିଛିରେ ଆଜି ଶିଶୁ ଦିବସ
ସବୁ ଶିଶୁ ମନେ ବୁଣି ହରଷ ।
ଆଜି ଏ ଦିବସେ ଶିଶୁଏଁ ସ୍ମରୁଁ
ଜୟ ଜୟ ଆମ ଚାଚା ନେହେରୁ ।
ତବ ସ୍ନେହ ଶ୍ରଦ୍ଧା ତବ ଆଶିଷ
ଭରୁ ଆମ୍ଭ ମନେ ଚିର ସୁବାସ ।
ସ୍ୱାଧୀନତା ପଥେ କରି ସଂଗ୍ରାମ
ରଖିଗଲ ଚିର ଅମର ନାମ ।
ହଟାଇଲ ଆମ ଦେଶୁଁ ବିଦେଶୀ
ସତେକି ଉଇଁଲା ନବୀନ ଶଶୀ ।
ଆମ ଜନ୍ମଭୂମି ଲଭିଲା ମୁକ୍ତି
ହୋଇଲ ପ୍ରଥମ ପ୍ରଧାନମନ୍ତ୍ରୀ ।
ଦେଇଗଲ ଦେଶେ ନବ ବାରତା
ରହିଗଲା ହୋଇ ଅଲିଭା ଗାଥା ।



ତୁମ୍ଭରି ଆଦର୍ଶ ଅନୁକରଣେ
ପ୍ରେରଣା ଜାଗୁ ହେ ଆମରି ପ୍ରାଣେ ।
ତୁମରି ସୁଗୁଣ ତୁମ ସୁକର୍ମ
ଅନୁସରି ହେଉ ଜୀବନ ଧନ୍ୟ ।
ଦେଶବ୍ୟାପୀ ଶୁଭୁ ଚାଚା ନେହେରୁ
ଆଦର୍ଶ ତବ ସର୍ବ ହୃଦୟେ ଭରୁ ।
ଅମର ଆତ୍ମାର ସଦ୍‌ଗତିରେ
ବିଭୁ ପାଦେ ଆମ ପ୍ରଣତି ଝରେ ।
ଦେଶ ରକ୍ଷା ପଥେ ବଳୁ ଏ ମନ
ଆତ୍ମ ବଳିଦାନେ ହେଉଁ ମହାନ ।

ପ୍ରଧାନ ଶିକ୍ଷୟିତ୍ରୀ
ବାନ୍ଧନବାଡି ସରକାରୀ ନୂତନ ଉ.ପ୍ରା.ବିଦ୍ୟାଳୟ
ପୋ: ମାୟାବରା, ଜି: ବଲାଙ୍ଗୀର–୭୬୭୦୪୮

# ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ବିଭାଗ

**ଶିଳ୍ପ ତାଲିମ ପ୍ରତିଷ୍ଠାନ (ଆଇ.ଟି.ଆଇ.) ସଂକ୍ରାନ୍ତୀୟ ତଥ୍ୟ**

| ବର୍ଷ | ଶିଳ୍ପ ତାଲିମ ପ୍ରତିଷ୍ଠାନ | ଛାତ୍ରଛାତ୍ରୀ ସଂଖ୍ୟା | ମନ୍ତବ୍ୟ |
|---|---|---|---|
| ୨୦୦୦-୦୧ | ୨୩ | ୩୬୫୬ | |
| ୨୦୧୬-୧୭ | ୪୮ | ୨୮୯୦୬ | ସମସ୍ତ ଅନୁଷ୍ଠାନ ଏନ୍.ସି.ଭିଟି ଅନୁବନ୍ଧିତ |

**ମୁଖ୍ୟାଂଶ**

- ୨୦୧୪-୧୫ ବର୍ଷରେ ୫ଟି ଆଇ.ଟି.ଆଇ. ରାସନପୁର, ବାରକୋଟ, ମୈଥିଲୀ, ବିସମ କଟକ ଓ ରାୟଗଡ (ଗଜପତି)ଠାରେ ପ୍ରତିଷ୍ଠିତ ହୋଇଅଛି ।
- ୨୦୧୭-୧୮ ଓ ୨୦୧୮-୧୯ ଆର୍ଥିକ ବର୍ଷରେ ୨୧ଟି ଆଇ.ଟି.ଆଇ. ୧) କଣ୍ଟାବାଞ୍ଜି ୨) ବାଂଶପାଳ ୩) ଭଣ୍ଡାରୀପୋଖରୀ ୪) କରଞ୍ଜିଆ ୫) ଆଠମଲ୍ଲିକ ୬) କୋଟଗଡ ୭) ଦାମନେଯୋଡି ୮) କୁତ୍ରା ୯) କୋଇଡା ୧୦) ଲାଞ୍ଜିଗଡ ୧୧) କୃଷ୍ଣପ୍ରସାଦ ୧୨) ନନ୍ଦପୁର ୧୩) ବୀରମହାରାଜପୁର ୧୪) ରାଜକନିକା ୧୫) ବଡମ୍ବା ୧୬) ଭଞ୍ଜନଗର ୧୭) ଜଗତସିଂହପୁର ୧୮) କପ୍ତିପଦା (ଉଦଳା) ୧୯) ପରଜଙ୍ଗ ୨୦) ବାଲୁଗାଁ ୨୧) କୋଟପାଡଠାରେ ପ୍ରତିଷ୍ଠା ହେବା ପାଇଁ ବ୍ୟବସ୍ଥା ହୋଇସାରିଛି ।
- ଖୋର୍ଦ୍ଧା ଜିଲ୍ଲା ଜଟଣୀ (ଖୁଦପୁର)ଠାରେ ଦିବ୍ୟାଙ୍ଗମାନଙ୍କ ପାଇଁ ଏକ ଆବାସିକ ସ୍ୱତନ୍ତ୍ର ଶିଳ୍ପତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଛି । ଏହା ଗତବର୍ଷଠାରୁ କାର୍ଯ୍ୟକ୍ଷମ ହୋଇଅଛି ।
- ଚଳିତ ବର୍ଷରୁ ଏହି ପାଠ୍ୟକ୍ରମରେ ପ୍ରଥମ ଥର ପାଇଁ ନାମଲେଖା ଅନ୍‌ଲାଇନ ମାଧ୍ୟମରେ କରାଯିବା ପାଇଁ ନିଷ୍ପତ୍ତି ନିଆଯାଇଛି । ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ତରରେ ଜନଜାତି/ଦିବ୍ୟାଙ୍ଗ ଛାତ୍ରଛାତ୍ରୀମାନଙ୍କୁ ପ୍ରାଧାନ୍ୟ ଦିଆଯାଇ ଏହି ପାଠ୍ୟକ୍ରମରେ ନାମ ଲେଖାଇବା ପାଇଁ ପ୍ରବର୍ତ୍ତା ଯାଉଛି । ଏହି ଅନୁଷ୍ଠାନଗୁଡିକରେ ୫୨ ଗୋଟି ଛାତ୍ରାବାସ ଓ ୩୨ ଗୋଟି ଛାତ୍ରୀନିବାସରେ ଯଥାକ୍ରମେ ୪୯୭୯ ଛାତ୍ର ଓ ୧୮୭୪ ଛାତ୍ରୀମାନଙ୍କର ରହିବାର ବନ୍ଦୋବସ୍ତ କରାଯାଇଅଛି ।
- ମୁଖ୍ୟ ତାଲିମ-ନିଯୁକ୍ତି କେନ୍ଦ୍ର- ଏହା ୨୦୧୪-୧୫ ବର୍ଷଠାରୁ କାର୍ଯ୍ୟକ୍ଷମ ହୋଇ ୮୬୦୧ ଜଣ ଆଇ.ଟି.ଆଇ. ଛାତ୍ରଛାତ୍ରୀଙ୍କୁ ନିଯୁକ୍ତି ବ୍ୟବସ୍ଥା ପ୍ରଦାନ କରିଛି ।

- ଆଇ.ଟି.ଆଇ. ଶିକ୍ଷାର ଗୁଣବତ୍ତା/ମାନବୃଦ୍ଧି ଓ ଛାତ୍ରଛାତ୍ରୀ ତଥା କର୍ମଚାରୀଙ୍କର ଶୃଙ୍ଖଳା ଓ ସମୟାନୁବର୍ତ୍ତୀତା ନିମନ୍ତେ ଅନୁଷ୍ଠାନଗୁଡିକର ପାଠ୍ୟଗତ ତଦାରଖ, ଉତ୍କୃଷ୍ଟତା କ୍ରମ ପ୍ରଦ୍ଧତି, ମାସିକ ମାସିକ ପରୀକ୍ଷା, ସାମାଜିକ ଗଣମାଧ୍ୟମ ଜରିଆରେ ମାସିକ ବିଶ୍ଲେଷଣ, ଆଦର୍ଶ ବ୍ୟକ୍ତିତ୍ୱଙ୍କ ଦ୍ୱାରା ଅନୁପ୍ରାଣିତ ହେବାର ସୁଯୋଗ ଓ ବିଶିଷ୍ଟ ଘଟଣା ଉପସ୍ଥାପନା ଇତ୍ୟାଦି ପ୍ରଚଳନ କରାଯାଇଛି ।
- Teach For Odisha- Fellowship Programme ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ଉଚ୍ଚସ୍ତରୀୟ ମାର୍ଗଦର୍ଶନ ବ୍ୟବସ୍ଥାର ପ୍ରଚଳନ ସରକାର ଅନୁମୋଦନ କରିଛନ୍ତି । ଏଥିରେ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ Lend-a-Hand India ମାଧ୍ୟମରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଇଅଛି ।
- ଶିକ୍ଷକମାନଙ୍କର ଉଚ୍ଚତର ପ୍ରଶିକ୍ଷଣ ପାଇଁ ୨୦୧୬–୧୭ ବର୍ଷରେ ତାଳଚେରଠାରେ ବିଜୁ ପଟ୍ଟନାୟକ ପ୍ରଶିକ୍ଷକ ତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇ ପ୍ରଶିକ୍ଷଣ ଆରମ୍ଭ ହୋଇଯାଇଛି । ଏତଦ୍‌ବ୍ୟତୀତ DGT, New Delhi ଦ୍ୱାରା ପରିଚାଳିତ ଶିକ୍ଷାନୁଷ୍ଠାନମାନଙ୍କରେ ୩୬୫ ଜଣ ସହକାରୀ ଟ୍ରେନିଂ ଶିକ୍ଷକମାନଙ୍କୁ ତାଲିମ ପ୍ରଦାନ କରାଯାଇଛି ।
- ରାଜ୍ୟ ସରକାର ଭୁବନେଶ୍ୱର, ବ୍ରହ୍ମପୁର, ରାଉରକେଲା, ଝାରସୁଗୁଡା, ଟିଟିଲାଗଡ ଏବଂ ଜୟପୁରଠାରେ ୧,୦୫୦ କୋଟି ଟଙ୍କାର ବ୍ୟୟବରାଦ ଜରିଆରେ ୬ଗୋଟି ବିଶ୍ୱସ୍ତରୀୟ ଅତ୍ୟାଧୁନିକ ଦକ୍ଷତା ବିକାଶ ଅନୁଷ୍ଠାନ ପ୍ରତିଷ୍ଠା ନିମନ୍ତେ ନିଷ୍ପତ୍ତି ନେଇଛନ୍ତି । ଏଥିରେ Asian Development Bank ୬୮୨.୫୦ କୋଟି ଋଣସୂତ୍ରରେ ସହାୟତା କରୁଛନ୍ତି ଓ ବଳକା ୩୬୭.୫୦ କୋଟି ରାଜ୍ୟ ସରକାର ବହନ କରିବେ । ଏହି ଅତ୍ୟାଧୁନିକ ଦକ୍ଷତା ବିକାଶ ଅନୁଷ୍ଠାନଗୁଡିକ ୩୦ଗୋଟି ଆଇ.ଟି.ଆଇ.କୁ Hub ଏବଂ Spoke ମଡେଲ ଜରିଆରେ ମାର୍ଗଦର୍ଶନ କରିବ ।

**ପଲିଟେକ୍‌ନିକ୍/ଯାନ୍ତ୍ରୀକ ବିଦ୍ୟାଳୟ, ବିଦ୍ୟାଳୟ ସଂକ୍ରାନ୍ତୀୟ ତଥ୍ୟ**

| ବର୍ଷ | ପଲିଟେକ୍‌ନିକ୍ ସଂଖ୍ୟା | ଛାତ୍ରଛାତ୍ରୀ ସଂଖ୍ୟା |
|---|---|---|
| ୨୦୦୦–୦୧ | ୧୩ | ୩୦୧୫ |
| ୨୦୧୬–୧୭ | ୩୫ | ୮୭୭୫ |

- ରାଜ୍ୟର ସମସ୍ତ ଜିଲ୍ଲାଗୁଡିକରେ ଯାନ୍ତ୍ରୀକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି ।
- ରାଜ୍ୟ ସରକାର ଏହି ଅନୁଷ୍ଠାନଗୁଡିକ ପାଇଁ ୨୨୯ ଗୋଟି ଶିକ୍ଷକ ପଦବୀ ନିଯୁକ୍ତି ନିମନ୍ତେ ଅନୁମତି ପ୍ରଦାନ କରିଛନ୍ତି ଓ ଓଡ଼ିଶା ଲୋକସେବା ଆୟୋଗ ଜରିଆରେ ନିଯୁକ୍ତି ନିମନ୍ତେ ସୁପାରିଶ କରାଯାଇଛି ।
- ଓଡ଼ିଶା ଷ୍ଟାଫ୍ ସିଲେକ୍‌ସନ କମିଶନ ଜରିଆରେ ୪୪୯ ଗୋଟି Asst. Training Officer ଚୟନ ନିମନ୍ତେ ସୁପାରିଶ କରାଯାଇଛି ।

**ଛାତ୍ରମଙ୍ଗଳକାରୀ ଯୋଜନା**

- ଜନଜାତି, ଉପଜାତି ଛାତ୍ରୀ ଏବଂ ଦିବ୍ୟାଙ୍ଗ ଛାତ୍ରଛାତ୍ରୀମାନଙ୍କ ପାଇଁ ଶିଳ୍ପ ତାଲିମ ଅନୁଷ୍ଠାନ ଓ ଯାନ୍ତ୍ରୀକ ବିଦ୍ୟାଳୟରେ ଟ୍ୟୁସନ ଫି'ଛାଡ କରାଯାଇଛି ।
- ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନର ଦିବ୍ୟାଙ୍ଗ ଛାତ୍ରଛାତ୍ରୀମାନଙ୍କ ପାଇଁ ଦେୟ ମୁକ୍ତ ତାଲିମ ନିମନ୍ତେ ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ଆର୍ଥିକ ସହାୟତା ପ୍ରଦାନର ବ୍ୟବସ୍ଥା କରିଛନ୍ତି ।

- କୋଠା ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକମାନଙ୍କ ସନ୍ତାନ ସନ୍ତତିଙ୍କ ନିମନ୍ତେ କୋଠା ଓ ନିର୍ମାଣ ଶ୍ରମିକ ପରିଷଦ ଦ୍ୱାରା ଶିକ୍ଷା ଖର୍ଚ୍ଚ ବହନ କରିବାର ବନ୍ଦୋବସ୍ତ କରାଯାଇଛି । ଆଜି ସୁଦ୍ଧା ୭୮୦ ଜଣ ଛାତ୍ରୀମାନଙ୍କୁ ଏହି ଯୋଜନାର ପରିସରଭୁକ୍ତ କରାଯାଇଛି ।
- ମେଧା ବୃତ୍ତି ରାଶିକୁ ମାସିକ ୫୫ ଟଙ୍କାରୁ ୨୫୦ ଟଙ୍କାକୁ ବୃଦ୍ଧି କରାଯାଇଛି ।
- ମେଧା ତଥା ଦାରିଦ୍ର୍ୟ ବୃତ୍ତି ରାଶିକୁ ମାସିକ ୫୦ ଟଙ୍କାରୁ ୨୫୦ ଟଙ୍କା ଏବଂ ୨୦୦ ଟଙ୍କାରୁ ୩୦୦ ଟଙ୍କାକୁ ଯଥାକ୍ରମେ ଶିଳ୍ପ ତାଲିମ ଅନୁଷ୍ଠାନ ଓ ଯାନ୍ତ୍ରୀକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ପାଇଁ ବୃଦ୍ଧି କରାଯାଇଛି । ୨୦୧୬-୧୭ ଶିକ୍ଷା ବର୍ଷରେ ୧୦୧୩ ଜଣ ଶିଳ୍ପ ତାଲିମ ଅନୁଷ୍ଠାନ ଓ ଯାନ୍ତ୍ରିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଏହି ବୃତ୍ତି ପ୍ରଦାନ କରାଯାଇଛି ।
- ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନଗୁଡିକରେ ଛାତ୍ରଛାତ୍ରୀମାନଙ୍କ ପାଇଁ ଡ୍ରେସ୍ କୋଡ୍ ନିୟମ ପ୍ରଚଳନ କରାଯାଇଛି ଏବଂ ଏଥିପାଇଁ ପ୍ରତ୍ୟେକ ପ୍ରଶିକ୍ଷାର୍ଥୀଙ୍କୁ ୩୦୦୦ ଟଙ୍କା ବ୍ୟାଙ୍କ ପାସ୍‌ବୁକ୍ ମାଧ୍ୟମରେ ପ୍ରଦାନ କରାଯାଇଛି ।
- ଛାତ୍ରଛାତ୍ରୀଙ୍କ ପିତାମାତା ଅଥବା ଆର୍ଥିକ ଅଭିଭାବକଙ୍କ ମୃତ୍ୟୁ ଘଟିଲେ ୨୦୦୬ ମସିହାରୁ କାର୍ଯ୍ୟକାରୀ ହୋଇଥିବା ଛାତ୍ରଛାତ୍ରୀ ମଙ୍ଗଳ ଯୋଜନା ଜରିଆରେ ଛାତ୍ରଛାତ୍ରୀଙ୍କ ଡିପ୍ଲୋମା ପାଠ୍ୟକ୍ରମ ସରିବା ପର୍ଯ୍ୟନ୍ତ ସହାୟତା ରାଶି ପ୍ରଦାନ କରାଯାଉଛି । ଡିପ୍ଲୋମା ସେମିଷ୍ଟାର ପରୀକ୍ଷାରେ ଶୀର୍ଷ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ୬୦୦୦ ଟଙ୍କାର ମେଧା ବୃତ୍ତି ରାଶି ପ୍ରଦାନ କରାଯିବାର ପ୍ରଥା ପ୍ରଚଳନ କରାଯାଇଛି । ଅଦ୍ୟାବଧି ୧୧୦୯ ଜଣ ଛାତ୍ର/ଛାତ୍ରୀଙ୍କୁ ଉକ୍ତ ଯୋଜନା ମାଧ୍ୟମରେ ୬୪.୫୪ ଲକ୍ଷ ଟଙ୍କା ପ୍ରଦାନ କରାଯାଇଛି ।
- ପଲିଟେକ୍‌ନିକ୍ ଓ ଆଇ.ଟି.ଆଇ.ର ଭିତ୍ତିଭୂମି ବିକାଶ ପାଇଁ ବ୍ୟୟବରାଦ ।

(ଟଙ୍କା, କୋଟିରେ)

| ବର୍ଷ | ପଲିଟେକ୍‌ନିକ୍ | ଆଇ.ଟି.ଆଇ. | ମୋଟ |
|---|---|---|---|
| ୨୦୧୪-୧୫ | ₹ ୮୦.୦୦ | ₹ ୭୨.୨୦ | ₹୧୫୨.୨୦ |
| ୨୦୧୫-୧୬ | ₹୧୩୦.୦୦ | ₹୧୧୦.୦୦ | ₹୨୪୦.୦୦ |
| ୨୦୧୬-୧୭ | ₹୭୫.୦୦ | ₹୯୬.୦୦ | ₹୧୭୧.୦୦ |
| ୨୦୧୭-୧୮ | ₹୧୦୦.୦୦ | ₹୯୭.୦୦ | ₹୧୯୭.୦୦ |
| ମୋଟ | ₹୩୮୫.୦୦ | ₹୩୭୫.୦୦ | ₹୩୬୦.୦୦ |

**ଯାନ୍ତ୍ରୀକ/ବୈଷୟିକ ମହାବିଦ୍ୟାଳୟର ସ୍ଥାନ ସଂଖ୍ୟା ଓ ନାମଲେଖା ତଥ୍ୟ**

- ଛାତ୍ରଛାତ୍ରୀ ସଂଖ୍ୟା ଇଂଜିନିୟରିଂ (ସ୍ନାତକ)

| କ୍ରମିକ ସଂଖ୍ୟା | କଲେଜ/ ବିଶ୍ୱବିଦ୍ୟାଳୟ ନାମ | ୨୦୧୩-୧୪ | | ୨୦୧୪-୧୫ | | ୨୦୧୫-୧୬ | | ୨୦୧୬-୧୭ | |
|---|---|---|---|---|---|---|---|---|---|
| | | ସ୍ଥାନ ସଂଖ୍ୟା | ନାମଲେଖା | ସ୍ଥାନ ସଂଖ୍ୟା | ନାମଲେଖା | ସ୍ଥାନ ସଂଖ୍ୟା | ନାମଲେଖା | ସ୍ଥାନ ସଂଖ୍ୟା | ନାମଲେଖା |
| ୧ | ଭି.ଏସ.ଏସ.ୟୁ.ଟି, | ୨୪୦ | | | | | | ୮୮୦ | ୮୮୦ |
| ୨ | ସି.ଇ.ଟି | ୭୯୦ | ୬୫୩ | ୭୯୦ | ୬୫୩ | ୮୭୦ | ୮୧୯ | ୮୭୦ | ୭୧୯ |
| ୩ | ପି.ଏମ.ଇ.ସି | ୨୪୦ | ୨୧୮ | ୬୦୦ | ୫୩୬ | ୭୯୦ | ୫୪୯ | ୭୨୦ | ୫୬୧ |
| ୪ | ଜି.ସି.ଇ., କେଉଁଝର | ୧୯୦ | ୧୬୫ | ୧୯୦ | ୧୬୩ | ୪୨୦ | ୩୬୫ | ୪୨୦ | ୩୫୭ |
| ୫ | ଜି.ସି.ଇ., କଳାହାଣ୍ଡି | ୨୪୦ | ୧୯୪ | ୨୪୦ | ୧୯୮ | ୩୦୦ | ୨୪୮ | ୩୧୮ | ୨୩୪ |
| ୬ | ଆଇ.ଜି.ଆଇ.ଟି, ସରାଙ୍ଗ | | ୪୫୩ | | ୮୩୪ | | ୯୧୦ | | ୯୪୯ |

● ଛାତ୍ରଛାତ୍ରୀ ସଂଖ୍ୟା ଇଂଜିନିୟରିଂ (ସ୍ନାତକୋତ୍ତର)

| କ୍ରମିକ ସଂଖ୍ୟା | କଲେଜ/ ବିଶ୍ୱବିଦ୍ୟାଳୟ ନାମ | ୨୦୧୬-୧୭ | |
|---|---|---|---|
| | | ସ୍ଥାନ ସଂଖ୍ୟା | ନାମଲେଖା |
| ୧ | ବି.ପି.ୟୁ.ଟି | ୧୮୦ | ୧୮୦ |
| ୨ | ଭି.ଏସ.ଏସ.ୟୁ.ଟି, | ୪୦୮ | ୩୧୮ |
| ୩ | ସି.ଇ.ଟି | ୩୨୬ | ୨୫୦ |
| ୪ | ଆଇ.ଜି.ଆଇ.ଟି, ସରାଙ୍ଗ | | ୩୮୨ |

**ଶିକ୍ଷକ ନିଯୁକ୍ତି ସଂକ୍ରାନ୍ତୀୟ ତଥ୍ୟ**

ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟ, ବୀର ସୁରେନ୍ଦ୍ର ସାଏ ବୈଷୟିକ ବିଶ୍ୱବିଦ୍ୟାଳୟ ଏବଂ ସମସ୍ତ ସରକାରୀ ଇଂଜିନିୟରିଂ କଲେଜଗୁଡ଼ିକରେ ଖାଲିଥିବା ପ୍ରଫେସର, ଆସୋସିଏଟ୍ ପ୍ରଫେସର ଏବଂ ଆସିଷ୍ଟାଣ୍ଟ ପ୍ରଫେସର ପଦବୀଗୁଡ଼ିକ ପୂରଣ ନିମନ୍ତେ ସରକାର ଅନୁମୋଦନ ପ୍ରଦାନ କରିଛନ୍ତି । ୨୦୧୬–୧୭ ଓ ୨୦୧୭–୧୮ ବର୍ଷରେ ନିମ୍ନଲିଖିତ ପଦବୀଗୁଡ଼ିକ ପୂରଣ କରାଯାଇଛି ।

| କ୍ରମିକ ସଂଖ୍ୟା | କଲେଜ/ ବିଶ୍ୱବିଦ୍ୟାଳୟ ନାମ | ପ୍ରଫେସର | ଆସୋସିଏଟ୍ ପ୍ରଫେସର | ଆସିଷ୍ଟାଣ୍ଟ ପ୍ରଫେସର | ମୋଟ |
|---|---|---|---|---|---|
| ୧ | ଭି.ଏସ.ଏସ.ୟୁ.ଟି, | ୦୨ | ୨୮ | ୭୦ | ୧୦୦ |
| ୨ | ବି.ପି.ୟୁ.ଟି ଓ ଅନ୍ୟାନ୍ୟକଲେଜ | -- | -- | ୪୭ | ୪୭ |
| | ମୋଟ | ୦୨ | ୨୮ | ୧୧୭ | ୧୪୭ |

**ବୈଷୟିକ ବିଶ୍ୱବିଦ୍ୟାଳୟ ଓ ଇଂଜିନିୟରିଂ କଲେଜଗୁଡ଼ିକର ଭିତ୍ତିଭୂମି ବିକାଶ ନିମନ୍ତେ ବ୍ୟୟବରାଦ**

ବିଗତ ୪ବର୍ଷରେ ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟ, ବୀର ସୁରେନ୍ଦ୍ର ସାଏ ବୈଷୟିକ ବିଶ୍ୱବିଦ୍ୟାଳୟ ଓ ୫ଗୋଟି ସରକାରୀ ଇଂଜିନିୟରିଂ କଲେଜଗୁଡ଼ିକର ଭିତ୍ତିଭୂମି ବିକାଶ ନିମନ୍ତେ ୪୧୫.୭୫ କୋଟି ଟଙ୍କା ପ୍ରଦାନ କରାଯାଇଛି । ଏହାର ଏକ ବର୍ଷୱାରୀ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

| ଆର୍ଥିକ ବର୍ଷ | ବ୍ୟୟ ବରାଦ(କୋଟିରେ) |
|---|---|
| ୨୦୧୪-୧୫ | ₹୧୦୦.୭୫ |
| ୨୦୧୫-୧୬ | ₹୧୭୦.୦୦ |
| ୨୦୧୬-୧୭ | ₹୭୫.୦୦ |
| ୨୦୧୭-୧୮ | ₹୭୦.୦୦ |
| ମୋଟ | ₹୪୧୫.୭୫ |

**ନିଯୁକ୍ତି ନିର୍ଦ୍ଦେଶାଳୟ ସଂକ୍ରାନ୍ତୀୟ ତଥ୍ୟ**

➢ **ଦକ୍ଷତା ବିକାଶ କେନ୍ଦ୍ର ସଂକ୍ରାନ୍ତୀୟ ତଥ୍ୟ**

୧. ପ୍ରତିଷ୍ଠା ହେବାକୁ ଥିବା ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା–୩୨

୨. ପ୍ରତିଷ୍ଠା ହୋଇଥିବା ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା– ୨୨

୩. କାର୍ଯ୍ୟକ୍ଷମ ଓ ତାଲିମ ଆରମ୍ଭ ହୋଇଥିବା ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା–୧୩

➢ **ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂକ୍ରାନ୍ତୀୟ ତଥ୍ୟ**

୧. ପ୍ରତିଷ୍ଠା ହେବାକୁ ଥିବା ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା–୪୦

୨. ପ୍ରତିଷ୍ଠା ହୋଇଥିବା ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା–୧୪

୩. କାର୍ଯ୍ୟକ୍ଷମ ଓ ତାଲିମ ଆରମ୍ଭ ହୋଇଥିବା ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା –୧୩

➢ **ନିଯୁକ୍ତି ଜଡିତ ତାଲିମ କାର୍ଯ୍ୟକ୍ରମ ପ୍ରକଳ୍ପ ନିର୍ବାହକାରୀ ସଂସ୍ଥା ସମ୍ବନ୍ଧୀୟ ତଥ୍ୟ**

୧. ପ୍ରକଳ୍ପ ନିର୍ବାହକାରୀ ସଂସ୍ଥା ୨୦୧୭–୧୮ର ସଂଖ୍ୟା– ୨୩

୨. ପ୍ରଶିକ୍ଷଣ ଏବଂ ନିଯୁକ୍ତିପ୍ରାପ୍ତ ଯୁବକ/ଯୁବତୀଙ୍କ ସଂଖ୍ୟା:–

| କ୍ର.ସଂ | ଆର୍ଥିକ ବର୍ଷ | ପ୍ରକଳ୍ପ ନିର୍ବାହି ସଂସ୍ଥା | ତାଲିମପ୍ରାପ୍ତ ଯୁବକ/ଯୁବତୀଙ୍କ ସଂଖ୍ୟା | ନିୟୋଜିତ ଯୁବକ/ଯୁବତୀଙ୍କ ସଂଖ୍ୟା |
|---|---|---|---|---|
| ୧ | ୨୦୧୧-୧୨ | ୩ | ୬୩୭ | ୧୦ |
| ୨ | ୨୦୧୨-୧୩ | ୨୩ | ୫୯୫୨ | ୧୪୬୬ |
| ୩ | ୨୦୧୩-୧୪ | ୨୧ | ୨୩୪୨୧ | ୪୭୪୪ |
| ୪ | ୨୦୧୪-୧୫ | ୨୫ | ୧୦୬୦୧ | ୨୦୦୦ |
| ୫ | ୨୦୧୫-୧୬ | ୩୦ | ୧୩୧୮୧ | ୨୨୧୭ |
| ୬ | ୨୦୧୬-୧୭ | ୧୩ | ୮୮୬୩ | ୧୩୪୦ |
| ୭ | ୨୦୧୭-୧୮ | ୨୩ | ୧୦୦୫ ତାଲିମ୍ ନେଉଛନ୍ତି | - |
| ମୋଟ | | | ୬୩,୬୬୦ | ୧୧,୭୭୭ |

➢ **ମୁଖ୍ୟମନ୍ତ୍ରୀଙ୍କ ନିଯୁକ୍ତି ସୃଷ୍ଟିକାରୀ ଯୋଜନା**

୧. ଲକ୍ଷ୍ୟ– ୨୦୧୪–୧୫ରୁ ୨୦୧୮–୧୯ (ପାଞ୍ଚ ବର୍ଷ ମଧ୍ୟରେ) ୧୧ ଲକ୍ଷ ଯୁବକ/ଯୁବତୀଙ୍କୁ ପ୍ରଶିକ୍ଷଣ ଦିଆଯିବ ।

୨. ବିଗତ ୩ ବର୍ଷରେ ପ୍ରଶିକ୍ଷିତ ଯୁବକ/ଯୁବତୀଙ୍କ ସଂଖ୍ୟା– ୪,୬୯,୪୦୯

୩. ବର୍ଷଓ୍ବାରୀ ସଫଳତା

| ଆର୍ଥିକ ବର୍ଷ | ଧାର୍ଯ୍ୟ ଲକ୍ଷ୍ୟ | ଯୁବକ/ଯୁବତୀଙ୍କ ତାଲିମ ସଂଖ୍ୟା | ଯୁବକ/ଯୁବତୀଙ୍କ ନିୟୋଜନ ସଂଖ୍ୟା |
|---|---|---|---|
| ୨୦୧୪-୧୫ | ୧,୮୦ ,୦୦୦ | ୯୭,୨୩୮ | ୯,୬୭୮ |
| ୨୦୧୫-୧୬ | ୨,୬୫, ୨୦୦ | ୨, ୪୯,୬୭୯ | ୨୫ ,୪୨୯ |
| ୨୦୧୬-୧୭ | ୨,୮୫, ୭୬୫ | ୧ ,୨୨, ୪୯୨ | ୨୮ ,୫୮୯ |
| ମୋଟ | | ୪ , ୬୯ , ୪୦୯ | ୬୩ , ୬୯୬ |

- ନିଯୁକ୍ତି ମେଳା (୨୦୧୪-୧୫ ରୁ ୨୦୧୭-୧୮)

| ଆର୍ଥିକ ବର୍ଷ | ନିଯୁକ୍ତି ମେଳା ସଂଖ୍ୟା | ଯୁବକ/ଯୁବତୀ ଯୋଗଦାନ ସଂଖ୍ୟା | ଯୁବକ/ଯୁବତୀ ନିଯୁକ୍ତିପତ୍ର ପ୍ରଦାନ ସଂଖ୍ୟା |
|---|---|---|---|
| ୨୦୧୪-୧୫ | ୨୯ | ୪୫୮୫୩ | ୧୪୦୩୮ |
| ୨୦୧୫-୧୬ | ୧୪ | ୧୮୫୫୭ | ୬୬୫୦ |
| ୨୦୧୬-୧୭ | ୨୫ | ୩୮୫୮୮ | ୧୧୧୭୨ |
| ୨୦୧୭-୧୮ | ୦୨ | ୧୬୪୯ | ୩୨୬ |
| **ମୋଟ** | **୭୦** | **୧୦୪୬୪୭** | **୩୨,୧୮୬** |

- ସେନା ବାହିନୀରେ ନିଯୁକ୍ତି ରାଲି (ବିଗତ ୬ ବର୍ଷର)

| ଆର୍ଥିକ ବର୍ଷ | ରାଲି ସଂଖ୍ୟା | ଯୁବକ/ଯୁବତୀ ମନୋନୟନ ସଂଖ୍ୟା |
|---|---|---|
| ୨୦୧୦-୧୧ | ୮ | ୨୨୩୯ |
| ୨୦୧୧-୧୨ | ୬ | ୧୫୩୮ |
| ୨୦୧୨-୧୩ | ୭ | ୧୯୦୪ |
| ୨୦୧୩-୧୪ | ୬ | ୧୫୦୬ |
| ୨୦୧୪-୧୫ | ୭ | ୧୫୨୪ |
| ୨୦୧୫-୧୬ | ୪ | ୧୩୬୦ |
| ୨୦୧୬-୧୭ | ୪ | ଫଳାଫଳ ଘୋଷିତ ହୋଇନାହିଁ । |

**ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ**

➢ ଓଡ଼ିଶାରେ ଦକ୍ଷତା ହାସଲ କରିଥିବା ଯୁବ ସମାଜକୁ ବିଶ୍ୱ ଦରବାରରେ ପହଞ୍ଚାଇବା ଲକ୍ଷ୍ୟ ନେଇ ଓ ସେମାନଙ୍କୁ ଉଚ୍ଚକୋଟୀର ତାଲିମ ମାଧ୍ୟମରେ ସମ୍ପୂର୍ଣ୍ଣ ଦକ୍ଷ କରାଇବା ସହିତ ସେମାନଙ୍କର ଆଶା ଓ ଆକାଂକ୍ଷାକୁ ପୂରଣ କରିବା ନିମନ୍ତେ ଆର୍ଥିକ ବର୍ଷ ୨୦୧୬-୧୭ରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଗଠନ କରାଯାଇଛି ।

➢ ଦଶମ ଶ୍ରେଣୀ ପାଶ୍ କରିଥିବା ବିଶେଷ କରି ଏକାନ୍ତ ଆଦିମ ଜନଜାତି, ଛାତ୍ରୀ ଓ ଦିବ୍ୟାଙ୍ଗମାନଙ୍କୁ ପ୍ରବର୍ତ୍ତାଇ ଆଇ.ଟି.ଆଇ.ରେ ନାମ ଲେଖାଇବା ପାଇଁ ଜିଲ୍ଲାପାଳ, ଆଇ.ଟି.ଆଇ. ଅଧ୍ୟକ୍ଷ ତଥା ଅନ୍ୟାନ୍ୟ କ୍ଷେତ୍ରୀୟ ଅଫିସରଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଏଥିପାଇଁ ଛାତ୍ରଛାତ୍ରୀ ଓ ଅଭିଭାବକମାନଙ୍କୁ ନେଇ ସଂଖ୍ୟାଧିକ କର୍ମଶାଳା ବିଗତ ବର୍ଷ ବିଶ୍ୱ ଯୁବ ଦକ୍ଷତା ଦିବସଠାରୁ ଆରମ୍ଭ କରାଯାଇଛି ।



# ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ସଫଳତା

**୧. ପର୍ଯ୍ୟଟନ କ୍ଷେତ୍ରରେ ପ୍ରଧାନ ପରିସଂଖ୍ୟାନ**

୨୦୧୩ରେ ରାଜ୍ୟକୁ ପର୍ଯ୍ୟଟକ ଆଗମନ ୯୮୬୬୮୧୦ରୁ ୨୦୧୬ରେ ୧୨୯୧୯୨୬୦ରେ ପହଞ୍ଚିଛି । ବାର୍ଷିକ ଅଭିବୃଦ୍ଧି ହାର ୯% । ସେହିପରି ୨୦୧୩ରେ ରାଜ୍ୟକୁ ବିଦେଶୀ ପର୍ଯ୍ୟଟକଙ୍କ ସଂଖ୍ୟା ୬୬, ୬୭୫ରୁ ୨୦୧୬ରେ ୭୬,୩୬୧ରେ ପହଞ୍ଚିଛି । ବିଗତ ତିନି ବର୍ଷରେ ଏହା ୧୪ ପ୍ରତିଶତ ଅଭିବୃଦ୍ଧି ।

ବିଗତ ତିନି ବର୍ଷରେ ରାଜ୍ୟରେ ପର୍ଯ୍ୟଟନ ଭିତ୍ତିଭୂମି ବିକାଶ ପାଇଁ ୨୫୮.୯୬ କୋଟି ଟଙ୍କା ବ୍ୟୟ କରାଯାଇଛି ।

**୨. ପର୍ଯ୍ୟଟକ ଆଗମନ ନିମନ୍ତେ ଗ୍ରହଣ କରାଯାଇଥିବା ପଦକ୍ଷେପ**

କ) ୨୦୧୪ରେ ଭୁବନେଶ୍ୱର ବିମାନ ବନ୍ଦରକୁ ଆନ୍ତର୍ଜାତିକ ବିମାନ ବନ୍ଦର ଭାବେ ଘୋଷଣା କରାଯାଇଛି । ଫଳରେ ପର୍ଯ୍ୟଟକଙ୍କ ସଂଖ୍ୟା ବୃଦ୍ଧି ପାଇଛି ।

ବାରଣାସୀରୁ ଭୁବନେଶ୍ୱରକୁ ସପ୍ତାହକୁ ଚାରିଥର ଏୟାର ଇଣ୍ଡିଆର ପ୍ରତ୍ୟକ୍ଷ ବିମାନ ସେବା ହେବା ଫଳରେ ରାଜ୍ୟର ବୌଦ୍ଧ ପର୍ଯ୍ୟଟନ କ୍ଷେତ୍ରଗୁଡ଼ିକୁ ପର୍ଯ୍ୟଟକଙ୍କ ସଂଖ୍ୟା ବୃଦ୍ଧି ପାଇବ ।

୨୦୧୭ ଫେବୃଆରୀ ୨୨ରେ ଏୟାର ଏସିଆ, ମାଲେସିଆ ସହିତ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇ କ୍ୱାଲାଲାମ୍ପୁରରୁ ଭୁବନେଶ୍ୱରକୁ ଆନ୍ତର୍ଜାତିକ ପ୍ରତ୍ୟକ୍ଷ ସଂଯୋଗୀକରଣ ସମ୍ଭବ ହୋଇଛି । ଚଳିତ ବର୍ଷ ଅପ୍ରେଲ ୨୬ରେ ଆନ୍ତର୍ଜାତିକ ବିମାନ ଉଡାଣ ଆରମ୍ଭ ହୋଇଛି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କେନ୍ଦ୍ର ବୈଦେଶିକ ବ୍ୟାପାର ମନ୍ତ୍ରୀ ଶ୍ରୀମତୀ ସୁଷମା ସ୍ୱରାଜଙ୍କୁ ଏୟାର ଏସିଆର ପ୍ରତ୍ୟକ୍ଷ ବିମାନ ସଂଯୋଗୀରଣ ହେତୁ ଭୁବନେଶ୍ୱର ବିମାନ ବନ୍ଦରରେ 'ଭିସା ଅନ୍ ଆରାଇଭାଲ୍' ସୁବିଧା ପ୍ରଦାନ ନିମନ୍ତେ ପତ୍ର ଲେଖିଛନ୍ତି ।

ଖ) ବୌଦ୍ଧ ପର୍ଯ୍ୟଟନର ବିକାଶ

୨୦୧୭ ଅପ୍ରେଲ ୧୦ରୁ ୧୨ ତାରିଖ ପର୍ଯ୍ୟନ୍ତ ଉଦୟଗିରି ଓ ଭୁବନେଶ୍ୱରଠାରେ ଚତୁର୍ଥ ଆନ୍ତର୍ଜାତିକ ବୌଦ୍ଧ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଓ ଏଥିରେ ଦେଶ ଓ ବିଦେଶରୁ ଗବେଷକ, ବୁଦ୍ଧିଜୀବୀ ତଥା ଟୁର୍ ଅପରେଟରମାନେ ଯୋଗ ଦେଇଥିଲେ ।

ଏହିସବୁ ସ୍ଥାନଗୁଡ଼ିକରୁ ଉତ୍ଖନନ କ୍ରମେ ଆବିଷ୍କୃତ ପଦାର୍ଥଗୁଡ଼ିକର ପ୍ରଦର୍ଶନ ପାଇଁ ପଦକ୍ଷେପ ନିଆଯାଉଛି ।

ଲଳିତଗିରିଠାରେ ବୌଦ୍ଧ ପ୍ରତ୍ନତାତ୍ତ୍ୱିକ ପରିଣତିକୁ ଗୋଟିଏ ସଂଗ୍ରହାଳୟରେ ପ୍ରଦର୍ଶନ ନିମନ୍ତେ ଉଦ୍ୟମ ଆରମ୍ଭ ହୋଇଛି ।

୨୦୧୫ ଅଗଷ୍ଟ ୭ ତାରିଖଠାରୁ ଧଉଳିଠାରେ ଆଲୋକ ଧ୍ୱନି ବ୍ୟବସ୍ଥା (ଲାଇଟ୍ ଆଣ୍ଡ ସାଉଣ୍ଡ) ଆରମ୍ଭ ହୋଇଛି । ବୌଦ୍ଧ ସମ୍ମିଳନୀ ସମୟରେ ଡିସେମ୍ବର ମାସରେ ହୀରକ ତ୍ରିଭୁଜରେ ସାମୂହିକ ବୌଦ୍ଧ ମନ୍ତ୍ର ଗାନର ବ୍ୟବସ୍ଥା ହେଉଛି ।

କଲମ୍ବୋ–ବାରଣାସୀ ବିମାନ ଯାତ୍ରା ସମୟରେ ଭୁବନେଶ୍ୱରଠାରେ ରହଣି ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ବେସାମରିକ ବିମାନ ଚଳାଚଳ ମନ୍ତ୍ରାଳୟକୁ ପତ୍ର ଲେଖିଛନ୍ତି ।

ଗ) ଜଳ/ବେଳାଭୂମି ସମ୍ପର୍କିତ କାର୍ଯ୍ୟକ୍ରମ

ବେଳାଭୂମି ତଥା ସର୍ଫିଂ ଉତ୍ସବର ଆୟୋଜନ ।

ପ୍ରତିବର୍ଷ କୋଣାର୍କ ନୃତ୍ୟ ମହୋତ୍ସବ ସହିତ ତାଳ ମିଳାଇ ସେଠାରେ ଆନ୍ତର୍ଜାତିକ ବାଲୁକା କଳା ମହୋତ୍ସବର ଆୟୋଜନ ।

ଚିଲିକା ମାଷ୍ଟର ପ୍ଲାନ୍ ପ୍ରସ୍ତୁତ କରାଯାଇ ସେଠାରେ ସର୍ବାଙ୍ଗୀନ ପର୍ଯ୍ୟଟନ ବିକାଶ ସହିତ ତାହାକୁ ଆନ୍ତର୍ଜାତିକ ପର୍ଯ୍ୟଟନସ୍ଥଳୀ ଭାବରେ ଗଢ଼ିତୋଳିବା ନିମନ୍ତେ ଉଦ୍ୟମ ଆରମ୍ଭ ହୋଇଛି ।

ଘ) ଐତିହ୍ୟ

ପର୍ଯ୍ୟଟନ ବିଭାଗ, ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ ଓ ଭୁବନେଶ୍ୱର ମହାନଗର ନିଗମର ମିଳିତ ଆନୁକୂଲ୍ୟରେ ଏକାମ୍ର ଐତିହ୍ୟ ପଦଯାତ୍ରା ଅବ୍ୟାହତ ରହିଛି ।

ପୁରୀସ୍ଥିତ ନରେନ୍ଦ୍ର ପୋଖରୀରେ ମ୍ୟୁଜିକାଲ ଫାଉଣ୍ଟେନ୍ ଓ ମଲ୍ଟିମିଡିଆ ଲେଜର ସୋ’ ପରି ଶବ୍ଦଧ୍ୱନି ବ୍ୟବସ୍ଥା ୭.୦୭ କୋଟି ଟଙ୍କା ବ୍ୟୟରେ ଚଳିତ ବର୍ଷ ମଇ ୧୮ ତାରିଖରୁ ଆରମ୍ଭ ହୋଇଛି ।

ନବକଳେବର – ବିଶ୍ୱସ୍ତରରେ ଜଗନ୍ନାଥ ସଂସ୍କୃତିର ପ୍ରସାର ପାଇଁ ନବକଳେବରକୁ ନେଇ ୨୦୧୫ରେ ବୃତ୍ତଚିତ୍ର ‘ଗଡ୍‌ସ ଓ୍ୱନ୍ ପିପୁଲ୍’ ପ୍ରସ୍ତୁତ କରାଯାଇଥିଲା ଓ ଏହା ୨୦୧୬ ମଇ ମାସରେ କେନ୍ସ୍ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ (ଫ୍ରାନ୍ସ୍)ରେ ପ୍ରଦର୍ଶିତ ହୋଇଥିଲା । ‘ନବକଳେବର : ଏକ ଦୃଶ୍ୟମାନ ଚମତ୍କାର’ ଶୀର୍ଷକ କଫିଟେବୁଲ ପୁସ୍ତକ ପ୍ରକାଶିତ ହୋଇଛି ।

ଙ) ପରିବେଶ ପର୍ଯ୍ୟଟନ: ରାଜ୍ୟରେ ପରିବେଶ ପର୍ଯ୍ୟଟନର ଉନ୍ନତି ପାଇଁ ଜଙ୍ଗଲ ବିଭାଗ ସହିତ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

ଚ) ଆଦିମ ଜନଜାତି ପର୍ଯ୍ୟଟନ: ବିଦେଶୀ ପର୍ଯ୍ୟଟକମାନଙ୍କ ପାଇଁ ପିଭିଟିଜି ଅଞ୍ଚଳ ପରିଭ୍ରମଣ ପାଇଁ ଥିବା ନିୟମକୁ କୋହଳ କରାଯାଇଛି । ଆଦିବାସୀ ଓ ଆଦିମ ଜନଜାତିର ଯୁବକମାନଙ୍କୁ ପର୍ଯ୍ୟଟକମାନଙ୍କ ସୁବିଧା ନିମନ୍ତେ ଗାଇଡ୍ ଭାବରେ ନିୟୋଜିତ କରିବା ବ୍ୟବସ୍ଥା ହୋଇଛି ।

**୩. ପୁଞ୍ଜିନିବେଶ ବିକାଶ**

୨୦୧୬ ନଭେମ୍ବର ମାସରେ ନୂତନ ପର୍ଯ୍ୟଟନ ନୀତି ପ୍ରଣୟନ ହୋଇଛି । ଏଥିରେ ୫୦ କୋଟି କିମ୍ବା ତଦୂର୍ଦ୍ଧ୍ୱ ପୁଞ୍ଜିନିବେଶରେ ୧୦ କୋଟିରୁ ୧୫ କୋଟି ଟଙ୍କା ପର୍ଯ୍ୟନ୍ତ ରିହାତି ବ୍ୟବସ୍ଥା ରଖାଯାଇଛି । ସେହିପରି ପର୍ଯ୍ୟଟନ କ୍ଷେତ୍ରରେ ଘରୋଇ ଉଦ୍ୟୋଗକୁ ଜମି ଦେବା ସକାଶେ ଭୂମି ବ୍ୟାଙ୍କ୍ ଆରମ୍ଭ କରାଯାଇଛି ।

୨୦୧୬ ପର୍ଯ୍ୟଟନ ନୀତିରେ ସିଙ୍ଗଲ୍ ୱିଣ୍ଡୋ କ୍ଲିୟରାନ୍ସ କମିଟି ୨୬ଟି ପର୍ଯ୍ୟଟନ ପ୍ରକଳ୍ପକୁ ଅନୁମୋଦନ ଦେଇଛି ।

**୪. ରାଜ୍ୟ ଯୋଜନା ପ୍ରୋତ୍ସାହନ:**

ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା–ବରିଷ୍ଠ ନାଗରିକଙ୍କୁ ଦେଶର ପ୍ରମୁଖ ତୀର୍ଥସ୍ଥାନ ଭ୍ରମଣ ନିମନ୍ତେ ସୁବିଧା ଦେବା ସକାଶେ ଏହି କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ପର୍ଯ୍ୟାୟକ୍ରମେ ରାଜ୍ୟର ବିଭିନ୍ନ ରାଜସ୍ୱ ମଣ୍ଡଳରୁ ଏହା ଆରମ୍ଭ କରାଯାଇଛି ।

୨୦୧୬, ୨୫ ଜୁଲାଇରୁ ଅଗଷ୍ଟ ପହିଲା ପର୍ଯ୍ୟନ୍ତ ବ୍ରହ୍ମପୁରରୁ ୯୭୭ ଜଣ ତୀର୍ଥଯାତ୍ରୀ ନେଇ ମଦୁରାଇ–ରାମେଶ୍ୱରମ୍, ୨୦୧୬ ସେପ୍ଟେମ୍ବର ୨୩ରୁ ୨୮ ପର୍ଯ୍ୟନ୍ତ ଭୁବନେଶ୍ୱରରୁ ୯୭୧ଜଣ ତୀର୍ଥଯାତ୍ରୀ ନେଇ ଆହ୍ଲାବାଦ–ବାରଣାସୀ ଓ ୨୦୧୬ ନଭେମ୍ବର ୨୨ରୁ ନଭେମ୍ବର ୨୮ ପର୍ଯ୍ୟନ୍ତ ଓ ସମ୍ବଲପୁରରୁ ୯୮୩ ଜଣ ତୀର୍ଥଯାତ୍ରୀ ନେଇ ହରିଦ୍ୱାର–ଋଷିକେଶ ତୀର୍ଥଯାତ୍ରା ସମ୍ପନ୍ନ ହୋଇଛି ।

ପୁରୀ ଓ କୋଣାର୍କରେ ପର୍ଯ୍ୟଟନ ପୁଲିସ ପ୍ରକୋଷ୍ଠ ଆରମ୍ଭ କରାଯାଇଛି । ୨୦୧୫ ନବକଳେବର ପର୍ବରେ ପୁରୀ ସମୁଦ୍ରକୂଳ ଥାନାରେ ପ୍ରଥମ ଟୁରିଷ୍ଟ ପୁଲିସ୍ ସେଲ୍ ଆରମ୍ଭ ହୋଇଛି । ଖୁବ୍‌ଶୀଘ୍ର ଆଉ ୬ଟି ପର୍ଯ୍ୟଟନ ପୁଲିସ୍ ଥାନା କାର୍ଯ୍ୟକାରୀ ହେବ । ମାରାଇନ୍ ଡ୍ରାଇଭ୍‌ରେ ପାଟ୍ରୋଲିଂ ଆରମ୍ଭ କରାଯାଇଛି ।

**୫. ପୁରସ୍କାର**

ଇଣ୍ଡିଆ ଟୁଡେ ଗ୍ରୁପ୍ ପକ୍ଷରୁ ହୋଇଥିବା ଜାତୀୟ ଅନ୍‌ଲାଇନ୍ ଓ ପାଠକୀୟ ସର୍ବେକ୍ଷଣ କ୍ରମରେ ଓଡ଼ିଶାର ଗୋପାଳପୁରକୁ ବେଳାଭୂମି ଓ ଉପକୂଳ ପର୍ଯ୍ୟାୟରେ ପ୍ରଥମ ରନର୍ସ ଅପ୍ ପୁରସ୍କାର ମିଳିଛି ।

ଓଡ଼ିଶା ପର୍ଯ୍ୟଟନକୁ 'ହଲିଡେ ଆଇକ୍ୟୁ ବେଷ୍ଟ ହେରିଟେଜ୍ ଡେଷ୍ଟିନେସନ୍ ଆୱାର୍ଡ ଫର କୋଣାର୍କ' ପୁରସ୍କାର ମିଳିଛି ।

**୬. ପର୍ଯ୍ୟଟନ ବିଭାଗର ଅନ୍ୟାନ୍ୟ ପ୍ରମୁଖ ଉଦ୍ୟମ**

ଭୁବନେଶ୍ୱରଠାରେ ଓଡ଼ିଶା ପର୍ଯ୍ୟଟନ ଓ ଭାରତରେ ହୋଟେଲ ଶିଳ୍ପର ଶୀର୍ଷ ସଂଗଠନ 'ଭାରତୀୟ ହୋଟେଲ୍ ଓ ରେଷ୍ଟୁରାଣ୍ଟ ମହାସଂଘ'ର ମିଳିତ ଆନୁକୂଲ୍ୟରେ ବିଶ୍ୱ ପର୍ଯ୍ୟଟନ ଦିବସ ସେପ୍ଟେମ୍ବର ୨୭ ତାରିଖ ଦିନ ମହାସଂଘର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଅନୁଷ୍ଠିତ ହୋଇଛି । ଏହି ଅବସରରେ ଏକ କାର୍ଣ୍ଣିଭାଲ ଆୟୋଜିତ ହୋଇଥିଲା ।

ରାଜ୍ୟରେ ହୋମ୍ ଷ୍ଟେକୁ ପ୍ରୋତ୍ସାହନ ଦେବା ପାଇଁ ଯାତ୍ରା ଟ୍ରାଭେଲ୍ ଗୁରୁ ହୋମ୍ ଷ୍ଟେ ସହ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବାଲୁକା କଳା ଶିଳ୍ପୀ ପଦ୍ମଶ୍ରୀ ସୁଦର୍ଶନ ପଟ୍ଟନାୟକଙ୍କ ଦ୍ୱାରା ବିଜୁ ପଟ୍ଟନାୟକ ଆନ୍ତର୍ଜାତିକ ବିମାନ ବନ୍ଦରଠାରେ ଏକ ବାଲୁକା କଳା ପ୍ରଦର୍ଶନ ହୋଇଛି ।

ଚଳିତ ବର୍ଷ ମଇ ୨୫ ତାରିଖ ଦିନ ଆଦିତ୍ୟ ବିର୍ଲା ଗ୍ରୁପ୍ ସହ ଖଣ୍ଡଗିରି–ଉଦୟଗିରିଠାରେ ଏକ ବ୍ୟାଖ୍ୟାନ କେନ୍ଦ୍ରର ପରିଚାଳନା ପାଇଁ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି । ଏହି କେନ୍ଦ୍ରକୁ 'ଶାଶ୍ୱତ ଗାନ୍ଧୀ ଶାନ୍ତି କେନ୍ଦ୍ର' ନାମରେ ନାମିତ କରାଯିବ ବୋଲି ସ୍ଥିର କରାଯାଇଛି ।

ଓଡ଼ିଶା ପର୍ଯ୍ୟଟନକୁ ପ୍ରୋତ୍ସାହନ ଦେବା ପାଇଁ ଭୁବନେଶ୍ୱରଠାରେ 'ପଥୋତ୍ସବ' ନାମରେ ଏକ ସାପ୍ତାହିକୀ କାର୍ଯ୍ୟକ୍ରମ ନିୟମିତ ଆୟୋଜନ କରାଯାଉଛି ।

କ୍ରୀଡାର ବିକାଶ ସହ ପର୍ଯ୍ୟଟନର ବିକାଶ ଜଡିତ, ଏଣୁ ଓଡ଼ିଶା ପର୍ଯ୍ୟଟନ ଦ୍ୱିତୀୟ ଏସିଆ ଆଥ୍ଲେଟିକ୍ ଚମ୍ପିଆନ୍ସିପ୍ ଓ ବିଶ୍ୱକପ୍ ହକି ଆୟୋଜନ ପାଇଁ ଭାରତୀୟ ହକି ଲିଗ୍‌କୁ ଆର୍ଥିକ ସହାୟତା ଯୋଗାଇ ଦେଇଛି ।

**ପର୍ଯ୍ୟଟନ ବିଭାଗର ଭବିଷ୍ୟତର କାର୍ଯ୍ୟପନ୍ଥା ଓ ଦିଶା ନିର୍ଦ୍ଦେଶ**

୧. ଭୁବନେଶ୍ୱରଠାରେ ୨୦୧୭ ସେପ୍ଟେମ୍ବର ୮ରୁ ୧୦ ତାରିଖ ପର୍ଯ୍ୟନ୍ତ ଟୁର୍ ଅପରେଟରମାନଙ୍କର ଶୀର୍ଷ ସଂଗଠନ ଇଣ୍ଡିଆନ୍ ଆସୋସିଏସନ୍ ଅଫ୍ ଟୁର୍ ଅପରେଟର୍ସର ଏକ ସମ୍ମିଳନୀ ଆୟୋଜନ ହୋଇଛି ।

୨. ଚଳିତ ବର୍ଷ ନିମନ୍ତେ 'ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା' ଆୟୋଜନ କରାଯିବ ।

୩. ଭୁବନେଶ୍ୱରଠାରେ ଅକ୍ଟୋବର ୧୫ରୁ ୧୭ ତାରିଖ ପର୍ଯ୍ୟନ୍ତ 'ଓଡ଼ିଶା ଟ୍ରାଭେଲ୍ ବଜାର' ଆୟୋଜିତ ହୋଇଛି ।

୪. ୭.୬୧ କୋଟି ଟଙ୍କା ବ୍ୟୟରେ ଭୁବନେଶ୍ୱରର ବିନ୍ଦୁ ସାଗରଠାରେ ଏକ ମ୍ୟୁଜିକାଲ ଫାଉଣ୍ଟେନ୍ ଓ ମଲ୍‌ଟିମିଡିଆ ଲେଜର ସୋ' ର ଶୁଭାରମ୍ଭ କରାଯିବ ।

୫. ଧଉଳି ପରି ଖଣ୍ଡଗିରିଠାରେ ମଧ୍ୟ ଲାଇଟ୍ ଆଣ୍ଡ ସାଉଣ୍ଡ ସୋ' ବ୍ୟବସ୍ଥା କାର୍ଯ୍ୟକାରୀ ହେବ ।

୬. ଜୁନ୍, ୨୦୧୭ରେ କୋଣାର୍କଠାରେ ଲାଇଟ୍ ଆଣ୍ଡ ସାଉଣ୍ଡ ସୋ' ଆରମ୍ଭ ।

୭. ଖୁବ୍‌ଶୀଘ୍ର ଜଳକ୍ରୀଡା ପାଇଁ ନିର୍ଦ୍ଦେଶାବଳୀ ପ୍ରଣୟନ କରାଯିବ ।

୮. ଏସିଆ ଆଥ୍ଲେଟିକ୍ ଚମ୍ପିଆନ୍ସିପ୍ ଓ ବିଶ୍ୱକପ୍ ହକି ପରି ଅନ୍ୟ କ୍ରୀଡା କାର୍ଯ୍ୟକ୍ରମରେ ପ୍ରାୟୋଜକ ଭାବେ ଭାଗୀଦାରି ପ୍ରଦର୍ଶନ କରି ପର୍ଯ୍ୟଟନ ବିଭାଗ ଓଡ଼ିଶା ପର୍ଯ୍ୟଟନର ସମ୍ଭାବନାକୁ ଅଧିକ ଉଜ୍ଜ୍ୱଳ କରିବ ।



# ମହିଳା ଓ ଶିଶୁ ବିକାଶ ଏବଂ ମିଶନ ଶକ୍ତି ବିଭାଗର ସଫଳତା

**୧. ରାଜ୍ୟରେ ପୁଷ୍ଟି ସୂଚକାଙ୍କରେ ଯଥେଷ୍ଟ ଉନ୍ନତି**

National Family Health Survey-4 (NFHS-4)ର ରିପୋର୍ଟ ଅନୁଯାୟୀ ପ୍ରାୟ ସମସ୍ତ ସ୍ୱାସ୍ଥ୍ୟ ଓ ପୁଷ୍ଟି ସୂଚକାଙ୍କରେ ଓଡ଼ିଶାର ହାର ଦେଶର ହାର ତୁଳନାରେ ଯଥେଷ୍ଟ ଆଗୁଆ ଅଛି । ଦେଶରେ ଶିଶୁ ମୃତ୍ୟୁହାର ୪୧ ଥିଲାବେଳେ ଓଡ଼ିଶାର ହାର ୪୦ ଅଟେ, ଯାହା ୨୦୦୫–୦୬ ତୁଳନାରେ ୨୫ ପଏଣ୍ଟ କମ୍ ଅଟେ । ବିଗତ ଦଶ ବର୍ଷ ମଧ୍ୟରେ ପୁଷ୍ଟି ସୂଚକାଙ୍କ ଯଥା ସ୍ୱଳ୍ପ ଓଜନ (୫ବର୍ଷରୁ କମ୍) ଏବଂ ବୟସ ତୁଳନାରେ କମ୍ ଉଚ୍ଚତା (୫ବର୍ଷରୁ କମ୍)ରେ ଯଥେଷ୍ଟ ଉନ୍ନତି ପରିଲକ୍ଷିତ ହୋଇଅଛି ।

ଜାତୀୟ ହାରଠାରୁ ଅନ୍ୟାନ୍ୟ ସୂଚକାଙ୍କ ଯଥା ଜନ୍ମ ହେବା ମାତ୍ରେ ସ୍ତନ୍ୟପାନ, କେବଳ ସ୍ତନ୍ୟପାନ ଏବଂ ପରିପୂରକ ଖାଦ୍ୟ ଗ୍ରହଣରେ ମଧ୍ୟ ବିଶେଷ ଉନ୍ନତି ପରିଲକ୍ଷିତ ହୋଇଅଛି ।

କଟକ ଓ ପୁରୀ ଜିଲ୍ଲା ବୟସ ତୁଳନାରେ କମ୍ ଉଚ୍ଚତାର ହାରରେ ଦେଶର ସର୍ବୋତ୍ତମ ୧୦ଟି ଜିଲ୍ଲା ମଧ୍ୟରେ ସ୍ଥାନ ପାଇଅଛନ୍ତି ।

**୨. ଓଡ଼ିଶା : ପରିପୂରକ ପୁଷ୍ଟିକର ଯୋଜନାର ବିକେନ୍ଦ୍ରୀକରଣ କରିବାରେ ଦେଶର ଅଗ୍ରଣୀ ରାଜ୍ୟ**

୨୦୧୧ ମସିହାରେ ପରିପୂରକ ପୁଷ୍ଟିକର ଯୋଜନାର ବିକେନ୍ଦ୍ରୀକରଣ କରିବାରେ ଓଡ଼ିଶା ଅଗ୍ରଣୀ ରାଜ୍ୟ ଅଟେ । ଉକ୍ତ ଯୋଜନାର ବିକେନ୍ଦ୍ରୀକରଣ ସର୍ବୋଚ୍ଚ ନ୍ୟାୟାଳୟର କମିଶନରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେବା ସହିତ ସର୍ବତ୍ର ଆଦୃତ ହୋଇଅଛି ।

ଖାଦ୍ୟ ପଦାର୍ଥର ମୂଲ୍ୟ ଧାର୍ଯ୍ୟ କରାଯିବା ସହିତ ସାପ୍ତାହିକ ଖାଦ୍ୟ (ସକାଳ ଜଳଖିଆ/ଗରମ ରନ୍ଧାଖାଦ୍ୟ ଏବଂ ଅଣ୍ଡା ସହିତ ଛତୁଆ)ର ସୂଚୀ ସ୍ଥିର କରାଯାଇଅଛି । ସମସ୍ତ ବର୍ଗର ହିତାଧିକାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଉକ୍ତ ଖାଦ୍ୟର କ୍ୟାଲୋରି ଏବଂ ପ୍ରୋଟିନ୍‌ର ପରିମାଣ ମଧ୍ୟ ନିର୍ଦ୍ଧାରଣ କରାଯାଇଅଛି ।

ପୁଷ୍ଟିର ଆବଶ୍ୟକତା ପୂରଣ କରିବା ପାଇଁ ପ୍ରାକ୍ ବିଦ୍ୟାଳୟ ଶିଶୁମାନଙ୍କ ପାଇଁ ସପ୍ତାହକୁ ୩ଗୋଟି ଅଣ୍ଡା ଏବଂ ଅନ୍ୟ ହିତାଧିକାରୀ (୬ ମାସରୁ ୩ବର୍ଷ ଶିଶୁ ଏବଂ ଗର୍ଭବତୀ ଓ ପ୍ରସୂତୀ ମହିଳା)ମାନଙ୍କୁ ସପ୍ତାହକୁ ୨ଗୋଟି ଅଣ୍ଡା ଦିଆଯିବାର ବ୍ୟବସ୍ଥା କରାଯାଇଅଛି ।

ବର୍ତ୍ତମାନ ରାଜ୍ୟରେ ୪୩.୫୧ (୬ମାସରୁ ୩ବର୍ଷ–୧୮.୮୩ ଲକ୍ଷ ଶିଶୁ, ୩–୬ ବର୍ଷର ଶିଶୁ– ୧୭.୩୩ ଲକ୍ଷ ଏବଂ ଗର୍ଭବତୀ ଓ ପ୍ରସୂତୀ ମହିଳା– ୭.୩୬ ଲକ୍ଷ) ଲକ୍ଷ ହିତାଧିକାରୀ ପରିପୂରକ ପୁଷ୍ଟିକର ଯୋଜନାରେ ଉପକୃତ ହେଉଅଛନ୍ତି ।

୭୦୧ ସ୍ୱୟଂ ସହାୟକ ଗୋଷ୍ଠୀ ଛତୁଆ ଉତ୍ପାଦନ ଏବଂ ବଣ୍ଟନ ପାଇଁ ନିୟୋଜିତ ହୋଇଅଛନ୍ତି ।

**୩. ମମତା: ଗର୍ଭବତୀ ଓ ପ୍ରସୂତୀ ମହିଳାମାନଙ୍କ ପାଇଁ ଦେଶର ସର୍ବବୃହତ୍ ସିଧାସଳଖ ନଗଦ ଦେୟ ବ୍ୟବସ୍ଥା**

୨୦୧୧ ମସିହାରେ ଆରମ୍ଭ କରାଯାଇଥିବା ଏହି ଯୋଜନା ମାଧ୍ୟମରେ ବର୍ତ୍ତମାନ ସୁଦ୍ଧା (୨ଗୋଟି ଆଇଜିଏମ୍ଏସ୍ୱାଇ ଜିଲ୍ଲା ସମେତ) ୨୬.୬୭ ଲକ୍ଷ ଗର୍ଭବତୀ ଓ ପ୍ରସୂତୀ ମହିଳାମାନଙ୍କୁ ୧୨୦୩.୧୪କୋଟି ଟଙ୍କାର ଆର୍ଥିକ ସହାୟତା ଯୋଗାଇ ଦିଆଯାଇଅଛି ।

ଏହି ଯୋଜନା ମାଧ୍ୟମରେ ଗର୍ଭବତୀ ଓ ପ୍ରସୂତୀ ମହିଳାମାନଙ୍କର ପୁଷ୍ଟି ଏବଂ ସ୍ୱାସ୍ଥ୍ୟର ଉନ୍ନତିକରଣ ପାଇଁ ବିଶେଷ ଧ୍ୟାନ ଦିଆଯାଉଅଛି ।

**୪. ଅଙ୍ଗନୱାଡ଼ି କେନ୍ଦ୍ର ଗୃହ ଏବଂ ଅନ୍ୟାନ୍ୟ ଭିତ୍ତିଭୂମିର ବିକାଶ**

୨୦୧୦-୧୧ ଠାରୁ ଆଜି ପର୍ଯ୍ୟନ୍ତ ୧୭୫୩୩ ନୂତନ ଅଙ୍ଗନୱାଡ଼ି ଗୃହ ନିର୍ମାଣ କରାଯାଇଅଛି ।

ଏମ୍‌ଜିଏନ୍‌ଆର୍‌ଇଜିଏସ୍ ସହଭାଗିତାରେ ଅଙ୍ଗନୱାଡ଼ି ଗୃହ ନିର୍ମାଣ କ୍ଷେତ୍ରରେ ଓଡ଼ିଶା ଦେଶର ଏକ ଅଗ୍ରଣୀ ରାଜ୍ୟ ।

ଆର୍ଥିକ ବର୍ଷ ୨୦୧୩-୧୪ ଠାରୁ ୨୦୧୬-୧୭ ପର୍ଯ୍ୟନ୍ତ ଏମ୍‌ଜିଏନ୍‌ଆର୍‌ଇଜିଏସ୍ ସହଭାଗିତାରେ ୩୩୫୪ ଅଙ୍ଗନୱାଡ଼ି ଗୃହର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଅଛି ଏବଂ ୭୩୮୫ ଅଙ୍ଗନୱାଡ଼ି ଗୃହ ନିର୍ମାଣାଧୀନ ଅଛି ।

ଚତୁର୍ଦ୍ଦଶ ଅର୍ଥ କମିଶନ ପାଣ୍ଠିରୁ ପଞ୍ଚାୟତିରାଜ ଏବଂ ପାନୀୟ ଜଳ ବିଭାଗର ସହଭାଗିତାରେ ଅଙ୍ଗନୱାଡ଼ି ଗୃହ ପାଇଁ ଶୌଚାଳୟ ଏବଂ ପାନୀୟ ଜଳର ବ୍ୟବସ୍ଥା କରାଯାଉଅଛି ।

**୫. ପ୍ରାକ୍ ବିଦ୍ୟାଳୟ ଶିଶୁଙ୍କ ପାଇଁ ପ୍ରସଙ୍ଗଭିତ୍ତିକ ନୂଆ ଅରୁଣିମା ପାଠ୍ୟକ୍ରମ ପ୍ରଚଳନ କରିବାରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ**

ପ୍ରାକ୍ ବିଦ୍ୟାଳୟ ଶିଶୁମାନଙ୍କ ପାଇଁ ବୟସାନୁପାତିକ କାର୍ଯ୍ୟକ୍ରମ କରାଯାଉଅଛି ।

ପ୍ରାକ୍ ବିଦ୍ୟାଳୟ ଶିଶୁମାନଙ୍କୁ ଅଭ୍ୟାସ ପୁସ୍ତିକା ଏବଂ ୨ହଳ ୟୁନିଫର୍ମ ପ୍ରଦାନ କରାଯାଇଅଛି ।

ଆନନ୍ଦପୂର୍ଣ୍ଣ ଶିକ୍ଷା ପାଇଁ ଅଙ୍ଗନୱାଡ଼ି କେନ୍ଦ୍ରଗୁଡ଼ିକୁ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ଉପକରଣ ଯୋଗାଇ ଦିଆଯାଉଅଛି ।

BvLF ଦ୍ୱାରା ୭୨୦୨ଟି ଅଙ୍ଗନୱାଡ଼ି କେନ୍ଦ୍ରର ଅଙ୍ଗନୱାଡ଼ି କର୍ମୀଙ୍କୁ MTELP ପ୍ରକଳ୍ପ ଅଧୀନରେ ECCE ତାଲିମ ପ୍ରଦାନ କରାଯାଉଅଛି ।

୭୨୦୨ ଅଙ୍ଗନୱାଡ଼ି କର୍ମୀଙ୍କୁ BvLF ଦ୍ୱାରା ମାତୃଭାଷା ଭିତ୍ତିକ ECCE ପାଠ୍ୟକ୍ରମର ତାଲିମ ଦିଆଯାଉଅଛି ।

**୬. ବିଜୁ ଶିଶୁ ସୁରକ୍ଷା ଯୋଜନା**

ପିତାମାତା କିମ୍ବା ପୋଷ୍ୟ ଅଭିଭାବକ ଅଥବା ବୈଧ ଅଭିଭାବକ ନଥିବା ଶିଶୁ ଅଥବା ଏଚ.ଆଇ.ଭି. ଦ୍ୱାରା ଆକ୍ରାନ୍ତ/ସଂକ୍ରମିତ ଶିଶୁମାନଙ୍କୁ ଏକ ସୁରକ୍ଷା ବଳୟ ପ୍ରଦାନ ଉଦ୍ଦେଶ୍ୟରେ ଏକ ନୂତନ ଯୋଜନା 'ବିଜୁ ଶିଶୁ ସୁରକ୍ଷା ଯୋଜନା' ପ୍ରଣୀତ ହୋଇଛି । ଏହି ଯୋଜନାରେ ପ୍ରାପ୍ତ ବର୍ଗର ମେଧାବୀ ଛାତ୍ରୀ/ଛାତ୍ରଙ୍କୁ ବୃତ୍ତି, ବିବାହ ନିମନ୍ତେ ସହାୟତା, ବୈଷୟିକ ଶିକ୍ଷା ଓ ଶିଶୁ କନ୍ୟାମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଅଛି ।

୭. ୨୦୧୩ ମସିହାଠାରୁ ଅପ୍ରେଲ ୨୦୧୭ ଅବଧିରେ, ଦେଶ ମଧ୍ୟରେ ଓ ଅନ୍ତର୍ଦେଶୀୟ ସ୍ତରରେ ଯଥାକ୍ରମେ ୮୬୦ ଓ ୧୧୬ ଶିଶୁଙ୍କୁ ପୋଷ୍ୟ ସନ୍ତାନ ଭାବେ ଗ୍ରହଣ କରାଯାଇଅଛି ।

୮. 'ଅପରେସନ୍ ମୁସ୍କାନ୍' ଓ 'ଅପରେସନ୍ ସ୍ମାଇଲ୍' ଦ୍ୱାରା ବିଗତ ଦୁଇବର୍ଷ ମଧ୍ୟରେ ୩୨୪୭ ଶିଶୁମାନଙ୍କୁ ଉଦ୍ଧାର କରାଯାଇ, ୩୧୬୮ ଜଣଙ୍କୁ ସେମାନଙ୍କ ପରିବାରରେ ଓ ୭୯ ଜଣଙ୍କୁ ଶିଶୁ ଗୃହମାନଙ୍କରେ ଅବସ୍ଥାପିତ କରାଯାଇଅଛି ।

**୯. ମିଶନ ଶକ୍ତି :** ମିଶନ ଶକ୍ତି ଜରିଆରେ ସାରା ରାଜ୍ୟରେ ୩ ଲକ୍ଷ ମହିଳା ସ୍ୱୟଂ ସହାୟକ ଗଠନ କରାଯାଇଅଛି । ମହିଳାମାନେ କେବଳ ଯେ ଅର୍ଥନୈତିକ କ୍ଷେତ୍ରରେ ସଶକ୍ତ ହୋଇଛନ୍ତି, ତାହା ନୁହେଁ, ସମାଜର ପ୍ରଗତିରେ ମଧ୍ୟ ସେମାନେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ୨୦୧୪–୧୫ ଆର୍ଥିକ ବର୍ଷରେ ୪୪.୮୬୭ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ୫୨୭ କୋଟି ଟଙ୍କାର ବ୍ୟାଙ୍କ ସହ ସଂଯୋଗୀକରଣ କରାଯାଇଛି । ୨୦୧୫–୧୬ ଆର୍ଥିକ ବର୍ଷରେ ଏହା ବଢ଼ି ୫୧୮୨୬ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ୬୬୭.୨୯ କୋଟି ଟଙ୍କା ଋଣର ସୂତ୍ର ଓ ବ୍ୟାଙ୍କ ସହ ସଂଯୋଗୀକରଣ କରାଯାଇଅଛି । ଗତ ଆର୍ଥିକ ବର୍ଷରେ (୨୦୧୬–୧୭) ୯୧୪ କୋଟି ଟଙ୍କାର ବ୍ୟାଙ୍କ ଋଣ ୬୪,୬୬୫ ସ୍ୱୟଂ ସହାୟକ ଗୋଷ୍ଠୀମାନେ ପାଇପାରିଛନ୍ତି । ମିଶନ ଶକ୍ତି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଶକ୍ତିକରଣ ୨୦୧୬–୧୭ରେ ୧.୪୪ ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆର୍ଥିକ ସହାୟତା ସହିତ ସାମାଜିକ ସମସ୍ୟା ଉପରେ ବ୍ୟାପକ ପ୍ରଶିକ୍ଷଣ ପ୍ରଦାନ କରାଯାଇଅଛି ।

**୧୦. ଓଡ଼ିଶା ରାଜ୍ୟ ବାଳିକା ଓ ମହିଳା ନୀତି ୨୦୧୪:** ରାଜ୍ୟ ପାଇଁ ଏହା ଏକ ଉଲ୍ଲେଖନୀୟ ନୀତି ଏବଂ ଏହାର କାର୍ଯ୍ୟପନ୍ଥାକୁ ନେଇ ଜାତୀୟସ୍ତରରେ ପ୍ରଶଂସା କରାଯାଇଛି । ଜୀବନଚକ୍ରକୁ ଭିତ୍ତିକରି ମହିଳା ଓ ବାଳିକାମାନଙ୍କର ସଶକ୍ତିକରଣ ଓ ବିକାଶ କ୍ଷେତ୍ରରେ ଏହି ନୀତି ପଥପ୍ରଦର୍ଶକ ହେବ ।

**୧୧. ବିଜୁ କନ୍ୟା ରତ୍ନ:** ରାଜ୍ୟର ଅନୁଗୁଳ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ଶିଶୁ ଲିଙ୍ଗ ଅନୁପାତ କମିଯିବା ସମସ୍ୟାର ସମାଧାନ କରିବା ଓ କନ୍ୟା ଶିଶୁର ଗୁରୁତ୍ୱ ସମ୍ପର୍କରେ ଗୋଷ୍ଠୀ ଏବଂ ସମସ୍ତ ସେବା ପ୍ରଦାନକାରୀ ସଂସ୍ଥା ମଧ୍ୟରେ ସଚେତନତା ବୃଦ୍ଧି କରିବା ପାଇଁ ୨୦୧୬ରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ହେଉଛି ଲିଙ୍ଗଗତ ତାରତମ୍ୟଜନିତ ଲିଙ୍ଗ ନିରୂପଣ ରୋକିବା ଏବଂ ସେମାନଙ୍କର ସ୍ୱାସ୍ଥ୍ୟ, ପୁଷ୍ଟି, ନିରାପତ୍ତା ଏବଂ ବଞ୍ଚି ରହିବାକୁ ସୁନିଶ୍ଚିତ କରିବା ।

**୧୨. ମହିଳା ହେଲ୍ପ ଲାଇନ ଏବଂ One Stop Centre:** ନିଃସହାୟ ଏବଂ ହିଂସା ପ୍ରପୀଡ଼ିତ ବାଳିକା ଏବଂ ମହିଳାମାନଙ୍କୁ ସାହାଯ୍ୟ କରିବା ପାଇଁ ଭୁବନେଶ୍ୱରର କ୍ୟାପିଟାଲ ହସ୍ପିଟାଲରେ One Stop Centre କାର୍ଯ୍ୟକାରୀ କରାଯାଉଅଛି । ଏଠାରେ ୫୫୬ ଜଣ ବାଳିକା ଏବଂ ମହିଳାମାନଙ୍କୁ ଏପର୍ଯ୍ୟନ୍ତ ଚିକିତ୍ସା, ପୁଲିସ, ଆଇନଗତ ସହାୟତା ପ୍ରଦାନ କରାଯାଇଛି । ଏ ବର୍ଷର ମାର୍ଚ୍ଚ ୮ ଠାରୁ ନିଃଶୁଳ୍କ ୧୮୧ ହେଲ୍ପଲାଇନ ଆରମ୍ଭ ହୋଇଅଛି । ଏହି ଫୋନ୍ ନମ୍ବରକୁ ଦିନ ରାତି ୨୪ ଘଣ୍ଟା ଫୋନ୍ କରାଯାଇପାରିବ । ୭୨୭୮ ହିଂସା ପ୍ରପୀଡ଼ିତ ବାଳିକା ଏବଂ ମହିଳାମାନେ ଏ ପର୍ଯ୍ୟନ୍ତ ସାହାଯ୍ୟ ପାଇଁ ଫୋନ୍ କରିଛନ୍ତି ।



# ଦକ୍ଷତା ବିକାଶ କ୍ଷେତ୍ରରେ ଓଡ଼ିଶା ଅଗ୍ରଣୀ

ଡକ୍ଟର ଜ୍ୟୋତିର୍ମତୀ ସାମନ୍ତରାୟ

ପ୍ରତ୍ୟେକ ବର୍ଷ ଭାରତରେ ୧୨ ନିୟୁତ ଲୋକ କାର୍ଯ୍ୟକ୍ଷେତ୍ରରେ ଅଂଶ ଗ୍ରହଣ କରିଥାନ୍ତି । ମାତ୍ର ସେମାନଙ୍କ ମଧ୍ୟରୁ ଶତକଡ଼ା ୨ଭାଗ ଔପଚାରିକ ତାଲିମ ନେଇଥାନ୍ତି । ଆନୁଷ୍ଠାନିକ ଭାବେ ୯୩ ପ୍ରତିଶତ ଉପଲବ୍ଧ ନିଯୁକ୍ତି ମଧ୍ୟରୁ ୪୯ ପ୍ରତିଶତ ଯୁବ ଶିକ୍ଷିତ ନିଯୁକ୍ତି ଆଶାୟୀ ଏବେ ବିଭିନ୍ନ ସ୍ଥାନରେ କାର୍ଯ୍ୟ କରୁଛନ୍ତି । ମାତ୍ର ସେମାନେ ବେରୋଜଗାରୀ, ଅଣନିଯୁକ୍ତ, ନିଯୁକ୍ତି ଅପେକ୍ଷାରେ କିମ୍ବା ଚାକିରି ଓ ନିଯୁକ୍ତି ବ୍ୟବସ୍ଥାର ଅସଙ୍ଗତିକୁ ନେଇ ଅସୁରକ୍ଷିତ ମଣୁଛନ୍ତି । ସଂପ୍ରତି ଭାରତ ଦକ୍ଷତା ରିପୋର୍ଟ ୨୦୧୭ ଅନୁଯାୟୀ ପାଖାପାଖି ୪୦ ପ୍ରତିଶତ ଶିକ୍ଷିତ ଯୁବପିଢ଼ି ନିଯୁକ୍ତି ଲାଗି ଯୋଗ୍ୟ, ତେବେ ଦୁର୍ବଳ ପ୍ରଦର୍ଶନ ଓ କାର୍ଯ୍ୟ କ୍ଷେତ୍ରରେ ନିଜକୁ ଅସୁରକ୍ଷିତ ମଣିବା, ବଜାର ଚାହିଦା ଅନୁଯାୟୀ ନିଜକୁ ତାଲିମଯୁକ୍ତ ନ କରିବା, ସୂଚନା ରଖିବାରେ ଅସାମର୍ଥ୍ୟ ଓ ଦକ୍ଷତା ବିକାଶ ନେଇ ଦୁର୍ବଳ ମାନସିକତା ଭଳି ଏକାଧିକ ଆହ୍ୱାନ ଏ କ୍ଷେତ୍ରରେ ରହିଛି ।

ଜାତୀୟ ଦକ୍ଷତା ବିକାଶ ଓ ଉଦ୍ୟୋଗ ନୀତି ୨୦୧୫ ଅନୁଯାୟୀ ଦେଶରେ ୧୧୦ ନିୟୁତ କୁଶଳୀ ଓ ୨୯୦ ନିୟୁତ ଅର୍ଦ୍ଧକୁଶଳୀ ଶ୍ରମଜୀବୀଙ୍କ ଆବଶ୍ୟକତା ୨୦୨୨ ସୁଦ୍ଧା ରହିଛି । ଯୁବପିଢ଼ି ଓ ଛାତ୍ରମାନଙ୍କୁ ବିଭିନ୍ନ ରାଜ୍ୟରୁ ଏକାଠି କରି ସେମାନଙ୍କର ଦକ୍ଷତା ବୃଦ୍ଧି କରିବା, ଏନେଇ ଆବଶ୍ୟକ ତାଲିମ ବା ପ୍ରଶିକ୍ଷଣ ପ୍ରଦାନ କରିବା କେନ୍ଦ୍ର ସରକାରଙ୍କ ପାଇଁ ଏକ ବଡ଼ ଆହ୍ୱାନ ।

ଆମ ରାଜ୍ୟରେ ଦକ୍ଷତା ବିକାଶ ନିମନ୍ତେ ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ବିଭାଗ କାର୍ଯ୍ୟ କରୁଛି । ୨୦୧୫ ଅଗଷ୍ଟଠାରୁ ଏହି ବିଭାଗ ପରିସରରେ ବୈଷୟିକ ଶିକ୍ଷା ଓ ତାଲିମ ନିର୍ଦ୍ଦେଶାଳୟ, ନିୟୋଜନ ନିର୍ଦ୍ଦେଶାଳୟ ଓ ଦକ୍ଷତା ବିକାଶ କର୍ତ୍ତୃପକ୍ଷ, ପ୍ରଯୁକ୍ତି ବିଶ୍ୱବିଦ୍ୟାଳୟ ଓ ତତ୍‌ସଂଲଗ୍ନ ମହାବିଦ୍ୟାଳୟ କାର୍ଯ୍ୟ କରୁଛନ୍ତି ।

୨୦୧୪-୧୫ ବର୍ଷରେ ରାସନପୁର, ବାରବୋଟ, ମୈଥିଲୀ, ବିସମକଟକ ଓ ରାୟଗଡ଼ (ଗଜପତି)ଠାରେ ୫ଟି ଆଇ.ଟି.ଆଇ ପ୍ରତିଷ୍ଠିତ ହୋଇଛି । ୨୦୧୭-୧୮ ଓ ୨୦୧୮-୧୯ ଆର୍ଥିକ ବର୍ଷରେ ୨୧ଟି ଆଇ.ଟି.ଆଇ (କଣ୍ଟାବାଞ୍ଜି, ବାଂଶପାଳ, ଭଣ୍ଡାରୀପୋଖରୀ, କରଞ୍ଜିଆ, ଆଠମଲ୍ଲିକ, କୋଟଗଡ଼, ଦାମନଯୋଡ଼ି, କୁତ୍ରା, କୋଇଡ଼ା, ଲାଞ୍ଜିଗଡ଼, କୃଷ୍ଣପ୍ରସାଦ, ନନ୍ଦପୁର, ବୀର ମହାରାଜପୁର ରାଜକନିକା, ବଡ଼ମ୍ବା, ଭଞ୍ଜନଗର, ଜଗତସିଂହପୁର, କପ୍ତିପଦା (ଉଦଳା), ପରଜଙ୍ଗ, ବାଲୁଗାଁ, କୋଟପାଡ଼ଠାରେ ପ୍ରତିଷ୍ଠା ହେବା ପାଇଁ ବ୍ୟବସ୍ଥା ହୋଇଛି । ଖୋର୍ଦ୍ଧା ଜିଲ୍ଲାର ଜଟଣୀ (ଖୁଦପୁର)ଠାରେ ଦିବ୍ୟାଙ୍ଗମାନଙ୍କ ପାଇଁ ଏକ ଆବାସିକ ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଛି । ଚଳିତ ବର୍ଷଠାରୁ ପ୍ରଥମ ଥର ପାଇଁ ଅନଲାଇନ୍ ମାଧ୍ୟମରେ ନାମଲେଖା କରାଯାଉଛି । ଏହି ଅନୁଷ୍ଠାନଗୁଡ଼ିକରେ ୫୨ଟି ଛାତ୍ରାବାସ ଓ ୩୨ ଗୋଟି ଛାତ୍ରୀନିବାସରେ ୪୯୭୯ ଛାତ୍ର ଓ ୧୮୭୪ ଛାତ୍ରୀମାନଙ୍କ ରହିବାର ବନ୍ଦୋବସ୍ତ କରାଯାଇଛି । ୨୦୧୪-୧୫ ବର୍ଷଠାରୁ ମୁଖ୍ୟ ତାଲିମ ନିଯୁକ୍ତି କେନ୍ଦ୍ର ୮୬୦୧ ଜଣ ଆଇ.ଟି.ଆଇ ଛାତ୍ରଛାତ୍ରୀଙ୍କୁ ନିଯୁକ୍ତି ବ୍ୟବସ୍ଥା ପ୍ରଦାନ କରିଛି । ଟିଚ୍ ଫର୍ ଓଡ଼ିଶା ଫେଲୋସିପ୍ ପ୍ରୋଗ୍ରାମ୍ ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ଉଚ୍ଚସ୍ତରୀୟ ମାର୍ଗଦର୍ଶନ ବ୍ୟବସ୍ଥାର ପ୍ରଚଳନକୁ

ସରକାର ଅନୁମୋଦନ କରିଛନ୍ତି । ଏଥିରେ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ 'ଲେଣ୍ଡ ଏ ହ୍ୟାଣ୍ଡ୍ ଇଣ୍ଡିଆ' ମାଧ୍ୟମରେ ଏହି କାର୍ଯ୍ୟକ୍ରମ କରାଯାଉଛି । ଶିକ୍ଷକମାନଙ୍କର ଉଚ୍ଚତର ପ୍ରଶିକ୍ଷଣ ପାଇଁ ୨୦୧୬-୧୭ ବର୍ଷରେ ତାଳଚେରଠାରେ ବିଜୁ ପଟ୍ଟନାୟକ ପ୍ରଶିକ୍ଷକ ତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇ ପ୍ରଶିକ୍ଷଣ ଆରମ୍ଭ ହୋଇଯାଇଛି । ଏତଦ୍‌ବ୍ୟତୀତ ଡି.ଜି.ଟି, ନୂଆଦିଲ୍ଲୀ ଦ୍ୱାରା ପରିଚାଳିତ ଶିକ୍ଷାନୁଷ୍ଠାନମାନଙ୍କରେ ୩୬୫ ଜଣ ସହକାରୀ ଟ୍ରେନିଂ ଶିକ୍ଷକମାନଙ୍କୁ ତାଲିମ ପ୍ରଦାନ କରାଯାଇଛି । ରାଜ୍ୟ ସରକାର ଭୁବନେଶ୍ୱର ବ୍ରହ୍ମପୁର, ରାଉରକେଲା, ଝାରସୁଗୁଡା, ଟିଟିଲାଗଡ ଏବଂ ଜୟପୁରଠାରେ ୧୦୫୦ କୋଟି ଟଙ୍କା ବ୍ୟୟରେ ୬ଗୋଟି ବିଶ୍ୱସ୍ତରୀୟ 'ଅତ୍ୟାଧୁନିକ ଦକ୍ଷତା ବିକାଶ ଅନୁଷ୍ଠାନ ପ୍ରତିଷ୍ଠା ନିମନ୍ତେ ନିଷ୍ପତ୍ତି ନେଇଛନ୍ତି । ଏହି ଅତ୍ୟାଧୁନିକ ଦକ୍ଷତା ବିକାଶ ଅନୁଷ୍ଠାନଗୁଡିକ ୩୦ ଗୋଟି ଜିଲ୍ଲାରେ ଥିବା ଆଇ.ଟି.ଆଇକୁ 'ହବ୍' ଓ 'ସ୍ପୋକ୍' ମଡେଲ ଜରିଆରେ ମାର୍ଗଦର୍ଶନ କରିବ । ରାଜ୍ୟରେ ୨୦୦୦-୦୧ରେ ପଲିଟେକ୍‌ନିକ୍ ସଂଖ୍ୟା ୧୩ ଥିବାବେଳେ ଛାତ୍ରଛାତ୍ରୀ ସଂଖ୍ୟା ୩୦୧୫ ଥିଲା ୨୦୧୬-୧୭ ବର୍ଷରେ ପଲିଟେକ୍‌ନିକ୍ ସଂଖ୍ୟା ୩୫ ଥିବାବେଳେ ଛାତ୍ରଛାତ୍ରୀ ସଂଖ୍ୟା ୮,୭୭୫ରେ ପହଞ୍ଚିଛି ।

ରାଜ୍ୟରେ ସମସ୍ତ ଜିଲ୍ଲାଗୁଡିକରେ ଯାନ୍ତ୍ରିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ରାଜ୍ୟ ସରକାର ଏହି ଅନୁଷ୍ଠାନଗୁଡିକ ପାଇଁ ୨୨୯ ଗୋଟି ଶିକ୍ଷକ ପଦବୀ ନିଯୁକ୍ତି ନିମନ୍ତେ ଅନୁମତି ପ୍ରଦାନ କରିଛନ୍ତି । ଓଡ଼ିଶା ଲୋକସେବା ଆୟୋଗ ଜରିଆରେ ନିଯୁକ୍ତି ନିମନ୍ତେ ସୁପାରିଶ କରାଯାଇଛି । ଓଡ଼ିଶା ଷ୍ଟାଫ୍ ସିଲେକ୍‌ସନ ଜରିଆରେ ୪୪୯ ଗୋଟି ଆସିଷ୍ଟାଣ୍ଟ ଟ୍ରେନିଂ ଅଫିସର ଚୟନ ନିମନ୍ତେ ସୁପାରିଶ କରାଯାଇଛି ।

ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ବିଭାଗ ପକ୍ଷରୁ ବହୁ ଛାତ୍ରମଙ୍ଗଳକାରୀ ଯୋଜନା କାର୍ଯ୍ୟକାରୀ ହେଉଛି । ସେଗୁଡିକ ହେଲା–

ଜନଜାତି, ଉପଜାତି ଛାତ୍ରୀ ଓ ଦିବ୍ୟାଙ୍ଗ ଛାତ୍ରଛାତ୍ରୀଙ୍କ ପାଇଁ ଶିଳ୍ପ ତାଲିମ ଅନୁଷ୍ଠାନ ଓ ଯାନ୍ତ୍ରିକ ବିଦ୍ୟାଳୟରେ ଟ୍ୟୁସନ ଫି' ଛାଡ କରାଯାଇଛି ।

ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନର ଦିବ୍ୟାଙ୍ଗ ଛାତ୍ରଛାତ୍ରୀମାନଙ୍କ ପାଇଁ ଦେୟମୁକ୍ତ ତାଲିମ ନିମନ୍ତେ ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ଆର୍ଥିକ ସହାୟତା ପ୍ରଦାନର ବ୍ୟବସ୍ଥା କରିଛନ୍ତି ।

କୋଠା ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକମାନଙ୍କର ସନ୍ତାନସନ୍ତତିଙ୍କ ନିମନ୍ତେ କୋଠା ଓ ନିର୍ମାଣ ଶ୍ରମିକ ପରିଷଦ ଦ୍ୱାରା ଶିକ୍ଷାଖର୍ଚ୍ଚ ବହନ କରିବାର ବନ୍ଦୋବସ୍ତ କରାଯାଇଛି ।

ମେଧାବୃତ୍ତି ରାଶିକୁ ମାସିକ ୫୫ ଟଙ୍କାରୁ ୨୫୦ ଟଙ୍କାକୁ ବୃଦ୍ଧି କରାଯାଇଛି ।

ମେଧା ତଥା ଦାରିଦ୍ର୍ୟ ବୃତ୍ତି ରାଶିକୁ ମାସିକ ୫୦ ଟଙ୍କାରୁ ୨୫୦ ଟଙ୍କା ଏବଂ ୨୦୦ ଟଙ୍କାରୁ ୩୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ୨୦୧୬-୧୭ ଶିକ୍ଷାବର୍ଷରେ ୧୦୧୩ ଜଣ ଶିଳ୍ପ ତାଲିମ ଅନୁଷ୍ଠାନ ଓ ଯାନ୍ତ୍ରିକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ଏହି ବୃତ୍ତି ପ୍ରଦାନ କରାଯାଇଛି ।

ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନଗୁଡିକରେ ଛାତ୍ରଛାତ୍ରୀମାନଙ୍କ ପାଇଁ ଡ୍ରେସ୍ କୋଡ୍ ନିୟମ ପ୍ରଚଳନ କରାଯାଇଛି । ଏଥିପାଇଁ ପ୍ରତ୍ୟେକ ପ୍ରଶିକ୍ଷାର୍ଥୀଙ୍କୁ ୩୦୦୦ ଟଙ୍କା ବ୍ୟାଙ୍କ୍ ପାସ୍‌ବୁକ୍ ମାଧ୍ୟମରେ ପ୍ରଦାନ କରାଯାଇଛି ।

ଛାତ୍ରଛାତ୍ରୀଙ୍କ ପିତାମାତା ଅଥବା ଆର୍ଥିକ ଅଭିଭାବକଙ୍କ ମୃତ୍ୟୁ ଘଟିଲେ ଛାତ୍ରଛାତ୍ରୀ ମଙ୍ଗଳ ଯୋଜନା ଜରିଆରେ ଛାତ୍ରଛାତ୍ରୀଙ୍କୁ ଡିପ୍ଲୋମା ପାଠ୍ୟକ୍ରମ ସରିବା ପର୍ଯ୍ୟନ୍ତ ସହାୟତା ରାଶି ପ୍ରଦାନ କରାଯାଉଛି । ଡିପ୍ଲୋମା ସେମିଷ୍ଟାର ପରୀକ୍ଷାରେ ଶୀର୍ଷସ୍ଥାନ ଅଧିକାର କରିଥିବା ଛାତ୍ରଛାତ୍ରୀଙ୍କୁ ୬୦୦୦ ଟଙ୍କାର ମେଧାବୃତ୍ତି ରାଶି ପ୍ରଦାନ କରାଯିବାର ପ୍ରଥା ପ୍ରଚଳନ କରାଯାଇଛି । ୨୦୧୭ ମେ' ମାସ ପର୍ଯ୍ୟନ୍ତ ୧୧୦୯ ଜଣ ଛାତ୍ରଛାତ୍ରୀଙ୍କୁ ଉକ୍ତ ଯୋଜନା ମାଧ୍ୟମରେ ୬୪.୫୬ ଲକ୍ଷ ଟଙ୍କା ପ୍ରଦାନ କରାଯାଇଛି ।

ସଂପ୍ରତି ରାଜ୍ୟରେ ୩୨ଟି ଦକ୍ଷତା ବିକାଶ କେନ୍ଦ୍ର ପ୍ରତିଷ୍ଠା ହୋଇଛି ଏବଂ କାର୍ଯ୍ୟକ୍ଷମ ଓ ତାଲିମ ଆରମ୍ଭ ହୋଇଥିବା ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା ୧୩ ଅଟେ । ସେହିପରି ପ୍ରତିଷ୍ଠା ହୋଇଥିବା ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା

୧୪ ଥିବାବେଳେ କାର୍ଯ୍ୟକ୍ଷମ ଓ ତାଲିମ ଆରମ୍ଭ ହୋଇଥିବା ସଂପ୍ରସାରିତ ଦକ୍ଷତା ବିକାଶ କେନ୍ଦ୍ର ସଂଖ୍ୟା ୧୩ ଅଟେ ।

ମୁଖ୍ୟମନ୍ତ୍ରୀଙ୍କ ନିଯୁକ୍ତି ସୃଷ୍ଟିକାରୀ ଯୋଜନାରେ ୨୦୧୪–୧୫ରୁ ୨୦୧୮–୧୯ (ପାଞ୍ଚବର୍ଷ ମଧ୍ୟରେ) ୧୧ଲକ୍ଷ ଯୁବକଯୁବତୀଙ୍କୁ ପ୍ରଶିକ୍ଷଣ ଦିଆଯିବ । ବିଗତ ତିନିବର୍ଷରେ ପ୍ରଶିକ୍ଷିତ ଯୁବକ/ଯୁବତୀଙ୍କ ସଂଖ୍ୟା ୪,୬୯,୪୦୯, ୨୦୧୪–୧୫ ବର୍ଷରେ ୯,୬୭୮ ଯୁବକ/ଯୁବତୀଙ୍କୁ କର୍ମ ନିୟୋଜନ ମିଳିଥିବା ବେଳେ ୨୦୧୬–୧୭ ବର୍ଷରେ ୨୮,୫୮୯ ଜଣ ନିଯୁକ୍ତି ପାଇଛନ୍ତି । ବିଭାଗ ପକ୍ଷରୁ ମଧ୍ୟ ନିଯୁକ୍ତି ମେଳା ଓ ସେନାବାହିନୀରେ ନିଯୁକ୍ତି ର୍ୟାଲିର ଆୟୋଜନ କରାଯାଇଛି ।

ଓଡ଼ିଶାରେ ଦକ୍ଷତା ହାସଲ କରିଥିବା ଯୁବ ସମାଜକୁ ବିଶ୍ୱ ଦରବାରରେ ପହଞ୍ଚାଇବା ଲକ୍ଷ୍ୟ ନେଇ ଓ ସେମାନଙ୍କୁ ଉଚ୍ଚକୋଟୀର ତାଲିମ ମାଧ୍ୟମରେ ସମ୍ପୂର୍ଣ୍ଣ ଦକ୍ଷ କରାଇବା ସହିତ ସେମାନଙ୍କର ଆଶା ଓ ଆକାଂକ୍ଷାକୁ ପୂରଣ କରିବା ନିମନ୍ତେ ୨୦୧୬–୧୭ରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଗଠନ କରାଯାଇଛି । ଦଶମ ପାସ୍ କରିଥିବା ବିଶେଷ କରି ଏକାନ୍ତ ଆଦିମ ଜନଜାତି, ଛାତ୍ରୀ ଓ ଦିବ୍ୟାଙ୍ଗମାନଙ୍କୁ ପ୍ରବର୍ତ୍ତାଇ ଆଇ.ଟି.ଆଇରେ ନାମ ଲେଖାଇବା ପାଇଁ ଜିଲ୍ଲାପାଳ ଆଇ.ଟି.ଆଇ ଅଧ୍ୟକ୍ଷ ଓ ଅନ୍ୟାନ୍ୟ କ୍ଷେତ୍ରୀୟ ଅଫିସରଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ରାଜ୍ୟର ମୋଟ୍ ୪୯ଟି ସରକାରୀ ଆଇ.ଟି.ଆଇ ଏନ୍‌ସିଭି.ଟି ନୂଆଦିଲ୍ଲୀ/ଏସ୍.ସି.ଟି. ଇଭିଟି ଓଡ଼ିଶା ଦ୍ୱାରା ସହବନ୍ଧିତ ହୋଇ କାର୍ଯ୍ୟ କରୁଛି । ଏହି ସରକାରୀ ଆଇ.ଟି.ଆଇଗୁଡ଼ିକରେ ମୋଟ୍ ୧୭,୪୦୦ ଛାତ୍ରଛାତ୍ରୀ ନାମ ଲେଖାଇବାର ବ୍ୟବସ୍ଥା ରହିଛି । ଭିନ୍ନକ୍ଷମମାନଙ୍କ ପାଇଁ ଜଟଣୀ (ଖୁଦୁପୁର)ଠାରେ ଏକ ସ୍ୱତନ୍ତ୍ର ଆଇ.ଟି.ଆଇ ପ୍ରତିଷ୍ଠା କରାଯାଇଛି । ଏହାବ୍ୟତୀତ ରାଜ୍ୟ ଯୋଜନା ଓ କେନ୍ଦ୍ରୀୟ ଯୋଜନାରେ ମୋଟ୍ ୨୨ଗୋଟି ନୂତନ ସରକାରୀ ଆଇ.ଟି.ଆଇମାନ ସ୍ଥାପନ ନିମନ୍ତେ ପଦକ୍ଷେପ ନିଆଯାଇଛି ।

ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଜୁଲାଇ ୧୫ ତାରିଖ ଦିନ ବିଶ୍ୱ ଯୁବ ଦକ୍ଷତା ଦିବସ ୨୦୧୭ ପାଳନ ଅବସରରେ ଓଡ଼ିଶା ସରକାରଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ ହୋଇଥିବା ଭିନ୍ନକ୍ଷମମାନଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ ହୋଇଥିବା ଭିନ୍ନକ୍ଷମମାନଙ୍କ ପାଇଁ ଜଟଣୀର ଖୁଦୁପୁରଠାରେ ଏକ ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନର ଶୁଭ ଉଦ୍‌ଘାଟନ କରିଛନ୍ତି । ଏହି ଅନୁଷ୍ଠାନ ନିମିତ୍ତ ଏକର ୧୪.୭୬୦ ଡିସିମିଲ ସରକାରୀ ଜମି ଅଧିଗ୍ରହଣ କରାଯାଇଛି, ଓଡ଼ିଶା ସରକାରଙ୍କର ଏସ୍‌ଡି ଓ ଟି.ଇ. ଏବଂ ଏସ୍.ଏସ୍.ଇ.ପି.ଡି. ବିଭାଗର ମିଳିତ ସହଯୋଗରେ ପ୍ରଥମ ପର୍ଯ୍ୟାୟରେ ଏହି ସ୍ୱତନ୍ତ୍ର ଅନୁଷ୍ଠାନଟିରେ ୧୧ଟି ଟ୍ରେଡ୍ ମଞ୍ଜୁର କରାଯାଇଛି । ଏହି ଅନୁଷ୍ଠାନଟିରେ ଆବଶ୍ୟକୀୟ ଭିତ୍ତିଭୂମି ଯଥା : ଉନ୍ନତମାନର ଯନ୍ତ୍ରପାତିଯୁକ୍ତ କର୍ମଶାଳା ଶ୍ରେଣୀଗୃହ, କମ୍ପ୍ୟୁଟର କକ୍ଷ, ବିଦ୍ୟୁତିକରଣ, ସବୁଜିମା ଭରା କ୍ୟାମ୍ପସ ଓ ଦୁଇ ମହଲା ବିଶିଷ୍ଟ ୧୦୦ ସ୍ଥାନ ବିଶିଷ୍ଟ ଛାତ୍ରାବାସ ରହିଛି । ଏହି ଅନୁଷ୍ଠାନରେ ୧୦୦% ସ୍ଥାନ ଶତକଡା ୬୦%ରୁ ଊର୍ଦ୍ଧ୍ୱ ଥିବା ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କ ପାଇଁ ସଂରକ୍ଷିତ ଅଟେ । ଚଳିତ ବର୍ଷର ବିଶ୍ୱ ଯୁବଦକ୍ଷତା ଦିବସ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ 'ଦକ୍ଷତା ରଥ'ର ମଧ୍ୟ ଶୁଭାରମ୍ଭ କରିଥିଲେ । ସଚେତନତା ସୃଷ୍ଟି ନିମନ୍ତେ ଏହି ରଥ ଜିଲ୍ଲାସ୍ତରରେ ୧୫ଦିନରେ ୧୦ହଜାର କିଲୋମିଟର ଅତିକ୍ରମ କରିଥିଲା ।

ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଏବଂ ସିଙ୍ଗାପୁରସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍– ଏଜୁକେସନ୍ ସର୍ଭିସେସ୍ (ଏହା ଆଇ.ଟି.ଆଇ. ସିଙ୍ଗାପୁରର ଏକ ସହାୟକ ସଂସ୍ଥା) ମଧ୍ୟରେ ନଭେମ୍ବର ୨ ତାରିଖ ଭୁବନେଶ୍ୱରଠାରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଅଛି । ଏହି ଚୁକ୍ତିନାମା ରାଜ୍ୟର ସାମୂହିକ ବୈଷୟିକ ଶିକ୍ଷାର ପ୍ରଗତିରେ ଏକ ଯୁଗାନ୍ତକାରୀ ପଦକ୍ଷେପ ଅଟେ । ଏହି ଚୁକ୍ତିନାମା ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କର ଓଡ଼ିଶାରେ ବୈଷୟିକ ଶିକ୍ଷାର ଉନ୍ନତିର ଏକ ମାନସ ଚିତ୍ର ।

ଏହି ବୁଝାମଣାର ଏକ ଅଂଶ ସ୍ୱରୂପ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ –ଏଜୁକେସନ୍ ସର୍ଭିସେସ୍ (ଆଇଟିଇଏସ୍) ତାଙ୍କର ବୈଷୟିକ ଏବଂ ଧନ୍ଦାମୂଳକ ଶିକ୍ଷା କ୍ଷେତ୍ରରେ ଥିବା ଅଭିଜ୍ଞତାକୁ ପାଥେୟ କରି ଓଡ଼ିଶା ଦକ୍ଷତା

ବିକାଶ କର୍ତ୍ତୃପକ୍ଷଙ୍କ ମାଧ୍ୟମରେ ତାଲିମ ବିକାଶ ଏବଂ ଧନ୍ଦାମୂଳକ ଶିକ୍ଷା ମାନର ଉନ୍ନତି ନିମନ୍ତେ ପରାମର୍ଶ ଏବଂ ମାର୍ଗଦର୍ଶନ ଦେବେ । ପ୍ରାରମ୍ଭରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ –ଏଜୁକେସନ୍ ସର୍ଭିସେସ୍(ଆଇଟିଇଏସ୍), ଅଗ୍ରଣୀ ୧୦୦ଟି ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନର ମୁଖ୍ୟମାନଙ୍କର 'ନେତୃତ୍ୱ ବିକାଶ' ଉପରେ ଏକ ଦୁଇ ସପ୍ତାହ ତାଲିମ କାର୍ଯ୍ୟକ୍ରମ ଆୟୋଜନ କରିବ । ଏହି କାର୍ଯ୍ୟକ୍ରମର ମୂଳ ଲକ୍ଷ୍ୟ ହେଉଛି ଓଡ଼ିଶାରେ ମାନବ ଏବଂ ସାମାଜିକ ସମ୍ବଳର ବିକାଶ, ସାମୂହିକ ଗୋଷ୍ଠୀ ପ୍ରଗତିର ଉନ୍ନତିରେ ଅବଦାନ ଓ ଦକ୍ଷତା ବିକାଶ ଏବଂ ବୃତ୍ତିଗତ ତାଲିମର ଉନ୍ନତିରେ ସହାୟକ ହେବା । ଏତଦ୍‌ବ୍ୟତୀତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ – ଏଜୁକେସନ୍ ସର୍ଭିସେସ୍(ଆଇଟିଇଏସ୍) ମଧ୍ୟ ବୈଷୟିକ, ଧନ୍ଦାମୂଳକ ଶିକ୍ଷା ଏବଂ ତାଲିମର ପ୍ରଗତି ନିମନ୍ତେ ଓଏସ୍‌ଡିଏକୁ ପରାମର୍ଶ ଦେବା ସହିତ ପ୍ରସ୍ତାବିତ ଆଡ୍‌ଭାନ୍ସ ସ୍କିଲ୍ ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍‌ମାନଙ୍କର ଗଠନରେ ସହାୟକ ହେବେ ତାହାଦ୍ୱାରା ଯୁବପିଢ଼ିଙ୍କୁ ଉନ୍ନତମାନର ବୈଷୟିକ ଶିକ୍ଷା ପ୍ରଦାନ କରାଯାଇପାରିବ ।

ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ ଏହି ବୁଝାମଣାପତ୍ରଟି ଓଡ଼ିଶା ସରକାରଙ୍କ ତରଫରୁ ତାଲିମ ବିକାଶ ଏବଂ ବୈଷୟିକ ଶିକ୍ଷାର ଶାସନ ସଚିବ ଶ୍ରୀଯୁକ୍ତ ସଞ୍ଜୟ କୁମାର ସିଂହ ଏବଂ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ –ଏଜୁକେସନ୍ ସର୍ଭିସେସ୍(ଆଇଟିଇଏସ୍) ସିଙ୍ଗାପୁର ତରଫରୁ ଶ୍ରୀ ବ୍ରୁସ୍ ପୋହ, ମୁଖ୍ୟ କାର୍ଯ୍ୟ ନିର୍ବାହୀ ଅଧିକାରୀଙ୍କ ମଧ୍ୟରେ ସ୍ୱାକ୍ଷରିତ ହୋଇଥିଲା ।

୨୦୧୬ ମସିହାରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଓଡ଼ିଶାରେ ଦକ୍ଷତା ବିକାଶର ଶୀର୍ଷ ସଂସ୍ଥା ରୂପେ ଗଠନ କରାଯାଇଅଛି । ଏହା ରାଜ୍ୟରେ ଦକ୍ଷତା ବିକାଶ କାର୍ଯ୍ୟକ୍ରମର ମାର୍ଗଦର୍ଶନ, ସୁପରିଚାଳନା ତଥା ସଠିକ୍ ତତ୍ତ୍ୱାବଧାନ ଦ୍ୱାରା ଦକ୍ଷତା ବିକାଶର ମାନବୃଦ୍ଧି କରିବା ସହିତ ଏକ ଆନ୍ତର୍ଜାତିକ ସ୍ତରର କୁଶଳୀ କାରିଗର ଗୋଷ୍ଠୀ ନିର୍ମାଣ କରିବା ପାଇଁ ଅଙ୍ଗୀକାରବଦ୍ଧ । (www.skillodisha.gov.in)

ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ – ଏଜୁକେସନ୍ ସର୍ଭିସେସ୍(ଆଇଟିଇଏସ୍) ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନିକାଲ ଏଜୁକେସନ୍ (ଆଇଟିଆଇ) ସିଙ୍ଗାପୁରର ଏକ ସମ୍ପୂର୍ଣ୍ଣ ସହଭାଗୀ ସଂସ୍ଥା ଅଟେ, ଯାହା ଜାନୁଆରୀ ୨୦୦୩ ମସିହାରେ ଏହି କମ୍ପାନୀର ବୈଷୟିକ ଏବଂ ଧନ୍ଦାମୂଳକ ଶିକ୍ଷାରେ ଥିବା ପାରଦର୍ଶିତାକୁ ବିଶ୍ୱ ଦରବାରରେ ପହଞ୍ଚାଇବା ନିମନ୍ତେ ଗଠନ କରାଯାଇଥିଲା । ଅଦ୍ୟାବଧି ଏହି ସଂସ୍ଥା ବିଶ୍ୱର ୨୭ଟି ଦେଶରେ ପରାମର୍ଶ ଏବଂ ତାଲିମର କାର୍ଯ୍ୟକ୍ରମ ହାତକୁ ନେଇଛି । (WWW.itees.com.sg)

କୌଣସି ରାଷ୍ଟ୍ରର ଆର୍ଥିକ ଓ ସାମାଜିକ ମାନଦଣ୍ଡ ଏହାର ନାଗରିକମାନଙ୍କର କାର୍ଯ୍ୟ କୁଶଳତା ଓ ଉତ୍ପାଦନ କ୍ଷମତା ଉପରେ ନିର୍ଭର କରେ । ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକରେ ଶତକଡ଼ା ୬୦ରୁ ୯୦ ପ୍ରତିଶତ ନାଗରିକ କୁଶଳୀ ହୋଇଥିବା ବେଳେ ଭାରତବର୍ଷରେ ଶତକଡ଼ା ୧୨ ପ୍ରତିଶତ ନାଗରିକ କୁଶଳୀ ଅଟନ୍ତି । ଶତକଡ଼ା ୯୨ ଭାଗ ଲୋକ ଅଣସଂଗଠିତ କ୍ଷେତ୍ରରେ କାର୍ଯ୍ୟରତ । ଭାରତର ୫୫ ପ୍ରତିଶତରୁ ଅଧିକ ୩୦ ବର୍ଷରୁ କମ୍ । ପ୍ରତ୍ୟେକ ବର୍ଷ ଭାରତରୁ ୧କୋଟି ୨୮ ଲକ୍ଷ ଲୋକ ଶ୍ରମକ୍ଷେତ୍ରକୁ ଯାଉଥିବା ବେଳେ ଏହାର ବର୍ତ୍ତମାନର ଦକ୍ଷତା ବିକାଶ କ୍ଷମତା ମାତ୍ର ୩୧ ଲକ୍ଷ ଅଟେ । ତେଣୁ, ଅଧିକରୁ ଅଧିକ ଯୁବକଯୁବତୀଙ୍କୁ କୁଶଳୀ ତାଲିମ ମାଧ୍ୟମରେ ସେମାନଙ୍କର ଉତ୍ପାଦନ କ୍ଷମତା ବୃଦ୍ଧି କରାଇବା ଆବଶ୍ୟକ । ଏଥିପାଇଁ ଯୁବଶକ୍ତିର ଇଚ୍ଛାଶକ୍ତି ଓ ଆଗ୍ରହ ମଧ୍ୟ ଜରୁରୀ ।

ସୂଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର



# ଜଗନ୍ନାଥ ସଂସ୍କୃତି

ବିକ୍ରମ ମହାରଣା

ବିଶ୍ୱ ନିୟନ୍ତା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଶତାବ୍ଦୀ ଶତାବ୍ଦୀ ଧରି ପୌରାଣିକ ଆଖ୍ୟାନ ପ୍ରଚଳିତ ରହସ୍ୟମୟ କିମ୍ବଦନ୍ତୀ ଓ ଇତିହାସ ଜଗନ୍ନାଥ ସଂସ୍କୃତି ରୂପେ ପରିଗଣିତ । ପ୍ରଭୁଙ୍କ ଆବିର୍ଭାବ ଓ ବିବର୍ତ୍ତନର ସବିଶେଷ ତଥ୍ୟ ରହସ୍ୟ ଘେରରେ ଥିଲେ ମଧ୍ୟ ପୁରାଣ ତଥା ପ୍ରାଚୀନ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ମହିମା ସଂପର୍କରେ ବର୍ଣ୍ଣିତ ଅଛି । କିମ୍ବଦନ୍ତୀ କହେ କି, ଶ୍ରୀଜଗନ୍ନାଥ ମୂଳତଃ ଶବର ଜାତିର ଆଦିମ ଅଧିବାସୀଙ୍କ ଦ୍ୱାରା ପୂଜିତ ହେଉଥିଲେ । ଏହି ବିଶ୍ୱାସର ଅତି ଗୁରୁତ୍ୱପୂର୍ଣ୍ଣ ପ୍ରମାଣ ରୂପେ ଗୋଟିଏ ବର୍ଗର ସେବକଙ୍କ ଅବସ୍ଥିତି ଅଛି ଯେଉଁମାନଙ୍କୁ ଦଇତା ଭାବେ ସମ୍ବୋଧନ କରାଯାଏ । ସେମାନଙ୍କୁ ଆଦିବାସୀ ବଂଶର ବୋଲି ଗଣାଯାଏ ଏବଂ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ସେବାରେ ତାଙ୍କର ମୁଖ୍ୟ ଭୂମିକା ଅଦ୍ୟାବଧି ପରିଦୃଷ୍ଟ ହୋଇଥାଏ ।



ସମୟାନୁକ୍ରମେ, ଜଗନ୍ନାଥ ସଂସ୍କୃତି ଆର୍ଯ୍ୟ ସଂସ୍କୃତିର ରୂପ ନେଲା । ଶୈବ, ଶାକ୍ତ, ବୈଷ୍ଣବ, ଜୈନ ଓ ବୌଦ୍ଧ ପ୍ରମୁଖ ଧର୍ମବିଶ୍ୱାସ ଶ୍ରୀଜଗନ୍ନାଥ ସଂସ୍କୃତିରେ ମିଶି ଗୋଟିଏ ଦର୍ଶନ ରୂପେ ବିଭିନ୍ନତାରେ ଏକତାର ପ୍ରତୀକ ହେଲା ।

କେତେକ ଗବେଷକ ପ୍ରଭୁ ଶ୍ରୀଜଗନ୍ନାଥ, ପ୍ରଭୁ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଜୈନ ତ୍ରିମୂର୍ତ୍ତିର ସମ୍ୟକ ଜ୍ଞାନ, ସମ୍ୟକ ଚରିତ୍ର ଓ ସମ୍ୟକ ଦୃଷ୍ଟି ରୂପେ ଅଭିହିତ କରିଥାନ୍ତି । ଅନ୍ୟ କେତେକ ଏହି ତ୍ରିମୂର୍ତ୍ତିଙ୍କୁ ବୌଦ୍ଧ ଧର୍ମର ବୁଦ୍ଧ, ଧର୍ମ ଓ ସଂଘ ରୂପେ ବିଚାର କରନ୍ତି । ଏହା ମଧ୍ୟ ବିଶ୍ୱାସ କରାଯାଏ କି, ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ମଧ୍ୟରେ ଗୁପ୍ତରେ ସ୍ଥାପିତ ରହସ୍ୟମୟ ପଦାର୍ଥଟି ହେଉଛି ପ୍ରଭୁ ଗୌତମ ବୁଦ୍ଧଙ୍କ ଦନ୍ତର ଅଂଶବିଶେଷ । ତନ୍ତ୍ର ଦର୍ଶନ ଯାହା ସମୟକ୍ରମେ ବୌଦ୍ଧ ଧର୍ମର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟିଯାଇଥିଲା ତାହା ଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ରୀତିନୀତିରେ ଉଲ୍ଲେଖନୀୟ ପ୍ରଭାବ ପକାଇଥିଲା ।

ଏଣୁ ଶ୍ରୀଜଗନ୍ନାଥ ଦର୍ଶନ ସମସ୍ତ ସଂଜ୍ଞାକୁ ଉପେକ୍ଷା କରି ସମସ୍ତ ବର୍ଗ ଓ ଜାତିର ବିଶ୍ୱାସ ମଧ୍ୟରେ ଏକତାର ଅନୁଭବ ଆଣିଥିବା ସାମଗ୍ରିକ ଚେତନା ଅଟେ ।

◆◆◆

**ପୁରୀ**

ପୁରୀ ହେଉଛି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ, ଭାରତର ଚାରି ଧାମ ମଧ୍ୟରୁ ଅନ୍ୟତମ ଏବଂ ପବିତ୍ର ସ୍ଥାନମାନଙ୍କ ମଧ୍ୟରେ ପବିତ୍ରତମ । ଏହା ବଙ୍ଗୋପସାଗର କୂଳରେ ଅବସ୍ଥିତ ଓ ଓଡିଶାର ରାଜଧାନୀ ଭୁବନେଶ୍ୱରଠାରୁ ୬୯ କି.ମି. ଦୂର । ପୁରୀ ଶତାବ୍ଦୀ ଶତାବ୍ଦୀ ଧରି ହିନ୍ଦୁ ପୂଜା ପଦ୍ଧତିର ମୁଖ୍ୟ କେନ୍ଦ୍ର ହୋଇଆସିଛି ଏବଂ ଦେଶର ସର୍ବୋତ୍ତମ ପର୍ଯ୍ୟଟନ କ୍ଷେତ୍ର ରୂପେ ପରିଗଣିତ ହୋଇପାରିଛି ।

ପୁରାଣ ଏବଂ ଅନ୍ୟ କେତେକ ପୁରାତନ ସଂସ୍କୃତ ଗ୍ରନ୍ଥ ଏହି ପବିତ୍ର ନଗରୀକୁ ନୀଳାଚଳ, ନୀଳଗିରି, ନୀଳାଦ୍ରୀ ପୁରୁଷୋତ୍ତମ କ୍ଷେତ୍ର, ଶ୍ରୀକ୍ଷେତ୍ର ତଥା ଶଙ୍ଖ କ୍ଷେତ୍ର ରୂପେ ଅଭିହିତ କରିଛନ୍ତି ।

ଶ୍ରୀକ୍ଷେତ୍ର ପୁରୀରେ ଯେ କେବଳ ଏହାର ମନ୍ଦିର ପବିତ୍ର ତା' ନୁହେଁ ବରଂ ଏହି ସହରକୁ ଘେରି ରହିଥିବା ପ୍ରତ୍ୟେକଟି ବସ୍ତୁକୁ ବଡ ଓ ସୁନ୍ଦର ରୂପେ ଗଣାଯାଏ । ଏଠାର ସମୁଦ୍ର ମହୋଦଧି ରୂପେ ପରିଚିତ । ଏହି ସହରର ମୁଖ୍ୟ ରାସ୍ତା ବଡ ଦାଣ୍ଡ ରୂପେ କଥିତ । ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ଭୋଗ ମହାପ୍ରସାଦ ରୂପେ ଜଣାଶୁଣା । ଏଠାକାର ଶ୍ମଶାନ ସ୍ଥଳୀ ସ୍ୱର୍ଗଦ୍ୱାର ରୂପେ ପରିଗଣିତ ହୋଇଥାଏ ।

ପୁରୀ ସହରର କେନ୍ଦ୍ର ଭାଗରେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଅବସ୍ଥିତ ଏବଂ ଏହାର ଚତୁଃପାର୍ଶ୍ୱରେ ଅନେକ ଗଳି, ସାହି ଇତ୍ୟାଦି ଏକ ପଙ୍ଖା ଆକାରରେ ଏବଂ ବଡ ଦାଣ୍ଡଟି ପଙ୍ଖାର ହାତମୁଠା ଭଳି ପରିବ୍ୟାପ୍ତ । ଏହି ସହରର ପଶ୍ଚିମରେ ହରଚଣ୍ଡୀ ସାହି, ଦକ୍ଷିଣରେ ବାଲିସାହି, ଉତ୍ତରରେ ଦୋଳମଣ୍ଡପ ସାହି ଏବଂ ଚୁଡାଙ୍ଗ ସାହି ଅବସ୍ଥିତ । ଶ୍ରୀମନ୍ଦିର ବ୍ୟତୀତ ପୁରୀରେ ଅସଂଖ୍ୟ କ୍ଷୁଦ୍ରାକୃତି ମନ୍ଦିର ଅଛି ଯେଉଁଠାରେ ଶିବ, କାଳୀ ଏବଂ ହନୁମାନଙ୍କ ପୂଜାର୍ଚ୍ଚନା କରାଯାଏ । ଏତଦ୍ ବ୍ୟତୀତ, ଏଠାରେ ଅନେକ ଧାର୍ମିକ ଅନୁଷ୍ଠାନ ଓ ମଠ ମଧ୍ୟ ବିଦ୍ୟମାନ ।

ପୁରୀର ସ୍ୱାସ୍ଥ୍ୟକର ଜଳବାୟୁ ଓ ପରିବେଶ ବର୍ଷସାରା ବିଶେଷତଃ ଗ୍ରୀଷ୍ମ ଋତୁରେ ସାରା ବିଶ୍ୱର ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଥାଏ । ବିଶ୍ୱର ଅତି ସୁନ୍ଦର ବେଳାଭୂମି ମଧ୍ୟରୁ ଏଠାରେ ଥିବା ବେଳାଭୂମି ଅନ୍ୟତମ । ପୁରୀ ସହର ଅସଂଖ୍ୟ କଳାକାର ଏବଂ ହସ୍ତଶିଳ୍ପୀଙ୍କ ବାସସ୍ଥାନ, ଯେଉଁମାନେ ଅନେକ ପ୍ରକାରର ବିରଳ ତଥା ଚିତାକର୍ଷକ ହସ୍ତଶିଳ୍ପ ପ୍ରସ୍ତୁତ କରିଥାନ୍ତି ।



# ଶ୍ରୀମନ୍ଦିର

ସଚ୍ଚିଦାନନ୍ଦ ବାରିକ

ଚତୁଃପାର୍ଶ୍ୱ ଅଞ୍ଚଳର ଉଚ୍ଚତାଠାରୁ ପ୍ରାୟ ୨୦ ଫୁଟ୍ ଉପରେ ଏକ ଉଚ୍ଚ ଭୂମି ନିଳାଦ୍ରୀ ଉପରେ ନିର୍ମିତ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଅପରୂପ ଦୃଶ୍ୟ ପ୍ରଦାନ କରିଥାଏ ଯାହା ମାଇଲ୍ ମାଇଲ୍ ଦୂରରୁ ଦୃଷ୍ଟିଗୋଚର ହୋଇଥାଏ । ମୁଖ୍ୟ ମନ୍ଦିର ତଥା ବିମାନର ଉଚ୍ଚତା ବଡଦାଣ୍ଡ ପଉନଠାରୁ ୨୧୪.୮'' ଅଧିକ । ଏହା ଓଡିଶା ମନ୍ଦିର ସ୍ଥାପତ୍ୟର 'ପଞ୍ଚରଥ' ଶୈଳୀର ଏକ ସୁନ୍ଦର ଉଦାହରଣ । ଉକ୍ତ ନିର୍ମାଣଶୈଳୀ ପ୍ରସିଦ୍ଧ ଗଙ୍ଗ ବଂଶର ରାଜା ଅନନ୍ତବର୍ମନ ଚୋଡଗଙ୍ଗ ଦେବ ( ୧୦୭୮–୧୧୪୭ )ଙ୍କ କୃତିତ୍ୱ । ମୁଖ୍ୟ ମନ୍ଦିରଟି ଚାରିଗୋଟି ଯଥା ବିମାନ ବା ବଡ ଦେଉଳ, ଜଗମୋହନ ବା ଦର୍ଶନ ମଣ୍ଡପ, ନାଟମଣ୍ଡପ ଓ ଭୋଗମଣ୍ଡପ ଭାଗରେ ବିଭକ୍ତ । ଉତ୍ତର ଓ ଦକ୍ଷିଣ ଦୁଇଗୋଟି ବାଟରେ ନାଟମଣ୍ଡପକୁ ପ୍ରବେଶ କରିହୁଏ । ନାଟମଣ୍ଡପରୁ ଜଗମୋହନ ପର୍ଯ୍ୟନ୍ତ ମୁଖ୍ୟ ପ୍ରବେଶ ପଥକୁ ଜୟ ବିଜୟ ଦ୍ୱାର କୁହାଯାଏ । ଏଥିସହ ଜଗମୋହନକୁ ଦକ୍ଷିଣ ପାର୍ଶ୍ୱରୁ ଅନ୍ୟ ଏକ ପ୍ରବେଶ ଦ୍ୱାର ଅଛି । ବିମାନକୁ ପ୍ରବେଶ ନିମନ୍ତେ ଥିବା ଗୋଟିଏ ମାତ୍ର ଦ୍ୱାରକୁ କଳହଟ ଦ୍ୱାର କୁହାଯାଇଥାଏ ଯାହା ଅତ୍ୟନ୍ତ ପବିତ୍ର ମନେକରାଯାଏ ।




ମହାପ୍ରଭୁ ଶ୍ରୀଜଗନ୍ନାଥ, ପ୍ରଭୁ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଚକ୍ରରାଜ ଶ୍ରୀସୁଦର୍ଶନ ଶ୍ରୀମନ୍ଦିର ରତ୍ନବେଦୀରେ ଅଧିଷ୍ଠିତ । ମା' ମହାଲକ୍ଷ୍ମୀ, ମା' ସରସ୍ୱତୀ ଏବଂ ମାଧବଙ୍କ କ୍ଷୁଦ୍ର ପ୍ରତିମୂର୍ତ୍ତି ମୁଖ୍ୟ ଠାକୁରଙ୍କ ସହ ସ୍ଥାନିତ ଓ ପୂଜିତ । ପ୍ରସ୍ତର ନିର୍ମିତ ଏହି ପବିତ୍ର ଆସ୍ଥାନଟି ୧୬ ଫୁଟ୍ ଲମ୍ବ, ୧୩ ଫୁଟ୍ ଓସାର ଏବଂ ୪ ଫୁଟ୍ ଉଚ୍ଚ ଅଟେ । ଏହି ଆସ୍ଥାନର ଚତୁଃପାର୍ଶ୍ୱରେ ପ୍ରଦକ୍ଷଣ ନିମନ୍ତେ ବ୍ୟବସ୍ଥା ଅଛି ।

ଶ୍ରୀମନ୍ଦିରର ଦୁଇଟି ବୃହତ ପ୍ରାଚୀର ଅଛି । ଏହି ପଥର ପ୍ରାଚୀର କୁର୍ମ ପ୍ରାଚୀର ( ଭିତର ପ୍ରାଚୀର ୪୦୦' X ୨୭୮') ଏବଂ ମେଘନାଦ ପ୍ରାଚୀର ( ବାହାର ପ୍ରାଚୀର ୬୬୫' X ୬୪୪' ଉଚ୍ଚତା ପ୍ରଭେଦ ୨୦' ରୁ ୨୪') ପୁରୁଷୋତ୍ତମ ଦେବ (୧୪୬୭–୧୪୯୭) ଏବଂ କପିଳେନ୍ଦ୍ର ଦେବ ( ୧୪୩୫–୧୪୬୭)ଙ୍କ ଦ୍ୱାରା ଯଥାକ୍ରମେ ନିର୍ମିତ ହୋଇଥିଲା । ସମଗ୍ର

ଶ୍ରୀମନ୍ଦିର ପରିସର ହେଉଛି ୧୦.୭ ଏକର । ଶ୍ରୀମନ୍ଦିର ଏବଂ ଭିତର ବେଢାର ମଧ୍ୟଭାଗକୁ ଏହାର କଚ୍ଛପ ଆକାର ଯୋଗୁଁ କୁର୍ମ ବେଢା କୁହାଯାଏ ।

ବାହାର ପ୍ରାଚୀରର ପୂର୍ବ, ଦକ୍ଷିଣ, ପଶ୍ଚିମ ଏବଂ ଉତ୍ତର ମଧ୍ୟଭାଗରେ ଚାରିଗୋଟି ଦ୍ୱାର ସିଂହ ଦ୍ୱାର, ଅଶ୍ୱ ଦ୍ୱାର, ବ୍ୟାଘ୍ର ଦ୍ୱାର ଏବଂ ହସ୍ତୀ ଦ୍ୱାର ରୂପେ ପରିଚିତ । କଥିତ ଅଛି, ଏହି ଚାରି ଦ୍ୱାର ଧର୍ମ, ମନ, ବୈରାଗ୍ୟ ଏବଂ ଐଶ୍ୱର୍ଯ୍ୟର ପ୍ରତୀକ ଅଟେ । ସିଂହ ଦ୍ୱାର ସମ୍ମୁଖରେ ଗୋଟିଏ ନିଦା ମୁଗୁନି ପଥରରେ ନିର୍ମିତ ଅରୁଣ ସ୍ତମ୍ଭ ବିଦ୍ୟମାନ ଏବଂ ଏହା ଉପରେ ସୁନ୍ଦର ଅରୁଣ ପ୍ରତିମା ଧ୍ୟାନ ମୁଦ୍ରାରେ ଆସୀନ ।

**ମହାପ୍ରଭୁଙ୍କ ଯାନିଯାତ ତଥା ମେଳାମହୋତ୍ସବ**

(୧) ଡିସେମ୍ବର–ଜାନୁୟାରୀ (ପୌଷ)–ନବାନ୍ନ ଓ ଧନୁ ସଂକ୍ରାନ୍ତି

(୨) ଜାନୁୟାରୀ–ଫେବୃୟାରୀ (ମାଘ)–ମକର ସଂକ୍ରାନ୍ତି ଏବଂ ଶ୍ରୀପଞ୍ଚମୀ

(୩) ଫେବୃୟାରୀ–ମାର୍ଚ୍ଚ ( ଫାଲ୍‌ଗୁନ)–ଦୋଳ ପୂର୍ଣ୍ଣିମା

(୪) ଅପ୍ରେଲ୍–ମଇ (ବୈଶାଖ)–ଚନ୍ଦନ ଯାତ୍ରା

(୫) ମଇ–ଜୁନ୍ (ଜ୍ୟେଷ୍ଠ)–ନୃସିଂହ ଜନ୍ମ ଏବଂ ସ୍ନାନ ଯାତ୍ରା

(୬) ଜୁନ୍–ଜୁଲାଇ (ଆଷାଢ)–ରଥଯାତ୍ରା ଏବଂ ବାହୁଡା ଯାତ୍ରା

(୭) ଜୁଲାଇ–ଅଗଷ୍ଟ (ଶ୍ରାବଣ)– ଝୁଲଣ ଯାତ୍ରା

(୮) ଅଗଷ୍ଟ–ସେପ୍ଟେମ୍ବର ( ଭାଦ୍ରବ)– କୃଷ୍ଣ ଜନ୍ମାଷ୍ଟମୀ ଏବଂ କାଳୀୟ ଦଳନ

(୯) ସେପ୍ଟେମ୍ବର–ଅକ୍ଟୋବର ( ଆଶ୍ୱିନ)– ଦୁର୍ଗା ପୂଜା ଏବଂ ଦଶହରା

(୧୦) ଅକ୍ଟୋବର–ନଭେମ୍ବର ( କାର୍ତ୍ତିକ)–ରାସ ପୂର୍ଣ୍ଣିମା, କାର୍ତ୍ତିକ ପୂର୍ଣ୍ଣିମା, ପଞ୍ଚୁକ

(୧୧) ନଭେମ୍ବର–ଡିସେମ୍ବର (ମାର୍ଗଶୀର)–ପ୍ରଥମାଷ୍ଟମୀ



# ରଥଯାତ୍ରା

ସାଧନା ମିଶ୍ର

ରଥଯାତ୍ରା ହେଉଛି ମହାପ୍ରଭୁଙ୍କର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଉତ୍ସବ । ଏହି ଧାର୍ମିକ ଉତ୍ସବଟି ପ୍ରତିବର୍ଷ ଜୁନ୍–ଜୁଲାଇ ମାସରେ ଅନୁଷ୍ଠିତ ହୋଇଥାଏ । ଦେଶବିଦେଶରୁ ଲକ୍ଷଲକ୍ଷ ଭକ୍ତଙ୍କୁ ଏହି ରଥଯାତ୍ରା ଆକର୍ଷିତ କରିଥାଏ । ଜଗତର ନାଥ ମହାପ୍ରଭୁ ଶ୍ରୀଜଗନ୍ନାଥ ବିଭିନ୍ନ ଧର୍ମ, ସଂପ୍ରଦାୟର ଭକ୍ତଗଣଙ୍କୁ ଦର୍ଶନ ଦେବା ନିମନ୍ତେ ତାଙ୍କ ପବିତ୍ର ଆସ୍ଥାନରୁ ବାହାରକୁ ଆସିଥାନ୍ତି । ଏହି ପବିତ୍ର ରଥଯାତ୍ରାରେ ଅଂଶଗ୍ରହଣ କରୁଥିବା ଭକ୍ତଗଣ ସ୍ୱର୍ଗାରୋହଣର ପୁଣ୍ୟ ଆହରଣ କରିଥାନ୍ତି ।




'ସ୍ନାନ ପୂର୍ଣ୍ଣିମା' ଏହି ଉତ୍ସବର ପ୍ରାରମ୍ଭିକ ପର୍ଯ୍ୟାୟ । ଏହି ପବିତ୍ର ଦିବସରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଏବଂ ଦେବୀ ସୁଭଦ୍ରା ସ୍ନାନବେଦୀ କଥିତ ଏକ ଖୋଲା ମଣ୍ଡପରେ ସ୍ନାନ କରିଥାନ୍ତି । ତତ୍‌ପରେ, ସେମାନେ ୧୫ ଦିନ ପାଇଁ ଅବସର ନିଅନ୍ତି ଯାହା ଅଣବସର ନାମରେ ଖ୍ୟାତ । ଅନବସର ପରେ ଦିଅଁମାନେ ବର୍ଣ୍ଣାଢ୍ୟ ଭବ୍ୟ ରୋଷଣୀ ମଧ୍ୟରେ ଶ୍ରୀମନ୍ଦିରରୁ ବାହାରି ନିଜ ନିଜ ରଥରେ ଆସୀନ ହୁଅନ୍ତି ଏବଂ ଏହାପରେ ନିର୍ଦ୍ଦିଷ୍ଟ ରୀତିନୀତି ହୋଇ ବହୁପ୍ରତୀକ୍ଷିତ 'ରଥଯାତ୍ରା' ଅନୁଷ୍ଠିତ ହୋଇଥାଏ ।

ବୌଦ୍ଧ, ଜୈନ ଏବଂ ହିନ୍ଦୁମାନଙ୍କ ବିଭିନ୍ନ ଶାସ୍ତ୍ରରେ ରଥଯାତ୍ରା ସଂପର୍କରେ ତଥ୍ୟ ମିଳିଥାଏ । ତେବେ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଥିବା ପ୍ରଚଳିତ ଧାରଣା ବିଶେଷ ଆଦୃତି ଲାଭ କରିପାରିଛି । ପ୍ରଚଳିତ ଧାରଣା ଅନୁଯାୟୀ, ମହାପ୍ରଭୁ ଶ୍ରୀଜଗନ୍ନାଥ ପ୍ରକୃତରେ ଓଡ଼ିଶାର ଏକ ଅନୁସୂଚିତ ଜନଜାତି 'ଶବର' ଦ୍ୱାରା ପୂଜିତ ହେଉଥିଲେ । ମନ୍ଦିରରୁ ସଂକ୍ଷିପ୍ତ ସମୟ ନିମନ୍ତେ ବାହାରକୁ ଆସି 'ପତିତ'ମାନଙ୍କୁ ଦର୍ଶନ ଦେଇ ସେମାନଙ୍କୁ ମୁକ୍ତି ଦେବା ମହାପ୍ରଭୁଙ୍କ ଏହି ରଥଯାତ୍ରାର ଉଦ୍ଦେଶ୍ୟ । ମହାପ୍ରଭୁ ଶ୍ରୀଜଗନ୍ନାଥ, ଭ୍ରାତା ଶ୍ରୀବଳଭଦ୍ର ଓ ଭଉଣୀ ଦେବୀ ସୁଭଦ୍ରାଙ୍କ ସୁସଜ୍ଜିତ ରଥ ତ୍ରୟ ହଜାର ହଜାର ଭକ୍ତଗଣଙ୍କ ଦ୍ୱାରା ଶ୍ରୀମନ୍ଦିରର ସିଂହଦ୍ୱାରଠାରୁ ପ୍ରାୟ ୩ କି.ମି. ଦୂର ଗୁଣ୍ଡିଚା ମନ୍ଦିର ନିକଟକୁ ଟାଣି ନିଆଯାଇଥାଏ । ଗୁଣ୍ଡିଚା ମନ୍ଦିରରେ ମହାପ୍ରଭୁ ଓ ଭାଇଭଉଣୀଙ୍କ ସପ୍ତଦିନ ବ୍ୟାପୀ ରହଣୀ ହୁଏ ।

ଯେତେବେଳେ ଶ୍ରୀକ୍ଷେତ୍ର ପୁରୀ ବଡଦାଣ୍ଡରେ ଦର୍ଶନାଭିଳାଷୀମାନଙ୍କ ଗହଣରେ ଏହି ସୁସଜ୍ଜିତ ରଥଗୁଡ଼ିକ ଆଗେଇଯାଉଥାଏ ସେତେବେଳେ ପରିବେଶ ଅତ୍ୟନ୍ତ ପବିତ୍ରମୟ ହୋଇଯାଇଥାଏ । ଗେରୁଆ ବସ୍ତ୍ର ପରିଧାନ ପୂର୍ବକ ମହାପ୍ରଭୁ ଶ୍ରୀଜଗନ୍ନାଥ ତଥା ଶ୍ରୀକୃଷ୍ଣଙ୍କ ପ୍ରତି ନିଜର ଭକ୍ତି ନୈବେଦ୍ୟ ବାଢ଼ି ଝାଂଜ ଓ ମୃଦଙ୍ଗ ତାଳେତାଳେ ବିଦେଶୀ ଭକ୍ତମଣ୍ଡଳୀଙ୍କ ନୃତ୍ୟ ଓ ଭକ୍ତି ସଂଗୀତ ବାସ୍ତବିକ୍ ଆନନ୍ଦଦାୟକ ।

ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ 'ବାହୁଡ଼ା ଯାତ୍ରା' ରୂପେ ସର୍ବଜନବିଦିତ ।

'ଗୁଣ୍ଡିଚା' ମନ୍ଦିରରେ ସପ୍ତଦିନ ବ୍ୟାପୀ ରହଣୀ ସାରି ଦଶମ ଦିବସ ତଥା ଆଷାଢ଼ ଶୁକ୍ଳପକ୍ଷରେ ତାଙ୍କର ବାହୁଡ଼ା ଯାତ୍ରା ଆରମ୍ଭ କରିଥାନ୍ତି । ରଥଯାତ୍ରା ପରି ବାହୁଡ଼ା ଯାତ୍ରା ସମାନ ରୀତିନୀତି ପୂର୍ବକ ସମାପନ ହୋଇଥାଏ । ଶ୍ରୀବଳଭଦ୍ରଙ୍କ ରଥ ପ୍ରଥମେ ଚଳମାନ ହୁଅନ୍ତି, ତତ୍‌ପରେ ଦେବୀ ସୁଭଦ୍ରା ଓ ଶେଷରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥ ଶ୍ରୀମନ୍ଦିର ଅଭିମୁଖେ ଗତି କରେ । ବାହୁଡ଼ା ଯାତ୍ରା କାଳରେ ମହାପ୍ରଭୁ ଶ୍ରୀଜଗନ୍ନାଥ ମାଉସୀ ମା' ନାମରେ ଖ୍ୟାତ ମନ୍ଦିର ନିକଟରେ କିଛି ସମୟ ନିମନ୍ତେ ଅଟକିଯାଆନ୍ତି । ସେଠାରେ ମାଉସୀ ମା' ଙ୍କ ପୋଡପିଠା ଭୋଗ ଗ୍ରହଣ କରିଥାନ୍ତି ।

ହଜାର ହଜାର ଭକ୍ତଙ୍କ ମେଳରେ ଟଣାଯାଉଥିବା ରଥଗୁଡ଼ିକ ବାହୁଡ଼ା ଦିବସର ବିଳମ୍ବିତ ଅପରାହ୍ଣରେ ସିଂହଦ୍ୱାର ସମ୍ମୁଖରେ ପହଂଚେ । ପରଦିନ ବଡ ଏକାଦଶୀରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ସ୍ୱର୍ଣ୍ଣ ଆଭୂଷଣରେ ଆଭୂଷିତ ହୋଇଥାନ୍ତି, ଏହା 'ସୁନାବେଶ' ରୂପେ ଜଣାଶୁଣା । ଦ୍ୱାଦଶୀ ଦିନ ମହାପ୍ରଭୁ ଶ୍ରୀମନ୍ଦିର ରତ୍ନ ସିଂହାସନକୁ ପହଣ୍ଡି ଶୈଳୀରେ ନିଳାଦ୍ରୀ ବିଜେ କରନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ରତ୍ନ ସିଂହାସନ ବିଜେ ପରେ ଏହି ପବିତ୍ର ରଥଯାତ୍ରା ସମାପନ ହୋଇଥାଏ ।

## ରଥ

ରଥର କଳସ ବ୍ୟତୀତ ବାର୍ଷିକ ତିନି ରଥ ନୂତନ ଭାବେ ନିର୍ମିତ ହୋଇଥାଏ । ୧୪ ଜଣ ପାର୍ଶ୍ୱ ଦେବତା, ସାରଥୀ ଏବଂ ଅଶ୍ୱ । ୧୦୭୨ ଖଣ୍ଡ କାଠ ଗଣ୍ଡି (ଫାଶୀ, ଧଉରା, ମଇ, ସିମିଳି) ଦଶପଲ୍ଲା ଓ ରଣପୁର ଜଙ୍ଗଲରୁ ସଂଗୃହୀତ ହୁଏ । ପାଖାପାଖି ୧୨୫ ଜଣ ଶ୍ରୀମନ୍ଦିର ବଢେଇ ( ସହାୟତାକାରୀ ସମେତ) ଶ୍ରୀନଅର ସମ୍ମୁଖରେ ୫୮ ଦିନ ଧରି କାର୍ଯ୍ୟ କରିଥାନ୍ତି ଓ ତିନିଗୋଟି ରଥ ନିର୍ମାଣ ନିମନ୍ତେ ୨,୧୮୮ ଖଣ୍ଡ କାଠ ବ୍ୟବହାର କରିଥାନ୍ତି । ଅକ୍ଷୟ ତୃତୀୟାଠାରୁ ରଥ ନିର୍ମାଣ କାର୍ଯ୍ୟର ଶୁଭାରମ୍ଭ ହୁଏ । ପ୍ରତ୍ୟେକ ରଥ ନୂତନ ତଥା ଉଜ୍ଜ୍ୱଳ କପଡାରେ ଆବରଣ ହୁଏ । ହାରାହାରି ୧,୦୯୦ ମିଟର କପଡା ଏହି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥାଏ । ଏହି ରଥଗୁଡ଼ିକ ଚାରିଗୋଟି ଲମ୍ବା ତଥା ଶକ୍ତ ଦଉଡି ( ପ୍ରତ୍ୟେକ ୨୪୦-୨୫୦' ୮'' ବ୍ୟାସ ବିଶିଷ୍ଟ) ରେ ବନ୍ଧା ଯାଇଥାଏ, ଯାହାଫଳରେ ଏହାକୁ ଟାଣିବାରେ ଭକ୍ତଗଣଙ୍କୁ ସହଜ ହୋଇଥାଏ । କେରଳ କତା ନିଗମ ଏହି ସ୍ୱତନ୍ତ୍ର ଭାବେ ନିର୍ମିତ ନଡିଆ କତା ଦଉଡି ଯୋଗାଇଥାଏ । ଏହି ଉଦ୍ଦେଶ୍ୟରେ ବ୍ୟବହୃତ ହେବାକୁ ଥିବା ଲୁହା କଣ୍ଟା, କ୍ଲାମ୍ପ୍ ଇତ୍ୟାଦି ସ୍ଥାନୀୟ କମାରଙ୍କ ଦ୍ୱାରା ଦୋଳବେଦୀ ନିକଟରେ ଦେଶୀୟ ପଦ୍ଧତିରେ ତିଆରି କରାଯାଏ ଏବଂ ଏଥିପାଇଁ ଏକ ମାସ ସମୟ ଲାଗେ । ରଥଗୁଡ଼ିକର ନିର୍ମାଣ ଶୈଳୀ ଏହାକୁ ସୁଦୃଢ଼ ତଥା ମଜ୍‌ଭୁତ୍ କରିଥାଏ । ରଥଗୁଡ଼ିକର (ଚକ ଉପର) ନିର୍ମାଣରେ ବିଭିନ୍ନ ପର୍ଯ୍ୟାୟରେ ୧୮ଗୋଟି ଖମ୍ବ ଓ ଏହାର ଛାତ ଥାଏ ଯାହା ଭୂଇଁ, ପୋଟଳ, ପାରାଭାଡି ଇତ୍ୟାଦି ନାମରେ ଜଣା । ପ୍ରତ୍ୟେକ ରଥରେ କାଷ୍ଠ ନିର୍ମିତ ନଅ ପାର୍ଶ୍ୱଦେବତା, ଦୁଇ ଜଣ ଦ୍ୱାରପାଳ ଏବଂ ଜଣେ ସାରଥୀ ଓ ଧ୍ୱଜ ଦେବତା ବିଜେ କରିଥାନ୍ତି ।



# ଓଡ଼ିଶାର ମେଳା ମହୋତ୍ସବ ତଥା ପର୍ବପର୍ବାଣି

ଦେବାଶିଷ ପଟ୍ଟନାୟକ

**ରଥଯାତ୍ରା:**

ରାଜ୍ୟର ସବୁଠାରୁ ପ୍ରସିଦ୍ଧ ପର୍ବ ହେଉଛି ରଥଯାତ୍ରା, ଯାହା ସାରା ବିଶ୍ୱରୁ ତୀର୍ଥଯାତ୍ରୀ ଓ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଥାଏ । ବଡ଼ ବଡ଼ ଚକ ଥିବା ତିନିଗୋଟି ବିଶାଳକାୟ ରଥରେ ବସିଥିବା ପ୍ରଭୁ ଜଗନ୍ନାଥ, ପ୍ରଭୁ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ହଜାର ହଜାର ଭକ୍ତ ଶ୍ରୀମନ୍ଦିର ଦ୍ୱାର ସମ୍ମୁଖରୁ ଟାଣି ଟାଣି ଆଣନ୍ତି । ତିନିଠାକୁର ସେଠାରୁ ଗୁଣ୍ଡିଚାଘରକୁ ଯାଇ ୭ଦିନ କାଳ ଅବସ୍ଥାନ କରନ୍ତି ଏବଂ ବାହୁଡ଼ା ଯାତ୍ରା ଦିନ ସେମାନେ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ଅବସରରେ ସେଠାରେ ବିଶାଳ ଜନସମୁଦ୍ର ଦେଖିବାକୁ ମିଳେ । ଓଡ଼ିଶାର ଲୋକମାନଙ୍କ ଉପରେ ଧର୍ମୀୟ ପ୍ରଭାବ କେତେ ଅଧିକ ରହିଛି, ଏହିଠାରେ ହିଁ ଜଣେ ଅନୁଭବ କରିପାରିବ । ଓଡ଼ିଶାର ଲୋକମାନଙ୍କ ପାଇଁ ଜଗନ୍ନାଥ ହେଉଛନ୍ତି ପରମ ବ୍ରହ୍ମ, ଯାହାଙ୍କର ଆଦି ଓ ଅନ୍ତ ନାହିଁ ଏବଂ ସିଏ ମାନବଜାତିର ତ୍ରାଣକର୍ତ୍ତା ।

**ସ୍ନାନ ଯାତ୍ରା:**



ଜ୍ୟେଷ୍ଠ ମାସ ପୂର୍ଣ୍ଣିମା ଦିନ ଏହି ପର୍ବ ସ୍ନାନ ପୂର୍ଣ୍ଣିମୀ ରୂପେ ପାଳିତ ହୋଇଥାଏ । ଏହା ହେଉଛି ବର୍ଷର ପ୍ରଥମ ଅବସର ଯେବେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ମଦନମୋହନଙ୍କ ସହିତ ମନ୍ଦିର ବାହାରକୁ ଏକ ଶୋଭାଯାତ୍ରାରେ ଯାଇ ଶ୍ରୀମନ୍ଦିରର ବାହାର ବେଢ଼ାର ଉତ୍ତର-ପୂର୍ବ କୋଣରେ ଥିବା ସ୍ନାନ ବେଦୀ ଉପରେ ଅଧିଷ୍ଠିତ ହୁଅନ୍ତି । ଉତ୍ତର ଦ୍ୱାର ନିକଟରେ ଥିବା ସୁନା କୂଅରୁ ୧୦୮ ଗରା ପାଣି କଢ଼ାଯାଇ ଶ୍ରୀଜୀଉମାନଙ୍କୁ ସ୍ନାନ କରାଯାଏ । ଏଠାରେ ଜଗନ୍ନାଥ ଓ ବଳଭଦ୍ରଙ୍କୁ ପୁରାଣବର୍ଣ୍ଣିତ ହାତୀମୁଣ୍ଡ ଥିବା ଶ୍ରୀଗଣେଶଙ୍କ ବେଶରେ ସଜ୍ଜିତ କରାଯାଏ ।

**ଚନ୍ଦନ ଯାତ୍ରା:**

ଏହି ପର୍ବ ବୈଶାଖ ମାସରେ ଅନୁଷ୍ଠିତ ହୁଏ ଏବଂ ଦୀର୍ଘ ୪୨ ଦିନ ପର୍ଯ୍ୟନ୍ତ ଚାଲିଥାଏ । କିନ୍ତୁ କହିବାକୁ ଗଲେ, ଏହା ହେଉଛି ମାତ୍ର ୨୧ ଦିନର ପର୍ବ । ପ୍ରଥମ ୨୧ ଦିନକୁ 'ବାହାର ଚନ୍ଦନ' ବୋଲି କୁହାଯାଏ । ଏହି ସମୟ ମଧ୍ୟରେ ପ୍ରତିନିଧିତ୍ୱ

କରୁଥିବା ପ୍ରତିମା ରାମ, କୃଷ୍ଣ, ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀଙ୍କୁ ଏକ ଶୋଭାଯାତ୍ରାରେ ନରେନ୍ଦ୍ର ପୁଷ୍କରିଣୀକୁ ନିଆଯାଏ । 'ପଞ୍ଚ ପାଣ୍ଡବ' ନାମରେ ଖ୍ୟାତ ୫ ଗୋଟି ଶିବ ମନ୍ଦିରର ଶିବପ୍ରତିମାଙ୍କୁ ମଧ୍ୟ ପୁଷ୍କରିଣୀକୁ ନିଆଯାଏ । ଅତି ସୁନ୍ଦର ଭାବେ ସଜ୍ଜିତ ନୌକାରେ ଏହି ପ୍ରତିମାଗୁଡ଼ିକ ଚାପ ଖେଳନ୍ତି ଏବଂ ସେଠାରେ ସେମାନଙ୍କୁ ପୂଜା କରାଯାଏ ।

**ଦୋଳ ପୂର୍ଣ୍ଣିମା/ହୋଲି :**

ଦୋଳ ପୂର୍ଣ୍ଣିମା ଓ ହୋଲି ହେଉଛି ସବୁଠାରୁ ଅଧିକ ଚିତ୍ତାକର୍ଷକ ବସନ୍ତକାଳୀନ ମହୋତ୍ସବ, ଯାହା ଓଡ଼ିଶାରେ ସ୍ୱତନ୍ତ୍ର ଧାରାରେ ପାଳନ କରାଯାଏ । ଗ୍ରାମାଞ୍ଚଳରେ ଏହା ୫ ଦିନ ଧରି ପାଳିତ ହୁଏ । ଶ୍ରୀକୃଷ୍ଣଙ୍କ ମୂର୍ତ୍ତିକୁ ଶୁକ୍ଳପକ୍ଷ ଦଶମୀ ତିଥିରୁ ଆରମ୍ଭ କରି ପୂର୍ଣ୍ଣମୀ ପର୍ଯ୍ୟନ୍ତ ପୂଜା କରାଯାଏ । ପ୍ରତିମାଗୁଡ଼ିକ ସୁସଜ୍ଜିତ ବିମାନ (କାଷ୍ଠ ନିର୍ମିତ କ୍ଷୁଦ୍ର ମନ୍ଦିର)ରେ ଶ୍ରଦ୍ଧାଳୁମାନଙ୍କ କାନ୍ଧ ଉପରେ ବସି ଘରକୁ ଘର ବୁଲି ଭୋଗଲାଗି ହୁଅନ୍ତି । ଅନେକ ଗ୍ରାମର ବିମାନଗୁଡ଼ିକୁ ଶୋଭାଯାତ୍ରାରେ ନିଆଯାଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଏକତ୍ରିତ କରାଯାଏ । ଲୋକମାନେ ବିଭିନ୍ନ ପ୍ରକାର ରଙ୍ଗୀନ୍ ଅବିରରେ ରଙ୍ଗ ଖେଳନ୍ତି । ଗବାଦି ପଶୁମାନଙ୍କ ସହ ଗୋପାଳ ବାଳକ କୃଷ୍ଣଙ୍କ ସୁସମ୍ପର୍କ ରହିଥିବା ହେତୁ ଏହି ଉତ୍ସବ ଅଧିକ ମହତ୍ତ୍ୱ ରଖେ । ଗାଈ ଗୋରୁମାନଙ୍କୁ ସ୍ନାନ କରାଯାଏ, ସିନ୍ଦୁର ଲଗାଯାଏ,ପୁଷ୍ପମାଲ୍ୟ ପିନ୍ଧାଯାଏ ଓ ପେଟପୂରା ଖାଇବାକୁ ଦିଆଯାଏ ।

**ମକର ମେଳା :**

ଓଡ଼ିଶାର ବିଭିନ୍ନ ଭାଗରେ ପ୍ରତିବର୍ଷ ପ୍ରାୟତଃ ଜାନୁଆରୀ ୧୪ରେ ପଡୁଥିବା ମକର ସଂକ୍ରାନ୍ତି ଦିନ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏହି ଦିବସକୁ ସାରା ଭାରତରେ ବିଭିନ୍ନ ନାମରେ ପାଳନ କରାଯାଇଥାଏ । ମାତ୍ର ଓଡ଼ିଶାରେ ଏହା ସ୍ୱତନ୍ତ୍ର ଶୈଳୀରେ ବହୁ ଉତ୍ସାହ ଉଦ୍ଦୀପନାର ସହ ପାଳନ କରାଯାଇଥାଏ । ଏପରି ଆୟୋଜନ ଅନ୍ୟ ରାଜ୍ୟମାନଙ୍କରେ କ୍ୱଚିତ୍ ଦେଖିବାକୁ ମିଳିଥାଏ ।



**ଧନୁଯାତ୍ରା:**

ବରଗଡ଼ର ଧନୁଯାତ୍ରା ଅନେକ କାରଣ ପାଇଁ ପ୍ରସିଦ୍ଧ । ବିଶ୍ୱରେ ବିଭିନ୍ନ ମୁକ୍ତାକାଶ ରଙ୍ଗମଞ୍ଚ ଯାତ୍ରା ମଧ୍ୟରେ ଏହା ଅନ୍ୟତମ । ମାସକ ପାଇଁ ବରଗଡ଼ ସହରଟି ମଥୁରା ନଗରୀରେ ପରିଣତ ହୁଏ ଓ ନିକଟସ୍ଥ ଜୀରା ନଦୀ ଯମୁନା ନଦୀରେ ରୂପାନ୍ତରିତ ହୁଏ । ଅମ୍ବାପାଲି ଗ୍ରାମଟି ଗୋପ ନଗରୀରେ ପରିଣତ ହୁଏ । ଏହି ସମୟରେ ପ୍ରତୀକାତ୍ମକ ଭାବେ ରାଜା କଂସ ଏଠାରେ ଶାସନ କରନ୍ତି । କଂସ ଭୂମିକାରେ ଜଣେ ବ୍ୟକ୍ତି ଅଭିନୟ କରନ୍ତି । ସାଧାରଣ ଲୋକେ ଏହି ଅଭିନୟକୁ ମନଭରି ଉପଭୋଗ କରନ୍ତି ଏବଂ ଶେଷରେ ଅସୁର ରାଜା କଂସ ଭଗବାନ କୃଷ୍ଣଙ୍କ ଦ୍ୱାରା ବଧ ହୁଅନ୍ତି ।

**ମାଘ ସପ୍ତମୀ:**

ମାଘ ସପ୍ତମୀ ହେଉଛି ଏକ ଜଣାଶୁଣା ଧାର୍ମିକ ଉତ୍ସବ । ଏହା କୋଣାର୍କ ସମୁଦ୍ର ଉପକୂଳ ନିକଟସ୍ଥ ଚନ୍ଦ୍ରଭାଗା ଠାରେ ଅନୁଷ୍ଠିତ ହୁଏ । ହଜାର ହଜାର ଶ୍ରଦ୍ଧାଳୁ ଚନ୍ଦ୍ରଭାଗାକୁ ପବିତ୍ର ବୁଡ଼ ପକାଇବାକୁ ଆସିଥାଆନ୍ତି । ଚନ୍ଦ୍ରଭାଗାରେ ଥରେ ବୁଡ଼ ପକାଇବା ଗଙ୍ଗାରେ ୭ଥର ବୁଡ଼ ପକାଇବା ସହ ସମାନ ବୋଲି ବିଶ୍ୱାସ ରହିଛି ।

**ଖଣ୍ଡଗିରି ମେଳା :**

ଖଣ୍ଡଗିରି ଓ ଉଦୟଗିରି ପାହାଡ଼ର ପାଦ ଦେଶରେ ଆୟୋଜିତ ହେଉଥିବା ଖଣ୍ଡଗିରି ମେଳା ଓଡ଼ିଶାର ଅନ୍ୟତମ ପୁରାତନ ମେଳା । ଏହି ଅବସରରେ ଅନେକ ସାଧୁସନ୍ଥ ଏଠାରେ ଏକତ୍ରିତ ହୋଇଥାଆନ୍ତି । ଜନସାଧାରଣଙ୍କ ପାଇଁ ଘରକରଣା ସାମଗ୍ରୀର କିଣାବିକା ମଧ୍ୟ ଏହି ଯାତ୍ରାର ଅନ୍ୟ ଏକ ଆକର୍ଷଣ ।

**ଯୋରନ୍ଦା ମେଳା:**

ଢ଼େଙ୍କାନାଳ ଜିଲ୍ଲାର ଯୋରନ୍ଦା ଠାରେ ଅନୁଷ୍ଠିତ ହେଉଥିବା ଯୋରନ୍ଦା ମେଳାରେ ମହିମା ଧର୍ମାବଲମ୍ବୀମାନଙ୍କର ବିରାଟ ସମାବେଶ ହୁଏ । ସାଧାରଣତଃ ଫେବୃୟାରୀ– ମାର୍ଚ୍ଚ ମାସରେ ଏହି ମେଳାଟି ଅନୁଷ୍ଠିତ ହୋଇଥାଏ ।

**ମହାଶିବରାତ୍ରି:**

ସାରା ଓଡ଼ିଶାର ଶିବ ମନ୍ଦିରମାନଙ୍କରେ ମହାଶିବରାତ୍ରୀ ପାଳନ କରାଯାଏ । ମହାଶିବରାତ୍ରୀରେ ଭକ୍ତମାନେ ସାରାଦିନ ଉପବାସ ରହିଥାଆନ୍ତି । ରାତ୍ରୀର ବିଳମ୍ବିତ ପ୍ରହରରେ ମହାଦୀପ ପ୍ରଜ୍ୱଳନ କରାଯାଇ ଶିବ ମନ୍ଦିର ଉପରେ ସ୍ଥାପନ କରାଯାଏ । ପୁରୀର ଲୋକନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଭଦ୍ରକ ଆରଡ଼ିର ଆଖଣ୍ଡଳମଣୀ ମନ୍ଦିର, ଢ଼େଙ୍କାନାଳ କପିଳାସର ଚନ୍ଦ୍ରଶେଖର ମନ୍ଦିର, ନୟାଗଡ଼ ଶରଣକୁଳର ଲଡୁବାବା ମନ୍ଦିର, କୋରାପୁଟର ଗୁପ୍ତେଶ୍ୱର ମନ୍ଦିର, ବଲାଙ୍ଗୀରର ହରିଶଙ୍କର ମନ୍ଦିର, କଟକ ଆଠଗଡ଼ର ଧବଳେଶ୍ୱର ମନ୍ଦିର ଏବଂ ଅନ୍ୟାନ୍ୟ ମୁଖ୍ୟ ଶୈବପୀଠଗୁଡ଼ିକରେ ଏହିପର୍ବ ନିମନ୍ତେ ହଜାର ହଜାର ସଂଖ୍ୟାରେ ଭକ୍ତଗଣ ଏକତ୍ରିତ ହୁଅନ୍ତି ।

**ବାଲିଯାତ୍ରା:**

ଓଡ଼ିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ପାଇଁ କଟକର ମହାନଦୀ କୂଳରେ 'ବାଲିଯାତ୍ରା' ନାମରେ ଏକ ବିରାଟ ଯାତ୍ରାର ଆୟୋଜନ ହୁଏ । ଏହା କାର୍ତ୍ତିକ ପୂର୍ଣ୍ଣିମା ଠାରୁ ଆରମ୍ଭ ହୋଇ ୬ ରୁ ୮ ଦିନ ପର୍ଯ୍ୟନ୍ତ ଚାଲେ । ଓଡ଼ିଶାର ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ସ୍ୱରୂପ ନଦୀ, ସମୁଦ୍ର ଓ ପୁଷ୍କରିଣୀରେ ଲୋକମାନେ କାଗଜଡ଼ଙ୍ଗା ବା କଦଳୀ ପଟୁକା ଉପରେ ମାଟିଦୀପ ପ୍ରଜ୍ୱଳନ କରି ଭସାଇ ଦେଇଥାଆନ୍ତି ।

**ରଜ:**

ମୁଖ୍ୟତଃ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ଜିଲ୍ଲାଗୁଡ଼ିକରେ ରଜ ଏକ ସ୍ୱତନ୍ତ୍ର ଉତ୍ସବ ରୂପେ ପାଳନ କରାଯାଏ । ଏହା ୩ ଦିନ ଧରି ପାଳିତ ହୁଏ । ଏହି ସମୟରେ ମାଟି ଉତ୍ପାଦନଯୋଗ୍ୟ ହୋଇଥାଏ । ଏହି ୩ ଦିନରେ କୃଷକମାନେ ହଳ କରିବାକୁ ଯାଆନ୍ତି ନାହିଁ କି ଝିଅମାନେ ମଧ୍ୟ କୌଣସି ଗୃହକାର୍ଯ୍ୟ କରନ୍ତି ନାହିଁ । ଏହି ଦିନରେ ଧରଣୀ ମାତା ରଜସ୍ୱଳା ହୁଅନ୍ତି ବୋଲି ବିଶ୍ୱାସ କରାଯାଏ । ଏହିପର୍ବରେ 'ପୋଡ଼ପିଠା' ନାମରେ ଏକ ଭିନ୍ନଧରଣର ପିଠା ପ୍ରସ୍ତୁତ କରାଯାଏ । ସମସ୍ତ ଶ୍ରେଣୀର ଲୋକ ବିଶେଷ କରି ଝିଅ ବୋହୂମାନେ ଏହି ପର୍ବର ତିନିଦିନ ଅବଧିକୁ କ୍ରୀଡ଼ା କୌତୁକ ଓ ଦୋଳିଖେଳ ମାଧ୍ୟମରେ ଉପଭୋଗ କରିଥାଆନ୍ତି ।

**ଶୀତଳ ଷଷ୍ଠୀ:**

ଶୀତଳ ଷଷ୍ଠୀ ସମଗ୍ର ଓଡ଼ିଶାରେ ବିଶେଷ କରି ପଶ୍ଚିମ ଓଡ଼ିଶାରେ ପାଳନ କରାଯାଏ । ସମ୍ବଲପୁର ଶୀତଳ ଷଷ୍ଠୀ ସମଗ୍ର ରାଜ୍ୟରେ ପ୍ରସିଦ୍ଧ । ଏକ ବିଶାଳ ସମାରୋହରେ ଶିବ–ପାର୍ବତୀଙ୍କ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । ତତ୍‌ପରେ ସେମାନଙ୍କୁ ଏକ ବର୍ଣ୍ଣାଢ୍ୟ ଶୋଭାଯାତ୍ରାରେ ନିଆଯାଏ । ଶିବ ମନ୍ଦିରରେ ଏହି ଈଶ୍ୱରୀୟ ଦମ୍ପତିଙ୍କୁ ଅବସ୍ଥାପିତ କଲାପରେ ଉତ୍ସବର ପରିସମାପ୍ତି ଘଟେ ।

**ଝୁଲଣ ଯାତ୍ରା:**

ପୁରୀର ମନ୍ଦିର ଓ ମଠମାନଙ୍କରେ ଝୁଲଣ ଯାତ୍ରା ବହୁଳ ଭାବେ ପାଳନ କରାଯାଏ । ବୈଷ୍ଣବମାନଙ୍କ ପାଇଁ ଏହି ଯାତ୍ରା ଅଧିକ ମହତ୍ୱପୂର୍ଣ୍ଣ ରଖେ । ଭକ୍ତମାନେ ଝୁଲାରେ ଭଗବାନ ଶ୍ରୀକୃଷ୍ଣଙ୍କ ବାଳଗୋପାଳ ମୂର୍ତ୍ତିଙ୍କୁ ଦୋଳି ଖେଳାନ୍ତି ।

**ନୂଆଖାଇ:**

ପ୍ରାୟତଃ ପଶ୍ଚିମ ଓଡ଼ିଶାରେ ପାଳିତ ହେଉଥିବା ନୂଆଖାଇ ଏକ କୃଷିଭିତ୍ତିକ ପର୍ବ । ଏହି ଅବସରରେ ଲୋକମାନେ ସେମାନଙ୍କ କ୍ଷେତରେ ଉତ୍ପନ୍ନ ହୋଇଥିବା ଶସ୍ୟରୁ ପ୍ରସ୍ତୁତ ଖାଦ୍ୟ ବନ୍ଧୁବାନ୍ଧବ ଗହଣରେ ମିଳିମିଶି ଖାଇଥାଆନ୍ତି ଏବଂ ବୟସ୍କ ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ କରିଥାନ୍ତି ।

**ଅଶୋକାଷ୍ଟମୀ:**

ଶ୍ରୀଲିଙ୍ଗରାଜ ମହାପ୍ରଭୁ ତାଙ୍କ ମନ୍ଦିରରୁ ବାହାରି ୩୪ ଫୁଟ୍ ଉଚ୍ଚତା ବିଶିଷ୍ଟ କାଷ୍ଠନିର୍ମିତ ରଥରେ ରାମେଶ୍ୱର ମନ୍ଦିରକୁ ଯାତ୍ରା କରନ୍ତି । ସେଠାରେ ୪ ଦିନର ରହଣୀ ପରେ ଆନନ୍ଦଉଲ୍ଲାସ ମଧ୍ୟରେ ପୁଣି ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଅଶୋକାଷ୍ଟମୀର ଏହି ବାର୍ଷିକ ରଥଯାତ୍ରା ଭୁବନେଶ୍ୱରରେ ଖୁବ୍ ଧାର୍ମିକ ପରିବେଶ ମଧ୍ୟରେ ପାଳିତ ହୋଇଥାଏ ।

**ଚଡ଼କ ମେଳା:**

ଏପ୍ରିଲ୍ ମାସରେ ଚଡ଼କମେଳା ଚନ୍ଦନେଶ୍ୱରଠାରେ ଅନୁଷ୍ଠିତ ହୁଏ । ମନୋରମ ସମୁଦ୍ରକୂଳ ପୃଷ୍ଠଭୂମିରେ ଅନୁଷ୍ଠିତ ହେଉଥିବା ଏହି ମେଳା ଅତ୍ୟନ୍ତ ଜୀବନ୍ତ ମନେ ହୋଇଥାଏ । ହଜାର ହଜାର ଲୋକ ଏହି ମେଳାରେ ସମବେତ ହୋଇଥାନ୍ତି ।

**ଝାମୁ ଯାତ୍ରା:**

ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ପ୍ରାୟତଃ ଚୈତ୍ର (ଏପ୍ରିଲ୍) ମାସରେ ଝାମୁଯାତ୍ରା ଅନୁଷ୍ଠିତ ହୁଏ । ଖୁବ୍ ଧର୍ମୀୟ ପରମ୍ପରା ମଧ୍ୟରେ ଦେବୀ ମା'ଙ୍କୁ ଆରାଧନା କରାଯାଏ । କେତେକ ଭକ୍ତ ଅତି ଗରମ ହୋଇଥିବା ଜଳନ୍ତା କୋଇଲା ଓ କଣ୍ଟା ଉପରେ ଚାଲିଥାଆନ୍ତି । କିଛି କିଛି ଭକ୍ତ ସେମାନଙ୍କର ଜିଭ, ପିଠି ଓ ଓଠରେ କଣ୍ଟା ଫୁଟାଉଥିବାର ଦେଖାଯାଏ ।

**ନୃସିଂହନାଥ ମେଳା:**

ସମୃଦ୍ଧ ଉଦ୍ଭିଦ ଓ ପ୍ରାଣୀଜଗତ ପରିବେଷ୍ଟିତ ବାତାବରଣରେ ନୃସିଂହନାଥ ଓ ହରିଶଙ୍କର ହେଉଛି ରାଜ୍ୟର ଦୁଇଗୋଟି ସୁନ୍ଦର ସ୍ଥାନ । ସାଧାରଣତଃ ବୈଶାଖ (ମଇ) ମାସରେ ଅନୁଷ୍ଠିତ ହେଉଥିବା ଏହି ମେଳା ସମୟରେ ଉକ୍ତ ସ୍ଥାନ ଦ୍ୱୟ ଅତ୍ୟନ୍ତ ଆକର୍ଷଣୀୟ ହୋଇଉଠେ । ଏହି ସମୟରେ ବସୁଥିବା ଗ୍ରାମୀଣ ହାଟ ସ୍ଥାନୀୟ ଲୋକମାନଙ୍କୁ ଯଥେଷ୍ଟ ଆକର୍ଷିତ କରିଥାଏ ।



# ଓଡ଼ିଶା : ଏକ ଦୃଷ୍ଟିପାତ

ସ୍ମିତା କର

| | | |
|---|---|---|
| ୧. | ମୋଟ ଅଞ୍ଚଳ(ବର୍ଗ କିମିରେ) | ୧,୫୫,୭୦୭ |
| ୨. | ମୋଟ ଜନସଂଖ୍ୟା ୨୦୧୧ ଜନଗଣନା ଅନୁସାରେ | ୪,୧୯,୭୪,୨୧୮ |
| | (କ) ମୋଟ ପୁରୁଷ | ୨,୧୨,୧୨,୧୩୬ |
| | (ଖ) ମୋଟ ମହିଳା | ୨,୦୭,୬୨,୦୮୨ |
| ୩. | ଦଶନ୍ଧିରେ ଅଭିବୃଦ୍ଧି ହାର(୨୦୦୧–୨୦୧୧) ଶତକଡା | +୧୪% |
| ୪. | ଜନସଂଖ୍ୟା ସାନ୍ଦ୍ରତା ପ୍ରତିବର୍ଗ କିମି(୨୦୧୧) | ୨୭୦ |
| ୫. | ଲିଙ୍ଗଗତ ଅନୁପାତ(ଏକ ହଜାର ପୁରୁଷରେ ମହିଳା ହାର) | ୯୭୯ |
| ୬. | ମୋଟ ସହରାଞ୍ଚଳ ଜନସଂଖ୍ୟା ୨୦୧୧ | ୭୦,୦୩,୬୫୬ |
| | (କ) ମୋଟ ପୁରୁଷ | ୩୬,୨୫,୯୩୩ |
| | (ଖ) ମୋଟ ମହିଳା | ୩୩,୭୭,୭୨୩ |
| ୭. | ମୋଟ ଗ୍ରାମାଞ୍ଚଳ ଜନସଂଖ୍ୟା ୨୦୧୧ | ୩,୪୯,୭୦,୫୬୨ |
| | (କ) ମୋଟ ପୁରୁଷ | ୧,୭୫,୮୬,୨୦୩ |
| | (ଖ) ମୋଟ ମହିଳା | ୧,୭୩,୮୪,୩୫୯ |
| ୮. | ମୋଟ ସାକ୍ଷରତା ହାର | ୨,୬୭,୪୨,୫୯୫ |
| | (କ) ମୋଟ ପୁରୁଷ ସାକ୍ଷରତା ହାର | ୧,୫୦,୮୯,୬୮୧ |
| | (ଖ) ମୋଟ ମହିଳା ସାକ୍ଷରତା ହାର | ୧,୧୬,୫୨,୯୧୪ |
| ୯. | ମୋଟ ଅନୁସୂଚିତ ଜାତି ଜନସଂଖ୍ୟା(୨୦୧୧) | ୭୧,୮୮,୪୬୩ |
| | ମୋଟ ଜନସଂଖ୍ୟାର ପ୍ରତିଶତ ହାର | ୧୭.୧% |

| | | |
|---|---|---|
| ୧୦. | ମୋଟ ଅନୁସୂଚିତ ଜନଜାତି(ଆଦିବାସୀ) ଜନସଂଖ୍ୟା(୨୦୧୧) | ୯୫,୯୦,୭୫୬ |
| | ଏବଂ ମୋଟ ଜନସଂଖ୍ୟାର ପ୍ରତିଶତ ହାର | ୨୨.୦୮% |
| ୧୧. | ଜିଲ୍ଲା ସଂଖ୍ୟା | ୩୦ |
| ୧୨. | ସବଡିଭିଜନ(ଉପଖଣ୍ଡ) ସଂଖ୍ୟା | ୫୮ |
| ୧୩. | ତହସିଲ୍ ସଂଖ୍ୟା | ୩୧୭ |
| ୧୪. | ଗ୍ରାମପଞ୍ଚାୟତ ସଂଖ୍ୟା | ୬,୮୦୨ |
| ୧୫. | ବ୍ଲକ ସଂଖ୍ୟା | ୩୧୪ |
| ୧୬. | ୨୦୧୧ ସୁଦ୍ଧା ଓଡ଼ିଶାରେ ଗ୍ରାମ ସଂଖ୍ୟା | ୫୧,୫୮୩ |
| ୧୭. | ସହର ସଂଖ୍ୟା | ୨୨୩ |
| ୧୮. | ମ୍ୟୁନିସ୍ପାଲ୍ କର୍ପୋରେସନ ସଂଖ୍ୟା | ୦୫ |
| ୧୯. | ମ୍ୟୁନିସ୍ପାଲଟି ସଂଖ୍ୟା | ୪୫ |
| ୨୦. | ଏନ୍.ଏ.ସି. ସଂଖ୍ୟା | ୬୧ |
| ୨୧. | ଥାନା ସଂଖ୍ୟା | ୬୨୦ |
| ୨୨. | ଦମକଳ କେନ୍ଦ୍ର – ଅନୁମୋଦିତ | ୩୩୫ |
| | କାର୍ଯ୍ୟକ୍ଷମ | ୨୯୫ |
| ୨୩. | ବିଧାନସଭା ନିର୍ବାଚନ ମଣ୍ଡଳୀ | ୧୪୭ |
| ୨୪. | ଲୋକସଭା ନିର୍ବାଚନ ମଣ୍ଡଳୀ | ୨୧ |
| ୨୫. | ରାଜ୍ୟସଭା ଆସନ ସଂଖ୍ୟା | ୧୦ |
| ୨୬. | ସମୁଦ୍ର କୂଳ ଦୈର୍ଘ୍ୟ | ୪୮୦ କିଲୋମିଟର |



# ଓଡ଼ିଶାର ସଂକ୍ଷିପ୍ତ ଇତିହାସ

ବିଭୁ ଚନ୍ଦ୍ର ମିଶ୍ର

ଓଡ଼ିଶାର ଇତିହାସ ଅତି ପ୍ରାଚୀନ। ପୁରାତନ ସମୟରେ ଏହା ଉଡ୍ର ନାମରେ ବେଶ ପରିଚିତ ଥିଲା। ବର୍ତ୍ତମାନ ସମୟ ଠାରୁ ପୁରାତନ ସମୟରେ ଏହାର ପରିସୀମା ବେଶ୍ ପରିବ୍ୟାପ୍ତ ଥିଲା। ମହାଭାରତ ଯୁଗରୁ କଳିଙ୍ଗ ଉତ୍କଳ ଏବଂ ଉଡ୍ରରେ ଶକ୍ତିଶାଳୀ ରାଜାଙ୍କ ରାଜୁତି ଆରମ୍ଭ ହୋଇଯାଇଥିଲା। ମହାଭାରତରେ କଳିଙ୍ଗ ପ୍ରସଙ୍ଗ ବାରମ୍ବାର ଆସୁଥିବା ବେଳେ ଉଡ୍ର ଏବଂ ଉତ୍କଳ ବିଷୟରେ କମ୍ ପରିମାଣରେ ଆଲୋଚିତ ହୋଇଛି। ମହାବୀର ଏବଂ ଗୌତମ ବୁଦ୍ଧଙ୍କ ସମୟରେ କଳିଙ୍ଗ–ଉତ୍କଳ ସମଗ୍ର ପୂର୍ବଭାରତ ଅଧିକାର କରିବା ସହିତ ବହୁ ଖ୍ୟାତି ଅର୍ଜନ କରିଥିଲା।




ଓଡ଼ିଶାର ରାଜନୈତିକ ଇତିହାସ ଉନ୍ମୋଚନ କଲେ ଏହା ମଗଧ ସମ୍ରାଟ ନନ୍ଦବଂଶଙ୍କଠାରୁ ଆରମ୍ଭ ହୋଇଥିବା ସୂଚନା ମିଳେ। ମଗଧ ସମ୍ରାଟ ଖାରବେଳଙ୍କ ଦ୍ୱାରା ଉଦୟଗିରିର ହାତୀଗୁମ୍ଫା ଖୋଦେଇରୁ ଜଣାଯାଏ ନନ୍ଦବଂଶ ଓଡ଼ିଶାକୁ ଦୁଇଥର ଶାସନ କରିଥିଲେ। ଯେତେବେଳେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ନନ୍ଦଙ୍କୁ ପରାସ୍ତ କଲେ ସେତେବେଳେ କଳିଙ୍ଗ ତାଙ୍କ ସାମ୍ରାର୍ଯ୍ୟର ଅଂଶ ନଥିଲା। ସମ୍ରାଟ ଅଶୋକଙ୍କ କଳିଙ୍ଗ ଆକ୍ରମଣର ଘଟଣାଥିଲା ଯୁଗାନ୍ତକାରୀ ଓ ପରିଣାମ ଥିଲା ସୁଦୂର ପ୍ରସାରୀ । ଏହି ଯୁଦ୍ଧର ଘଟଣାବଳୀ ସମ୍ରାଟ ଅଶୋକଙ୍କ ଦ୍ୱାରା ୧୩ତମ ଶିଳାଲିପିରେ ଲିପିବଦ୍ଧ।

ଏହି ଯୁଦ୍ଧରେ ଦେଢଲକ୍ଷ ଲୋକଙ୍କୁ ବନ୍ଦୀ କରାଯାଇଥିବା ବେଳେ ଏକ ଲକ୍ଷ ଲୋକଙ୍କୁ ହତ୍ୟା କରାଯାଇଥିଲା। ଏଥି ସହିତ ବହୁଲୋକ ଏଥିରେ ଅଙ୍ଗପ୍ରତ୍ୟଙ୍ଗ ହରାଇ ପଙ୍ଗୁ ହୋଇଯାଇଥିଲେ। କଳିଙ୍ଗ ଜୟ ପରେ ବିଜୟୀ ସମ୍ରାଟ ଅଶୋକଙ୍କ ହୃଦୟରେ ଏକ ବଡ ପରିବର୍ତ୍ତନ ଦେଖା ଦେଇଥିଲା। ଅଶୋକଙ୍କ ଏହି ପରିବର୍ତ୍ତନ ସହିତ ଧର୍ମ ଏବଂ ସଂସ୍କୃତିରେ ପରିବର୍ତ୍ତନ ଧାରା ଆସିଥିଲା। ଏହି ପରିବର୍ତ୍ତନର ଧାରା ସମଗ୍ର ଭାରତବର୍ଷ ଡେଇଁ ବିଦେଶକୁ ପରିବ୍ୟାପ୍ତ ହୋଇଥିଲା।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶା ଇତିହାସରେ ମହାପ୍ରତାପୀ ସମ୍ରାଟ ଖାରବେଳଙ୍କର ଯୁଗ ଆରମ୍ଭ ହୋଇଥିଲା। ସେ ପଶ୍ଚିମରେ ସାତକର୍ଣ୍ଣିଙ୍କୁ ପରାସ୍ତ କରିଥିବା ବେଳେ କୃଷ୍ଣାନଦୀ କୂଳରେ ଥିବା ମୁଷିକଙ୍କ ସହିତ ରାଜଗ୍ରୀହର ରାଜା ରାଷ୍ଟ୍ରିକ ଓ ଭୋଜକ ଏବଂ ମଗଧର ରାଜା ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରିଥିଲେ। ସେ ଦୀର୍ଘ ୧୩ବର୍ଷ କାଳ ଶାସନ କରିଥିଲେ। ସେ ଥିଲେ ଜୈନଧର୍ମୀ ।

ଖାରବେଳଙ୍କ ପରେ ଶହ ଶହ ବର୍ଷଧରି ଓଡ଼ିଶାର ଇତିହାସ ଅନ୍ଧକାରମୟ ଥିଲା । ହୁଏନସାଂଙ୍କ ଲେଖାରୁ ଜଣାଯାଏ ଯେ ହର୍ଷ ଶୈଳାଦିତ୍ୟଙ୍କ ରାଜତନ୍ତ୍ର ଓଡ଼ିଶା ପର୍ଯ୍ୟନ୍ତ ବ୍ୟାପିଥିଲା । ଓଡ଼ିଶାର ଉପକୂଳ ବାଣିଜ୍ୟ କେନ୍ଦ୍ର ପାଇଁ ଯଥେଷ୍ଟ ଉପଯୋଗୀ ବୋଲି ଖ୍ରୀଷ୍ଟିୟ ୨ୟ ଶତାବ୍ଦୀରେ ବିଶିଷ୍ଟ ଗ୍ରୀକ୍ ଭୂଗୋଳବିତ୍ ଟୋଲେମୀ ଜଣାଇଥିଲେ । ଖ୍ରୀଷ୍ଟିୟ ୮ମ ଶତାବ୍ଦୀରେ ତଥା ଶୈଳେନ୍ଦ୍ରଙ୍କ ରାଜୁତି ସମୟରେ ବର୍ତ୍ତମାନର ମାଲେସିଆ ସହିତ ଓଡ଼ିଶାର ନୌବାଣିଜ୍ୟ ଶିଖରରେ ପହଞ୍ଚିଥିଲା । ଆରବୀୟ ସୂଚନା ଅନୁସାରେ ଶୈଳେନ୍ଦ୍ରଙ୍କ ସାମ୍ରାଜ୍ୟ ଆସାମ ଓ କାମ୍ବୋଡିଆ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଖ୍ରୀଷ୍ଟିୟ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଶୈଳେନ୍ଦ୍ରଙ୍କ ସାମ୍ରାଜ୍ୟ ସମୃଦ୍ଧି ଲାଭ କରିଥିଲା ।

ଖ୍ରୀଷ୍ଟିୟ ୮ମ ରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳ ପ୍ରଦେଶ ଭୌମ-କର ରାଜବଂଶଙ୍କ ଶାସନରେ ଥିଲା । ଠିକ୍ ଏହି ସମୟରେ ଓଡ଼ିଆ ଭାଷା ତାର ନିଜସ୍ୱ ରୂପ ନେବାକୁ ଆରମ୍ଭ କରିଥିଲା । ଭୌମକରଙ୍କ ପରେ ପରେ ସୋମ ଏବଂ କେଶରୀ ବଂଶର ଅଭ୍ୟୁଦୟ ଘଟିଥିଲା । ଭୁବନେଶ୍ୱର ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ଯଯାତି କେଶରୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ତାଙ୍କ ପରବର୍ତ୍ତୀ ବଂଶଧରଙ୍କ ଦ୍ୱାରା ସମାପ୍ତ ହୋଇଥିଲା ।

ଗଙ୍ଗବଂଶ ରାଜା ଅନନ୍ତବର୍ମନ୍ ଚୋଡଗଙ୍ଗଦେବ ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀ ଶେଷ(୧୦୭୮-୧୧୯୧)ରେ ତାଙ୍କର ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର କରି ଖ୍ୟାତି ଲାଭ କରିଥିଲେ । ସେ ତାଙ୍କ ରାଜଧାନୀ ପାରଳାଖେମୁଣ୍ଡିର କଳିଙ୍ଗନଗରରୁ କଟକକୁ ସ୍ଥାନାନ୍ତରିତ କରିଥିଲେ । ତାଙ୍କ ରାଜୁତି ସମୟରେ ବୈଷ୍ଣବ ଧର୍ମ ବିସ୍ତାରଲାଭ କରିବା ସହିତ ମୁଖଲିଂଗମ, ଶ୍ରୀକୁରମମ୍, ସୀମାଞ୍ଚଳମ ଓ ପୁରୀ ମନ୍ଦିର ନିର୍ମାଣ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ସମାପ୍ତ ହୋଇଥିଲା । ଖ୍ରୀଷ୍ଟିୟ ୧୩ଶ ଶତାବ୍ଦୀରେ ଗଙ୍ଗବଂଶ ମୁସଲିମ୍ ଆକ୍ରମଣକୁ ପ୍ରତିହତ କରିବାକୁ ସମର୍ଥ ହୋଇଥିଲେ ।

ଖ୍ରୀଷ୍ଟିୟ ୧୩ ଶତାବ୍ଦୀରେ ଉତ୍ତର ଭାରତରେ ହିନ୍ଦୁ ସ୍ଥାପତ୍ୟ ନିମ୍ନଗାମୀ ହେଉଥିବା ବେଳେ ପ୍ରଥମ ନରସିଂହ ଦେବ ଖ୍ରୀଷ୍ଟିୟ ୧୨୩୮-୬୪ରେ ସୂର୍ଯ୍ୟ ମନ୍ଦିର ନିର୍ମାଣ କରି ଓଡ଼ିଶାର ସ୍ଥାପତ୍ୟକୁ ଶୀର୍ଷରେ ପହଞ୍ଚାଇଥିଲେ । ଏହା ହିନ୍ଦୁ ସ୍ଥାପତ୍ୟ ଗୌରବକୁ ଶୀର୍ଷରେ ପହଞ୍ଚାଇବା ସ୍ୱୀକୃତି ପ୍ରଦାନ କରିଥିଲା । ଏହା ପରେ ସୂର୍ଯ୍ୟ ବଂଶ ଆରମ୍ଭ ହୋଇଥିଲା । ସୂର୍ଯ୍ୟ ବଂଶର ପ୍ରଥମ ରାଜା ଗଜପତି କପିଳେନ୍ଦ୍ର ଦେବ (୧୪୩୫-୧୪୬୬) ବଙ୍ଗଳାର ମୁସଲିମ୍ ଶାସକଙ୍କୁ ପରାସ୍ତ କରିଥିଲେ । ବିଜୟନଗର ଓ କାଞ୍ଚିର ହିନ୍ଦୁ ଶାସକ ଓ ବାହାମନି ସୁଲତାନଙ୍କୁ ପରାସ୍ତ କରିଥିଲେ । କପିଳେନ୍ଦ୍ର ଦେବ ବାହାମନୀ ସାମ୍ରାଜ୍ୟର ରାଜଧାନୀ ବିଦରକୁ ନିଜ ଅକ୍ତିଆରକୁ ଆଣିଥିଲେ ।

ତାଙ୍କର ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ସମ୍ପ୍ରସାରିତ ହୋଇଥିଲା । ତାଙ୍କର ପୌତ୍ର ପ୍ରତାପରୁଦ୍ରଦେବ ତାଙ୍କର ପଦାଙ୍କ ଅନୁସରଣ କରିଥିଲେ ଏବଂ ତାଙ୍କର ମୃତ୍ୟୁପରେ ସୂର୍ଯ୍ୟବଂଶର ପତନ ଘଟିଥିଲା । ମୁକୁନ୍ଦ ଦେବ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ସେ ବଙ୍ଗଳାରେ ୧୫୬୮ରେ ଆଫଗାନଙ୍କ ସହିତ ଯୁଦ୍ଧ ସମୟରେ ମୃତ୍ୟୁବରଣ କରିଥିଲେ । ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଓଡ଼ିଶା ନିଜର ସ୍ୱାଧୀନତା ହରାଇଥିଲା ।

ମୋଗଲମାନେ ଶହେରୁ ଅଧିକ ବର୍ଷଧରି ଓଡ଼ିଶାକୁ ଶାସନ କରିଥିଲେ । ଔରାଙ୍ଗଜେବଙ୍କ ଶାସନ କାଳରେ ଓଡ଼ିଶାର ମୟୂରଭଞ୍ଜରେ ରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ନେତୃତ୍ୱରେ ଏକ ବିଦୋହ ଆରମ୍ଭ ହୋଇଥିଲା । ଏହି ବିଦ୍ରୋହ ଦମନ ତାଙ୍କ ପକ୍ଷେ ବହୁ କଷ୍ଟସାଧ ହୋଇଥିଲା । ଔରାଙ୍ଗଜେବଙ୍କ ମୃତ୍ୟୁପରେ ମୋଗଲ ସାମ୍ରାଜ୍ୟର ପତନ ଘଟିଲା । ପରେ ବଙ୍ଗଳାର ସ୍ୱାଧୀନ ନବାବଙ୍କ ଦ୍ୱାରା ଓଡ଼ିଶା ଶାସିତ ହୋଇଥିଲା ।

ନାଗପୁରର ଭୋନସାଲା ରାଜା ୧୭୪୧ରେ ଭାସ୍କରରାମ(ଭାସ୍କର ପଣ୍ଡିତ)ଙ୍କ ନେତୃତ୍ୱରେ ଓଡ଼ିଶା ଆକ୍ରମଣ କରିଥିଲେ । ମରାଠାମାନେ ବଙ୍ଗଳାର ନବାବ ଆଲିବର୍ଦ୍ଦି ଖାଁ କୁ ପରାସ୍ତ କରି ଓଡ଼ିଶା ଦଖଲ କରିଥିଲେ । ପରେ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଭାସ୍କୋଡାଗାମା ଭାରତକୁ ଜଳପଥ ଆବିଷ୍କାର କରିବାର ୨ ଦଶନ୍ଧି ମଧ୍ୟରେ ପର୍ତ୍ତୁଗିଜ୍ ମାନେ ଓଡ଼ିଶାର ସୁବର୍ଣ୍ଣରେଖା ନଦୀ ମୁହାଣ ନିକଟ ପିପିଲିଠାରେ ଏକ ସମୃଦ୍ଧ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିଥିଲେ । ଇଂରେଜମାନେ ୧୬୩୩ ମସିହା ସୁଦ୍ଧା ଓଡ଼ିଶାର ହରିହରପୁର ଓ ବାଲେଶ୍ୱରଠାରେ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିଥିଲେ । ପରିବର୍ତ୍ତୀ ସମୟରେ ଡଚ୍, ଡାନିସ୍ ଏବଂ

ଫରାସୀମାନେ ବାଲେଶ୍ୱରଠାରେ ପହଞ୍ଚି ସେମାନଙ୍କର ବାଣିଜ୍ୟକେନ୍ଦ୍ର ପ୍ରତିଷ୍ଠା କରିଥିଲେ। ୧୭୫୭ରେ ଅନୁଷ୍ଠିତ ପଲାସୀ ଯୁଦ୍ଧରେ ଜୟଲାଭ ପରେ ବଙ୍ଗଳା, ବିହାର ଓ ଓଡ଼ିଶାର ଶାସନ ଇଂରେଜମାନଙ୍କ ହାତକୁ ଚାଲିଯାଇଥିଲା। ୧୭୬୫ରେ ଶାହା ଆଲମ୍ ବଙ୍ଗଳା, ବିହାର ଏବଂ ଓଡ଼ିଶା ଦେଓ୍ୱାନି ଭାର ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଅର୍ପଣ କଲେ। କିନ୍ତୁ ଏହି ଓଡ଼ିଶା ସୁବର୍ଣ୍ଣରେଖାର ଉତ୍ତରକୁ ଏକ କ୍ଷୁଦ୍ର ରାଜ୍ୟ ଥିଲା। ଲର୍ଡ ଓ୍ୱେଲସେଲି(୧୭୯୮–୧୮୦୫) ନାଗପୁରର ଶାସକ ଭୋନସଲା ରାଜାଙ୍କୁ ଏକ ସହାୟକ ସନ୍ଧି ସ୍ଥାପନ କରିବା ପାଇଁ ପ୍ରସ୍ତାବ ଦେଇଥିଲେ, ଯାହାକୁ ରାଜା ପ୍ରତ୍ୟାଖ୍ୟାନ କରିଥିଲେ। ବ୍ରିଟିଶ୍‌ମାନେ ଓଡ଼ିଶା ଦଖଲ କରିଥିଲେ। ଇଂରେଜ ଶାସନରେ ଅତିଷ୍ଠ ହୋଇ ରାଜାଙ୍କ ସେନାପତି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ଆରମ୍ଭ ହୋଇଥିଲା। ଏପ୍ରିଲ୧୮୧୭ରେ ପାଇକମାନେ ପୁରୀ ନିଜ ଦଖଲକୁ ନେବା ପରେ ବ୍ରିଟିଶମାନେ କଟକକୁ ପୃଷ୍ଠଭଙ୍ଗ ଦେଇଥିଲେ। ସର୍ବ ଶେଷରେ ଇଂରେଜମାନେ ବିଦ୍ରୋହକୁ ଦମନ କରିବାରେ ସକ୍ଷମ ହୋଇଥିଲେ। ୧୮୫୭ ସିପାହୀ ବିଦ୍ରୋହରେ ସମ୍ବଲପୁର ଭାରତରେ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା। ୧୮୬୫–୬୬ରେ ହୋଇଥିବା ନ–ଅଙ୍କ ଦୁର୍ଭିକ୍ଷ ସମୟରେ ବ୍ରିଟିଶମାନଙ୍କ ଭୁଲ ଶାସନ ଯୋଗୁଁ ୧୦ ଲକ୍ଷରୁ ଅଧିକ ତଥା ଓଡ଼ିଶା ଜନସଂଖ୍ୟାର ଏକ ଚତୁର୍ଥାଂଶ ଲୋକ ଭୋକ ଉପାସରେ ପ୍ରାଣ ହରାଇଥିଲେ।

ଓଡ଼ିଶାର ଭାଗ୍ୟ ନିର୍ଦ୍ଧାରଣରେ ସମାଜ ସଂସ୍କାରକ ଫକୀରମୋହନ ସେନାପତି, ଭଗବାନ ଚରଣ ଦାସ, ରାଧାନାଥ ରାୟ, ମଧୁସୂଦନ ରାଓ, ଏବଂ ମଧୁସୂଦନ ଦାସଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା। ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଏକ ଶକ୍ତିଶାଳୀ ଆନ୍ଦୋଳନ ସଂଗଠିତ ହୋଇଥିଲା। ଯାହା ଫଳରେ ବଙ୍ଗଳା, ମାଡ୍ରାସ ଓ କେନ୍ଦ୍ରୀୟ ରାଜ୍ୟମାନଙ୍କଠାରୁ ଓଡ଼ିଶା ଅଲଗା ହୋଇଥିଲା। ୧୯୩୬ ଏପ୍ରିଲ ୧ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭକଲା। ଏହାର ଠିକ୍ ପରେ ପରେ ଆରମ୍ଭ ହୋଇଥିବା ଗଡଜାତ ଆନ୍ଦୋଳନକୁ ମଧ୍ୟ ୧୯୩୮ରେ ଦମନ କରାଯାଇଥିଲା। ୧୯୪୨ ମସିହାରେ ହୋଇଥିବା ଭାରତଛାଡ ଆନ୍ଦୋଳନରେ ୩୦୦୦ ଲୋକ କାରାବରଣ କରିଥିବା ବେଳେ ମେସିନ୍‌ଗନ୍ ଗୁଳିରେ ୧୦୦ଜଣ ପ୍ରାଣ ହରାଇଥିଲେ। ଭାରତର ସ୍ୱାଧୀନତା ପ୍ରାପ୍ତିପରେ କ୍ଷୁଦ୍ର ଗଡଜାତ ରାଜ୍ୟ ସବୁ ଏକତ୍ରିକରଣ ହୋଇ ୧୯୪୮ରେ ବୃହତ ଓଡ଼ିଶା ରାଜ୍ୟ ଗଠିତ ହେଲା।

ରାଜ୍ୟ ପୁର୍ନଗଠନ କମିଶନଙ୍କ କାର୍ଯ୍ୟ ଫଳରେ ଓଡ଼ିଶାର ସଢେଇକଳା ଓ ଖରସୁଁଆ ଅଞ୍ଚଳ ବିହାର ରାଜ୍ୟରେ ମିଶ୍ରଣ ହେଲା। ପୂର୍ବରୁ ସେଗୁଡିକ ମୟୁରଭଞ୍ଜ ଜିଲାର ଏକ ଅଂଶଥିଲା। ରାଜ୍ୟରେ ହୋଇଥିବା ପ୍ରଶାସନ ପୁନର୍ଗଠନ ପ୍ରକ୍ରିୟା ମାଧମରେ ରାଜ୍ୟରେ ୧୩ଟି ଜିଲ୍ଲା ଗଠିତ ହେଲା ଏବଂ ମୟୂରଭଞ୍ଜ, ସୁନ୍ଦରଗଡ, କେଉଁଝର, ଢେଙ୍କାନାଳ, ଫୁଲବାଣୀ, ବଲାଙ୍ଗିର ଏବଂ କଳାହାଣ୍ଡି, ଜିଲାରେ ଥିବା ରାଜତନ୍ତ୍ର ଲୋପ ପାଇଲା ପରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଶାସନ କାଳରେ ଫଳପ୍ରଦ ପ୍ରଶାସନ ପାଇଁ ଓଡ଼ିଶାର ଜିଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି କରାଯାଇଥିଲା।



# ଓଡ଼ିଶାର ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ

ହେମନ୍ତ କୁମାର ସାହୁ

**ଅତ୍ରି –** ଭୁବନେଶ୍ୱରଠାରୁ ୪୨ କି.ମି. ଦୂରରେ ଅବସ୍ଥିତ ଖୋର୍ଦ୍ଧା ନିକଟସ୍ଥ ଏହି ସ୍ଥାନ ଅବିରତ ୫୫ ଡିଗ୍ରୀ ସେଲ୍‌ସିଅସ୍ ଉତ୍ତାପ ବିଶିଷ୍ଟ ଗନ୍ଧକଯୁକ୍ତ ଉଷ୍ଣ ପ୍ରସବଣ ଏବଂ ପ୍ରଭୁ ହଟକେଶ୍ୱରଙ୍କ ମନ୍ଦିର ପାଇଁ ପ୍ରସିଦ୍ଧ । ଭୁବନେଶ୍ୱରରୁ ସଡ଼କ ପଥରେ ଏହି ସ୍ଥାନକୁ ଉତ୍ତମ ଯୋଗାଯୋଗ ରହିଛି ।

**ବାଲିଘାଇ –** ପୁରୀଠାରୁ ୮ କି.ମି ଦୂରତାରେ ଅବସ୍ଥିତ ଏକ ମନୋରମ ସମୁଦ୍ରକୂଳିଆ ସ୍ଥାନ, ଯେଉଁଠାରେ କି ନୂଆନଇ ସମୁଦ୍ର ବକ୍ଷରେ ମିଶିଛି । ଏହି ସ୍ଥାନକୁ ଯିବାପାଇଁ ସଡ଼କ ପଥରେ ଉତ୍ତମ ଯୋଗାଯୋଗର ବ୍ୟବସ୍ଥା ରହିଛି ।

**ବାଣପୁର –** ବରକୂଳଠାରୁ ୧୦ କି.ମି. ଏବଂ ରମ୍ଭାଠାରୁ ୪୨ କି.ମି. ଦୂରତାରେ ଅବସ୍ଥିତ । ଚିଲିକା ହ୍ରଦ ନିକଟରେ ମା' ଭଗବତୀଙ୍କ ପୁଣ୍ୟପୀଠ ଭାବେ ପ୍ରସିଦ୍ଧ । ଏହି ସ୍ଥାନକୁ ଭୁବନେଶ୍ୱରଠାରୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ଏବଂ ବାଲୁଗାଁ ହେଉଛି ଏହି ସ୍ଥାନର ନିକଟବର୍ତ୍ତୀ ରେଳ ଷ୍ଟେସନ୍ ।

**ବାଙ୍କୀ –** ଭୁବନେଶ୍ୱରଠାରୁ ୫୦ କି.ମି ଦୂରତା ବିଶିଷ୍ଟ ଏବଂ ମହାନଦୀ କୂଳବର୍ତ୍ତୀ ଏକ ମନଲୋଭା ସ୍ଥାନ । ମା ଚର୍ଚ୍ଚିକାଙ୍କ ପୀଠସ୍ଥଳୀଭାବେ ଏହି ସ୍ଥାନ ପ୍ରସିଦ୍ଧି ଲାଭ କରିଛି । ଏଠାକୁ ଭୁବନେଶ୍ୱରଠାରୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ଭିତରକନିକା –** ଭୁବନେଶ୍ୱରଠାରୁ ୨୩୦ କି.ମି. ଦୂରରେ ଅବସ୍ଥିତ । ଏହି ସମୁଦ୍ର ତଟବର୍ତ୍ତୀ ଅଞ୍ଚଳଟି ୧୯୭୫ ମସିହାଠାରୁ କୁମ୍ଭୀର ଅଭୟାରଣ୍ୟ ଭାବେ ପରିଗଣିତ ହୋଇଛି । ଏହାର ସମୀପବର୍ତ୍ତୀ ସମୁଦ୍ରକୂଳ ଅଞ୍ଚଳ ଗହୀରମଥାରେ ବିରଳ ଅଲିଭ ରିଡ୍‌ଲେ ସାମୁଦ୍ରିକ କଇଁଛ ଅଣ୍ଡା ଦେବାକୁ ଆସିଥାନ୍ତି । ଏଠାକୁ ଚାନ୍ଦବାଲିଠାରୁ ଜଳପଥରେ ମୋଟରବୋଟ୍‌ର ବ୍ୟବସ୍ଥା ରହିଛି ।

**ଭୁବନେଶ୍ୱର –** ଓଡ଼ିଶାର ରାଜଧାନୀ, ଲିଙ୍ଗରାଜ, ମୁକ୍ତେଶ୍ୱର, ରାଜାରାଣୀ, ପର୍ଶୁରାମେଶ୍ୱର, ବଇତାଳ, ବ୍ରହ୍ମେଶ୍ୱର ପରି ବିବିଧ ମନ୍ଦିରରେ ପରିପୂର୍ଣ୍ଣ । ଏହି ସହରର ଉତ୍ତର–ପଶ୍ଚିମ କୋଣରେ ଖଣ୍ଡଗିରି ଉଦୟଗିରି ପାହାଡ଼ ଅବସ୍ଥିତ, ଯେଉଁଥିରେକି ପ୍ରାଚୀନ ପ୍ରସ୍ତର ଖୋଦିତ ଗୁମ୍ଫା ଦେଖିବାକୁ ମିଳିଥାଏ । ଲିଙ୍ଗରାଜ ମନ୍ଦିରର ପୂର୍ବକୁ ୨ କି.ମି. ଦୂରରେ ଅବସ୍ଥିତ ଶିଶୁପାଳଗଡ଼ ଯେଉଁଠାରେ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀର ଭଗ୍ନାବଶେଷ ଦେଖିବାକୁ ମିଳିଥାଏ । ଭୁବନେଶ୍ୱରଠାରୁ ଦକ୍ଷିଣରେ ୬ କି.ମି ଦୂରରେ ଧଉଳୀ ଅବସ୍ଥିତ ଯେଉଁଠାରେ ଶାନ୍ତିସ୍ତୂପ ଏବଂ କଳିଙ୍ଗ ଯୁଦ୍ଧ ସମୟର ସମ୍ରାଟ୍ ଅଶୋକଙ୍କ ଶିଳାଲିପି ରହିଛି ।

ଭୁବନେଶ୍ୱରଠାରୁ ୨୦ କି.ମି. ଦୂରରେ ନନ୍ଦନକାନନ ପ୍ରାଣୀ ଉଦ୍ୟାନ ଅବସ୍ଥିତ । ଏଠାକୁ ଆକାଶ ପଥ, ରେଳପଥ ଓ ସଡ଼କ ପଥରେ ଆସିବାପାଇଁ ସୁବିଧା ରହିଛି ।

**ଚାନ୍ଦିପୁର –** ଏକ ଶାନ୍ତ ମନଲୋଭା ସମୁଦ୍ରକୂଳ ଅଞ୍ଚଳରେ ଅବସ୍ଥିତ । ଏଠାରେ ଥିବା ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ ଶିମିଳିପାଳ, ଖିଚିଂ, ପଞ୍ଚଲିଙ୍ଗେଶ୍ୱର ଇତ୍ୟାଦିରେ ପରିଭ୍ରମଣ କରିବାର ସୁବିଧା ରହିଛି । ଏଠାକୁ ବାଲେଶ୍ୱରଠାରୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ଚିଲିକା ହ୍ରଦ –** ଭୁବନେଶ୍ୱରଠାରୁ ୧୦୫ କି.ମି ଏବଂ ବ୍ରହ୍ମପୁର ଠାରୁ ୭୫ କି.ମି ଦୂରରେ ଅବସ୍ଥିତ । ଦେଶର ବୃହତ୍ ଅନ୍ତର୍ଦେଶୀୟ ହ୍ରଦ ଚିଲିକା ବିହଙ୍ଗମୟ ନୀଳ ଜଳରାଶି ସହ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୁର । ଏଠାକୁ ଭୁବନେଶ୍ୱର,ପୁରୀ ଏବଂ ବ୍ରହ୍ମପୁର ଠାରୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**କଟକ –** ଓଡ଼ିଶାର ପୁରାତନ ରାଜଧାନୀ ଏବଂ ପ୍ରମୁଖ ବାଣିଜ୍ୟିକ କେନ୍ଦ୍ର । ଏହା ୧୦୦୦ ବର୍ଷର ପୁରାତନ ଓ ଏକ ଐତିହାସିକ ସହର । ଏହାର ମୁଖ୍ୟ ପର୍ଯ୍ୟଟନ ସ୍ଥଳୀ ମଧ୍ୟରେ ମଧ୍ୟଯୁଗୀୟ ବାରବାଟୀ ଦୁର୍ଗ ଏବଂ ଅନନ୍ୟ କଦମ୍‌ରସୁଲ୍ ପୀଠ ଅନ୍ୟତମ । ତାରକସୀ କାରୁକାର୍ଯ୍ୟ ପାଇଁ ଏହାର ପ୍ରସିଦ୍ଧି ରହିଛି । କଟକରୁ ଧବଳେଶ୍ୱର ମନ୍ଦିରକୁ ଡଙ୍ଗା ଯୋଗେ ଯିବାପାଇଁ ବ୍ୟବସ୍ଥା ରହିଛି । ଏଠାକୁ ଉଭୟ ରେଳପଥ ଓ ସଡ଼କ ପଥରେ ଆସିବା ପାଇଁ ଉତ୍ତମ ଯୋଗାଯୋଗ ରହିଛି ।

**ଧଉଳୀ –** (ଭୁବନେଶ୍ୱର ଦେଖନ୍ତୁ)

**ଗହୀରମଥା –** (ଭିତରକନିକା ଦେଖନ୍ତୁ)

**ଗୋପାଳପୁର –** ବ୍ରହ୍ମପୁରଠାରୁ ୧୬ କି.ମି. ଦୂରରେ ଅବସ୍ଥିତ ସମୁଦ୍ର ତଟବର୍ତ୍ତୀ ଏହି ସ୍ଥାନକୁ ବର୍ଷତମାମ ଦେଶ ଏବଂ ଦେଶ ବାହାରୁ ପର୍ଯ୍ୟଟକଙ୍କ ଭିଡଲାଗି ରହିଥାଏ । ବ୍ରହ୍ମପୁରଠାରୁ ଏଠାକୁ ସଡକ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ହରିଶଙ୍କର –** ସମ୍ବଲପୁର ଠାରୁ ୧୬୫ କି.ମି ଦୂରବର୍ତ୍ତୀ ଗନ୍ଧମାର୍ଦ୍ଦନ ପାହାଡ଼ର ପାଦଦେଶରେ ହରିଶଙ୍କର ମନ୍ଦିର ଅବସ୍ଥିତ । ଏହାର ବିପରୀତ ପାର୍ଶ୍ୱରେ ନୃସିଂହନାଥ ମନ୍ଦିର । ଏହି ଦୁଇ ମନ୍ଦିର ମଧ୍ୟସ୍ଥ ପାର୍ବତ୍ୟାଞ୍ଚଳରେ ବୌଦ୍ଧଯୁଗୀୟ ଭଗ୍ନାବଶେଷ ମିଳେ ଯାହା ପ୍ରାଚୀନ ବିଶ୍ୱ ବିଦ୍ୟାଳୟ ପରିମଳଗିରିର ଭଗ୍ନାବଶେଷ ବୋଲି କୁହାଯାଏ । ଏଠାକୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ହୀରାପୁର –** ଭୁବନେଶ୍ୱରଠାରୁ ୧୨ କି.ମି ଦୂରତା ବିଶିଷ୍ଟ ଏହି ସ୍ଥାନ ଚଉଷଠୀ ଯୋଗିନୀ ମନ୍ଦିର ପାଇଁ ପ୍ରସିଦ୍ଧ । ଏହି ମନ୍ଦିରଟି ଗୋଲାକାର ଏବଂ ଛାତ ବିହୀନ ଅଟେ । ଭୁବନେଶ୍ୱରରୁ ଏଠାକୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ହୀରାକୁଦ –** ସମ୍ବଲପୁର ଠାରୁ ୧୬ କି.ମି ଦୂରରେ ଅବସ୍ଥିତ ଏହି ସ୍ଥାନ ପୃଥିବୀର ଦୀର୍ଘତମ ନଦୀବନ୍ଧ ଏବଂ ଏସିଆ ମହାଦେଶର ବୃହତ୍ତମ କୃତ୍ରିମ ହ୍ରଦ ପାଇଁ ପ୍ରସିଦ୍ଧ । ଏଠାକୁ ସମ୍ବଲପୁରଠାରୁ ଉଭୟ ସଡ଼କ ପଥ ଏବଂ ରେଳପଥର ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ଯାଜପୁର –** କଟକଠାରୁ ୬୦ କି.ମି ଦୂର ପବିତ୍ର ବୈତରଣୀ ନଦୀ କୂଳରେ ଅବସ୍ଥିତ । ଏହି ସ୍ଥାନ ମା'ବିରଜାଙ୍କ ପୀଠ ଭାବେ ପ୍ରସିଦ୍ଧ । ଏଠାରେ ମା'ବିରଜାଙ୍କ ମନ୍ଦିର ସମେତ ଅନେକ ଗୁଡ଼ିଏ ମନ୍ଦିର ରହିଛି ।

ଏଠାକୁ କଟକରୁ ସଡ଼କ ପଥରେ ଏବଂ ଯାଜପୁର ରୋଡ଼ରୁ ରେଳପଥରେ ଆସିବା ପାଇଁ ବ୍ୟବସ୍ଥା ରହିଛି ।

**ଜଉଗଡ଼ –** ବ୍ରହ୍ମପୁରଠାରୁ ୩୫ କି.ମି ଦୂରରେ ଅବସ୍ଥିତ ଜଉଗଡ଼ଠାରେ ସମ୍ରାଟ୍ ଅଶୋକଙ୍କ ଶିଳାଲେଖ ସହିତ ୬ଷ୍ଠ ଶତାବ୍ଦୀର ଏକ ଦୁର୍ଗ ମଧ୍ୟ ରହିଛି । ବୁଗୁଡ଼ାଠାରୁ କିଛି କିଲୋମିଟର ଦୂରରେ ଆଉ ଏକ ପ୍ରାଚୀନ ଦୁର୍ଗ ଏବଂ ଏକ ମନ୍ଦିର ରହିଛି, ଯେଉଁଥିରେକି କାରୁକାର୍ଯ୍ୟମୟ କାଠ ଖୋଦେଇ ଏବଂ ପ୍ରାଚୀର ଚିତ୍ରକଳା ଦେଖିବାକୁ ମିଳିଥାଏ । ଏଠାକୁ ବ୍ରହ୍ମପୁରଠାରୁ ସଡ଼କ ପଥରେ ଉତ୍ତମ ଯାତାୟାତ ବ୍ୟବସ୍ଥା ରହିଛି ।

**କପିଳାଶ –** ଢେଙ୍କାନାଳ ସହରଠାରୁ ୨୬ କି.ମି ଦୂରରେ ପବିତ୍ର କପିଳାଶ ପୀଠ ପର୍ବତର ଶିଖରରେ ଅବସ୍ଥିତ । ୪୫୭ ମିଟର ଉଚ୍ଚରେ ଏଠାରେ ଏକ ମନୋରମ ଶିବ ମନ୍ଦିର ଅବସ୍ଥିତ । ଏହି ମନ୍ଦିରକୁ ଆସିବାପାଇଁ ୧୩୫୧ଟି ପାହାଚ ରହିଛି । ଏହି ସ୍ଥାନକୁ ଢେଙ୍କାନାଳଠାରୁ ସଡକ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ଖଣ୍ଡଗିରି –** (ଭୁବନେଶ୍ୱର ଦେଖନ୍ତୁ), ଏଠାରେ ଫେବୃଆରୀ–ମାର୍ଚ୍ଚ ମାସରେ ମାଘ ସପ୍ତମୀଠାରୁ ଏକ ମେଳା ଆରମ୍ଭ ହୋଇଥାଏ ।

**ଖିଚିଂ –** ବାଲେଶ୍ୱର ଠାରୁ ୨୦୫ କି.ମି. ଏବଂ ବାରିପଦା ଠାରୁ ୧୫୦ କି.ମି ଦୂରରେ ଅବସ୍ଥିତ ଏହି ସ୍ଥାନରେ କୀଚକେଶ୍ୱରୀ ଏବଂ ଚାମୁଣ୍ଡା ମନ୍ଦିର ସମେତ ଅନେକଗୁଡ଼ିଏ ମନ୍ଦିର ଦେଖିବାକୁ ମିଳିଥାଏ । ଏଠାକୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**କୋଣାର୍କ –** ଭୁବନେଶ୍ୱର ଠାରୁ ୬୫ କି.ମି ଏବଂ ପୁରୀ ଠାରୁ ୩୫ କି.ମି. ଦୂରବର୍ତ୍ତୀ କୋଣାର୍କ ସୂର୍ଯ୍ୟ ମନ୍ଦିର ବିଶ୍ୱର ବିସ୍ମୟ ଅଟେ ଏବଂ ଏହା ଏକ ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ । କୋଣାର୍କ ନିକଟବର୍ତ୍ତୀ ଚନ୍ଦ୍ରଭାଗା ଠାରେ ଫେବୃଆରୀ–ମାର୍ଚ୍ଚ ମାସରେ ମାଘ ସପ୍ତମୀ ଅବସରରେ ଏକ ମେଳା ଅନୁଷ୍ଠିତ ହୋଇଥାଏ ଏବଂ ନଭେମ୍ବର ମାସର ଶେଷ ସପ୍ତାହରେ ଏକ ବାର୍ଷିକ ନୃତ୍ୟୋତ୍ସବ ଆୟୋଜିତ ହୋଇଥାଏ । ସଡ଼କ ପଥରେ ଏଠାକୁ ଉତ୍ତମ ଯୋଗାଯୋଗର ବ୍ୟବସ୍ଥା ରହିଛି ।

**ଲଳିତଗିରି–ରତ୍ନଗିରି –** ଭୁବନେଶ୍ୱରଠାରୁ ୯୦ କି.ମି ଏବଂ କଟକଠାରୁ ୬୦ କି.ମି. ଦୂରବର୍ତ୍ତୀ ଏହି ସ୍ଥାନରେ ୭ମ ଖ୍ରୀଷ୍ଟାବ୍ଦର ଏକ ବୌଦ୍ଧ ସ୍ତୁପ ଦେଖିବାକୁ ମିଳେ । ଏଠାକୁ ସଡ଼କ ପଥରେ ଆସିବା ପରେ ରତ୍ନଗିରିକୁ ନୌକା ଏବଂ ରିକ୍ସାରେ ଯିବାର ବ୍ୟବସ୍ଥା ଅଛି ।

**ନନ୍ଦନକାନନ –** ଭୁବନେଶ୍ୱରଠାରୁ ୨୦ କି.ମି ଦୂରରେ ଅବସ୍ଥିତ ନନ୍ଦନକାନନ ଦେଶର ଏକ ପ୍ରମୁଖ ଜୈବ ପାର୍କ ଏବଂ ପ୍ରାଣୀ ଉଦ୍ୟାନ । ଏହି ପ୍ରାଣୀ ଉଦ୍ୟାନ ଧଳା ବାଘ ଏବଂ ସିଂହ ସଫାରୀ ପାଇଁ ପ୍ରସିଦ୍ଧ । ଏଠାରେ ନୌକାବିହାରର ସୁବିଧା ରହିଛି । ଏଠାକୁ ଉଭୟ ସଡ଼କ ଓ ରେଳପଥରେ ଯୋଗାଯୋଗ ବ୍ୟବସ୍ଥା ଅଛି ।

**ନୃସିଂହନାଥ –** (ହରିଶଙ୍କର ଦେଖନ୍ତୁ)

**ପିପିଲି –** ଭୁବନେଶ୍ୱରଠାରୁ ପୁରୀ ରାସ୍ତାରେ ୨୦ କି.ମି ଦୂରବର୍ତ୍ତୀ ଏହି ସ୍ଥାନ ଚାନ୍ଦୁଆ କାମ ପାଇଁ ପ୍ରସିଦ୍ଧ । ପିପିଲିକୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ପୁରୀ –** ଭୁବନେଶ୍ୱରଠାରୁ ୬୦ କି.ମି ଦୂରରେ ଅବସ୍ଥିତ ପୁରୀ ଭାରତର ପବିତ୍ର ଚାରିଧାମ ମଧ୍ୟରୁ ଅନ୍ୟତମ । ଏହା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ ଏବଂ ଏକ ସମୁଦ୍ରକୂଳବର୍ତ୍ତୀ ସହର ଭାବେ ଖ୍ୟାତ । ପୁରୀ ଓଡ଼ିଶାର ପ୍ରମୁଖ ଧାର୍ମିକ ସ୍ଥଳୀ ଏବଂ ଉଭୟ ଧାର୍ମିକ ଏବଂ ଧର୍ମ ନିରପେକ୍ଷ ପର୍ଯ୍ୟଟକଙ୍କ ପାଇଁ ଆକର୍ଷଣୀୟ ସ୍ଥଳୀ । ଏଠାକୁ ଉଭୟ ସଡ଼କ ଓ ରେଳପଥରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥା ରହିଛି ।

**ରାଣିପୁର–ଝରିଆଲ –** ବଲାଙ୍ଗୀରଠାରୁ ୧୦୪ କି.ମି ଦୂରରେ ଅବସ୍ଥିତ ଏହି ସ୍ଥାନ ଗୋଲାକାର ଚଉଷଠୀ ଯୋଗିନୀ ପୀଠ ପାଇଁ ପ୍ରସିଦ୍ଧ । ଏଠାକୁ ସଡ଼କ ପଥରେ ଉତ୍ତମ ଯୋଗାଯୋଗର ବ୍ୟବସ୍ଥା ରହିଛି ।

**ରେମୁଣା –** (ବାଲେଶ୍ୱରଠାରୁ ୧୦ କି.ମି. ଦୂରରେ ଅବସ୍ଥିତ) ଏହି ସ୍ଥାନ କ୍ଷୀରଚୋରା ଗୋପୀନାଥ ମନ୍ଦିର ପାଇଁ ପ୍ରସିଦ୍ଧ ।

**ରତ୍ନଗିରି –** (ଲଳିତଗିରି ବର୍ଣ୍ଣନା ଦେଖନ୍ତୁ)

**ସାକ୍ଷୀଗୋପାଳ –** ପୁରୀଠାରୁ ୨୦ କି.ମି ଦୂରରେ ଅବସ୍ଥିତ । ସାକ୍ଷୀଗୋପାଳ ମନ୍ଦିର ପାଇଁ ଏହି ସ୍ଥାନ ପ୍ରସିଦ୍ଧ ।

**ଶିମିଳିପାଳ –** ଭୁବନେଶ୍ୱରଠାରୁ ୩୬୮ କି.ମି ଏବଂ ବାରିପଦାଠାରୁ ୯୪ କି.ମି ଦୂରରେ ଅବସ୍ଥିତ । ଏହା ଏକ ପ୍ରସିଦ୍ଧ ବ୍ୟାଘ୍ର ପ୍ରକଳ୍ପ ସ୍ଥଳ । ୨,୭୫୦ ବର୍ଗ କି.ମି ଅନ୍ତର୍ଭୁକ୍ତ ଏହି ଅଞ୍ଚଳର ଦୃଶ୍ୟ ଅତୀବ ମନୋରମ । ସଡ଼କ ପଥରେ ଏହି ସ୍ଥାନକୁ ଉତ୍ତମ ଯୋଗାଯୋଗର ବ୍ୟବସ୍ଥା ରହିଛି ।

**ସୋନପୁର –** ବଲାଙ୍ଗିରଠାରୁ ୪୮ କି.ମି ଦୂରରେ ଅବସ୍ଥିତ । ଏହି ସ୍ଥାନ ପଶ୍ଚିମ ଓଡ଼ିଶାର ମନ୍ଦିରମାଳିନୀ ସହର ରୂପେ ପରିଚିତ । ମହାନଦୀ ଓ ତେଲନଦୀର ସଂଗମ ସ୍ଥଳୀରେ ଅବସ୍ଥିତ ଏହା ଏକ ମନୋରମ ସ୍ଥାନ । ଏଠାରେ ଥିବା ଜ୍ଞାନଦେବୀ ମାଲୁଣୀ ଏବଂ ସ୍ତମ୍ଭେଶ୍ୱରୀ ମନ୍ଦିର ବେଶ୍ ପ୍ରସିଦ୍ଧି ଲାଭ କରିପାରିଛି ।

**ଟିକରପଡ଼ା –** କଟକଠାରୁ ୧୮୦ କି.ମି ଏବଂ ଢ଼େଙ୍କାନାଳଠାରୁ ୧୨୦ କି.ମି ଦୂରରେ ଅବସ୍ଥିତ । ୨୨ କି.ମି ବିସ୍ତୀର୍ଣ୍ଣ ସାତକୋଶିଆ ଗଣ୍ଡ କୁମ୍ଭୀର ଅଭୟାରଣ୍ୟ ପାଇଁ ପ୍ରସିଦ୍ଧି । ନୌକାଚାଳନା, ମାଛ ଧରିବା ଏବଂ ପର୍ବତାରୋହଣ କରିବାର ସୁଯୋଗ ଏଠାରେ ଉପଲବ୍ଧ । ସଡ଼କ ପଥରେ ଏଠାକୁ ଯାତାୟାତ କରିବାର ଉତ୍ତମ ବ୍ୟବସ୍ଥା ରହିଛି ।

**ଉଦୟଗିରି –** (ଭୁବନେଶ୍ୱର ଦେଖନ୍ତୁ)

**ଉଷାକୋଠୀ –** ସମ୍ବଲପୁରଠାରୁ ୪୮ କି.ମି. ଦୂରତାରେ ଅବସ୍ଥିତ ଏହା ଏକ ଅଭୟାରଣ୍ୟ । ଏଠାରେ ହାତୀ, ବାଘ, ଗୟଳ, ସମ୍ବର, କଲରା ପତରିଆ ଚିତାବାଘ, ହରିଣ ଇତ୍ୟାଦି ଦେଖିବାକୁ ମିଳିଥାଏ । ଏଠାକୁ ସଡ଼କ ପଥରେ ଯୋଗାଯୋଗର ବ୍ୟବସ୍ଥା ରହିଛି ।



# ଚମ୍ପାରଣ ସତ୍ୟାଗ୍ରହ ଓ ଗାନ୍ଧୀ

ଡ. ସୌରୀବଂଧୁ କର

ସୁପ୍ରସିଦ୍ଧ ସମାଜବାଦୀ ଓ ବିପ୍ଳବୀ ରୋଜା ଲକଜମ୍‌ବର୍ଗ ତାଙ୍କର ଚର୍ଚ୍ଚିତ ପୁସ୍ତକ 'ଆକୁମ୍ୟୁଲେସନ୍ ଅଫ୍ କ୍ୟାପିଟାଲ'ରେ ବିଚାର ବ୍ୟକ୍ତ କରିଥିଲେ ଯେ, ପୁଞ୍ଜି ସଞ୍ଚୟର ପ୍ରକ୍ରିୟା ପୁଞ୍ଜିପତିମାନଙ୍କ ଦ୍ୱାରା ସେମାନଙ୍କ ସଂସ୍ଥାରେ ଶ୍ରମିକମାନଙ୍କୁ ଶୋଷଣ କରିବାରେ କେବଳ ସୀମିତ ରହେ ନାହିଁ ବରଂ ଏହି ଶୋଷଣ ପାଇଁ ଏକ ବାହ୍ୟ ପରିସର ଅପରିହାର୍ଯ୍ୟ। ଅତଏବ, ୟୁରୋପର ଉଦ୍ୟୋଗିକ ବିକାଶ ପାଇଁ ଏସିଆ ଓ ଆଫ୍ରିକାର ଉପନିବେଶ ଏହାକୁ ପରିପୂର୍ଣ୍ଣ କରିବାର ଭୂମିକା ପାଳନ କରିଥିଲା। ନୀଳ ଚାଷ ସହିତ ଶୋଷଣର ଇତିହାସ ଏହି ପର୍ଯ୍ୟାୟଭୁକ୍ତ। ଗାନ୍ଧୀଙ୍କର ଚମ୍ପାରଣ ଆସିବାର ସମୟ ଥିଲା ଏହିପରି ଏକ ସମୟ।



ନୀଳଚାଷ ସହିତ ଶୋଷଣର କାହାଣୀ ଚମ୍ପାରଣ ପୂର୍ବରୁ ବଂଗଳାରେ ପ୍ରଥମେ ଆରମ୍ଭ ହୋଇଥିଲା। ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବିହାର ଥିଲା ବଂଗଳାର ଅଂଶବିଶେଷ। ବଂଗଳାରେ ନୀଳଉଦ୍ୟୋଗର ମାଲିକମାନଙ୍କ ଜୁଲୁମ ସଂପର୍କରେ 'ନୀଳଦର୍ପଣ' ନାମକ ଗୋଟିଏ ନାଟକରେ ବର୍ଣ୍ଣନା କରାଯାଇଥିଲା, ଯାହାର ଲେଖକ ଥିଲେ ଦୀନବଂଧୁ ମିତ୍ର। ଏହି ନାଟକ ପୁସ୍ତକରେ ଲେଖକର ନାମ ନଥିଲା। ଏହାର ଇଂରେଜୀ ଅନୁବାଦ ହୋଇ ବ୍ରିଟେନ୍‌ରେ ବଣ୍ଟାଯାଇଥିଲା ଯାହା ଫଳରେ ଏହାର ପ୍ରକାଶନ କରିଥିବା ଓ ପ୍ରଚାର କରିଥିବା ଜଣେ ପାଦ୍ରୀଙ୍କ ସହିତ କେତେ ଲୋକଙ୍କୁ ଜେଲ ଯିବାକୁ ପଡିଥିଲା। ବଂଗଳାରେ ନୀଳଚାଷ ସଂପର୍କିତ ଘଟଣା ମୋହନ ଦାସ କରମଚାନ୍ଦ ଗାନ୍ଧୀ ଏବଂ ରାଜକୁମାର ଶୁକ୍ଳଙ୍କର ଜନ୍ମ ପୂର୍ବରୁ ଘଟି ସାରିଥିଲା।

ଭାରତର ସ୍ୱାଧୀନତା ସଂଗ୍ରାମରେ ଚମ୍ପାରଣ ସତ୍ୟାଗ୍ରହ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ କାରଣ ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଫେରିବା ପରେ ପ୍ରଥମଥର ପାଇଁ ଭାରତର ଚମ୍ପାରଣଠାରେ ତାଙ୍କର ସତ୍ୟାଗ୍ରହ ରୂପକ ଅସ୍ତ୍ରକୁ ବ୍ରିଟିଶ ଶାସନ ବ୍ୟବସ୍ଥା ବିରୁଦ୍ଧରେ ପ୍ରୟୋଗ କରିଥିଲେ। ୧୫ ଏପ୍ରିଲ୍ ୧୯୧୭ ମସିହାରେ ଗାନ୍ଧୀ ଚମ୍ପାରଣ ଠାରେ ପହଞ୍ଚି ନୀଳଚାଷୀମାନଙ୍କ ଦ୍ୱାରା ନୀଳଚାଷ ବିରୁଦ୍ଧରେ ହେଉଥିବା ଆନ୍ଦୋଳନର ନେତୃତ୍ୱ ନେଇଥିଲେ।

ଗାନ୍ଧୀଙ୍କର ଚମ୍ପାରଣ ଯିବା ଓ ନୀଳଚାଷ ସଂପର୍କରେ ଜାଣିବା ବିଷୟରେ ସେ ଲେଖିଥିଲେ, 'ଚମ୍ପାରଣ ରାଜା ଜନକଙ୍କର ଭୂମି। ଚମ୍ପାରଣରେ ଯେପରି ଆମ୍ରବଗିଚା ରହିଛି,

ସେହିପରି ସେଠାରେ ୧୯୧୭ ମସିହାରେ ନୀଳଚାଷ ହେଉଥିଲା । ଚମ୍ପାରଣର ଚାଷୀ ତା' ଜମିର, ୨୦କଠା ମଧ୍ୟରୁ ୩ କଠାରେ ତାହାର ପ୍ରକୃତ ମାଲିକ ପାଇଁ ଓ ଆଇନ ହେତୁ ନୀଳଚାଷ କରିବାକୁ ବାଧ୍ୟ ହେଉଥିଲା । ଏହି ପ୍ରଥାକୁ ତିନିକାଠିଆ କୁହାଯାଉଥିଲା । କୋଡିଏ କଠାରେ ସେଠାରେ ଗୋଟିଏ ଏକର ଥିଲା ଏବଂ ସେଥିରୁ ତିନି କଠାରେ ଥିବା ଚାଷକୁ ତିନିକାଠିଆ ପ୍ରଥା କୁହାଯାଉଥିଲା । ମୋତେ ଏହା ସ୍ୱୀକାର କରିବାକୁ ହେବ ଯେ, ମୁଁ ପ୍ରଥମେ ଚମ୍ପାରଣର ନାମ ପର୍ଯ୍ୟନ୍ତ ଜାଣି ନଥିଲି । ସେଠାରେ ନୀଳଚାଷ ହୁଏ, ତା'ର ଖିଆଲ ମଧ୍ୟ ମୋର ଆଦୌ ନଥିଲା । ନୀଳର ଗୋଟିସବୁ ଦେଖିଥିଲି, କିନ୍ତୁ ଏହା ଚମ୍ପାରଣରେ ତିଆରି ହେଉଛି ଏବଂ ତାହା ଯୋଗୁ ହଜାର ହଜାର କୃଷକଙ୍କୁ କଷ୍ଟ ଭୋଗିବାକୁ ହେଉଛି, ତାହାର କୌଣସି ସମ୍ବାଦ ନଥିଲା ।'

ରାଜକୁମାର ଶୁକ୍ଲ ଚମ୍ପାରଣର ଜଣେ କୃଷକ ଥିଲେ । ତାଙ୍କ ଉପରେ ଏହି ଦୁଃଖ ଲଦି ହୋଇଗଲା । ସେହି ଦୁଃଖ ତାଙ୍କୁ ଅତିଷ୍ଠ କରୁଥିଲା । କିନ୍ତୁ ସେହି ଦୁଃଖ ତାଙ୍କ ହୃଦୟରେ ଅଗ୍ନି ପ୍ରଜ୍ୱଳିତ କଲା । ସମସ୍ତ ନୀଳଚାଷୀଙ୍କ ଯନ୍ତ୍ରଣାକୁ ଧୋଇ ଦେବା ପାଇଁ ରାଜକୁମାର ଶୁକ୍ଲ ଚାଷୀମାନଙ୍କ ପକ୍ଷରୁ ୨୭ ଫେବୃୟାରୀ ୧୯୧୭ ମସିହାରେ ଗାନ୍ଧୀଜୀଙ୍କ ପାଖକୁ ବେତିୟାରୁ ଗୋଟିଏ ଚିଠି ଜଣେ ଯୁବକ ମହମ୍ମଦ ମୁନ୍‌ସୀ ଦ୍ୱାରା ଲେଖାଇ ପଠାଇଥିଲେ । ସେଥିରେ ସେ ଲେଖିଥିଲେ,

ମାନ୍ୟବର ମହାତ୍ମା,

ଆପଣ ସବୁଦିନ ଅନ୍ୟମାନଙ୍କର କଥା ଶୁଣୁଛନ୍ତି,

ଆଜି ମୋର ଦୁଃଖର କାହାଣୀ ଶୁଣନ୍ତୁ ।

ଆପଣ ଅସାଧ୍ୟ କଥାକୁ ପ୍ରତ୍ୟକ୍ଷ କରି କାର୍ଯ୍ୟରେ ତାହା କରି ଦେଖାଇଦେଲେ ଏବଂ ଯାହାକୁ ଟଲଷ୍ଟୟଙ୍କ ପରି ମହାତ୍ମା କେବଳ ବିଚାର କରୁଥିଲେ । ସେହି ଆଶା ଓ ବିଶ୍ୱାସରେ ବଶୀଭୂତ ହୋଇ ଆମେ ଆପଣଙ୍କ ନିକଟକୁ ଆମର ରାମକଥା ଶୁଣାଇବାପାଇଁ ପ୍ରସ୍ତୁତ ହେଉଛୁ । ଆମର ଦୁଃଖପୂର୍ଣ୍ଣ କାହାଣୀ ସେହି ଦକ୍ଷିଣ ଆଫ୍ରିକା ଅତ୍ୟାଚାର ଯାହା ଆପଣ ଏବଂ ଆପଣଙ୍କ ଅନୁଗାମୀ ସତ୍ୟାଗ୍ରହୀ ଭଉଣୀ ଓ ଭାଇମାନଙ୍କ ସହିତ ହେଲା– ଏହା ତା'ଠାରୁ ଅଧିକ । ଆମେ ଆମର ଏହି ଦୁଃଖ ଯାହା ଆମର ୧୯ଲକ୍ଷ ଆତ୍ମାର ହୃଦୟ ଉପରେ ବହିଚାଲିଛି, ଆପଣଙ୍କୁ ଶୁଣାଇ ଆପଣଙ୍କ କୋମଳ ହୃଦୟକୁ ଦୁଃଖିତ କରିବାକୁ ଉଚିତ ମଣୁନାହୁଁ । ମାତ୍ର କେବଳ ଏତିକି ମାତ୍ର ପ୍ରାର୍ଥନା ଯେ, ଆପଣ ନିଜେ ଆସି ନିଜ ସ୍ୱଚକ୍ଷୁରେ ଦେଖିଯାଆନ୍ତୁ ଯାହା ଫଳରେ ଆପଣଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ହୋଇଯିବ ଯେ ଭାରତବର୍ଷର ଗୋଟିଏ କୋଣରେ ଏଠାକାର ପ୍ରଜା ଯାହାଙ୍କୁ ବ୍ରିଟିଶ ଶାସନର ସୁଶୀତଳ ଛାୟାରେ ରହିବାର ଅଭିମାନ ପ୍ରାପ୍ତ ହୋଇଛି କିପରି ଭାବରେ କଷ୍ଟ ସହ୍ୟକରି ପଶୁପରି ଜୀବନ କଟାଉଛନ୍ତି । ଆମେ ଆଉ ଅଧିକ କିଛି ନ ଲେଖି ଆପଣଙ୍କର ଧ୍ୟାନ ସେହି ପ୍ରତିଜ୍ଞା ପ୍ରତି ଆକର୍ଷିତ କରିବାକୁ ଚାହୁଁଛୁ, ଯାହା ଲକ୍ଷ୍ନୌ କଂଗ୍ରେସ ସମୟରେ, ପୁନଶ୍ଚ ସେଠାରୁ ଫେରିବା ପରେ କାନପୁରଠାରେ ଆପଣ କହିଥିଲେ, ଅର୍ଥାତ୍ ମୁଁ ମାର୍ଚ୍ଚ–ଏପ୍ରିଲ୍ ମାସରେ ଚମ୍ପାରଣ ଆସିବି । ବାସ୍, ବର୍ତ୍ତମାନ ସେହି ସମୟ ଉପସ୍ଥିତ । ମହାଶୟ, ଆପଣ ଆପଣଙ୍କ ପ୍ରତିଜ୍ଞାକୁ ପୂରଣ କରନ୍ତୁ । ଚମ୍ପାରଣର ୧୯ଲକ୍ଷ ଦୁଃଖୀ ପ୍ରଜା ମହାଶୟଙ୍କର ପାଦପଦ୍ମ ଦର୍ଶନ କରିବାକୁ ଉତ୍କଣ୍ଠାର ସହିତ ବସି ରହିଛନ୍ତି ଏବଂ ସେମାନଙ୍କର କେବଳ ଆଶା ନୁହେଁ, ବରଂ ପୂର୍ଣ୍ଣ ବିଶ୍ୱାସ ଅଛି ଯେ ଯେପରି ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଚରଣ ସ୍ପର୍ଶରେ ଅହଲ୍ୟା ଉଦ୍ଧାର ପାଇଗଲେ, ସେହିପରି ଭାବରେ ମହାଶୟଙ୍କର ଚମ୍ପାରଣରେ ପାଦରଖିବା ମାତ୍ରେ ଆମେ ୧୯ଲକ୍ଷ ପ୍ରଜାଙ୍କର ଉଦ୍ଧାର ହୋଇଯିବ ।

ଆପଣଙ୍କର ଦର୍ଶନାଭିଳାଷୀ

ରାଜକୁମାର ଶୁକ୍ଲ

ରାଜକୁମାର ଶୁକ୍ଲଙ୍କର ଏକାନ୍ତ ଅନୁରୋଧ କ୍ରମେ ଗାନ୍ଧୀ ତାଙ୍କ ସହିତ କଲିକତାରୁ ଯାତ୍ରାକରି ୧୦ ଏପ୍ରିଲ୍ ୧୯୧୭ ମସିହା ଦିନ ୧୦ଟା ବେଳେ ପାଟନା ଜଙ୍କସନ୍‌ରେ ପହଞ୍ଚିଲେ । ଉଭୟ ଚାଲିଲେ ପାଟନାରେ ଥିବା ପ୍ରସିଦ୍ଧ ଓକିଲ ରାଜେନ୍ଦ୍ର ପ୍ରସାଦଙ୍କ ଗୃହ ଅଭିମୁଖେ । ଓକିଲ ରାଜେନ୍ଦ୍ର ପ୍ରସାଦ ଘରେ ବା ପାଟନାରେ ନଥିଲେ । ଗାନ୍ଧୀ ତାଙ୍କର ପୁରାତନ ବନ୍ଧୁ ମଜହରୁଲ ହକ୍ ପାଖକୁ ସମ୍ବାଦ ପଠାଇବାରୁ ସେ ତତ୍‌କ୍ଷଣାତ୍ ଆସି ଗାନ୍ଧୀଙ୍କୁ ତାଙ୍କ ବିଶାଳ କୋଠିକୁ ନେଇଗଲେ । ଗାନ୍ଧୀ କିନ୍ତୁ ସେଠାରେ ନରହି ସେହି ରାତିରେ ମୁଜାଫରପୁର ଯିବାପାଇଁ ଟ୍ରେନ୍‌ରେ ଯାତ୍ରା କଲେ । ମୁଜାଫରପୁରଠାରେ କମିଶନର ଏବଂ ନୀଳ

ମାଲିକମାନଙ୍କର ସଂଗଠନର କାର୍ଯ୍ୟାଳୟ ଥିଲା। ଗାନ୍ଧୀ ସେମାନଙ୍କୁ ସାକ୍ଷାତ କରିବାକୁ ଚାହିଁଲେ। ୧୧ଏପ୍ରିଲ୍‌ରେ ଗାନ୍ଧୀ ଯେତେବେଳେ ନୀଳ ଉତ୍ପାଦନକାରୀ ସଂଗଠନର ସଚିବ ମିଷ୍ଟର ଜେ.ଏମ୍ ଉଇଲସନ୍‌ଙ୍କୁ ଭେଟିଲେ ସେ ତାଙ୍କୁ ଅତ୍ୟନ୍ତ କଟୁ ଶବ୍ଦରେ କହିଲେ ଯେ ନୀଳ ଉତ୍ପାଦକ ଓ ଚାଷୀମାନଙ୍କ ମଧ୍ୟରେ ମଧ୍ୟସ୍ଥତା କରିବାର ତାଙ୍କର କୌଣସି ଔଚିତ୍ୟ ବା ଅଧିକାର ନାହିଁ। ତିନିଦିନ ପରେ ସେ ତିରିହତ୍ତୁ ଡିଭିଜନର କମିଶନର ମିଷ୍ଟର ଏଲ୍.ଏଫ, ମୋର୍ଶେଡଙ୍କୁ ଭେଟିଲେ। ସେ ଗାନ୍ଧୀଙ୍କୁ ଧମକାଇ କହିଲେ ଯେ କିଏ ତାଙ୍କୁ ସେଠିକୁ ଡାକିଛି ଓ ସେ ତାଙ୍କର ତଦନ୍ତରେ ସାହାଯ୍ୟ କରିବେ ନାହିଁ। କାରଣ ସରକାର ସ୍ୱୟଂ ଏହାର ଯାଞ୍ଚ କରୁଛନ୍ତି। ସେ ତାଙ୍କୁ ତୁରନ୍ତ ତିରହୁତରୁ ପ୍ରସ୍ଥାନ କରିବାକୁ ଉପଦେଶ ଦେଲେ।

ଗାନ୍ଧୀ ସେଠାରେ ପହଞ୍ଚିବା ବେଳେ ଯେଉଁସବୁ ସମସ୍ୟା ସଂପର୍କରେ ଅବଗତ ହେଲେ ସେଥିରେ ଥିଲା ଚାଷୀମାନଙ୍କର ପୃଥକ୍ ପୃଥକ୍ ମକଦ୍ଦମା ଅଦାଲତରେ ଚାଲୁଥିଲା ଏବଂ ଅତ୍ୟଧିକ ଖର୍ଚ୍ଚ କରିବାକୁ ପଡୁଥିଲା। ଗାନ୍ଧୀ ଜାଣିଥିଲେ କୋର୍ଟ କଚେରୀ କାରବାର ବେଆଇନ୍ ଏବଂ ଚାଷୀମାନଙ୍କୁ ନୀଳ ଉତ୍ପାଦକମାନଙ୍କ ଭୟରୁ ମୁକ୍ତ କରିବା ଦରକାର। ଗାନ୍ଧୀ ଚାଷୀମାନଙ୍କର ଅଭିଯୋଗକୁ ଠିକ୍ ଭାବରେ ବୁଝିବା ପାଇଁ ସେମାନଙ୍କର କଥାକୁ ପ୍ରଥମେ ଲେଖାଇବାକୁ ଆରମ୍ଭ କଲେ। ତାଙ୍କୁ ହଜାର ହଜାର ଚାଷୀମାନଙ୍କୁ ଭେଟି ଶୁଣିବାର ଥିଲା। ଗାନ୍ଧୀ ଚମ୍ପାରଣରେ ପହଞ୍ଚିବାର ଖବର ଚାଷୀମାନେ ଆଗରୁ ପାଇସାରିଥିଲେ। ସେ ଯେତେବେଳେ ଚମ୍ପାରଣର ଗ୍ରାମମାନଙ୍କୁ ଯିବାକୁ ଲାଗିଲେ, ସେଠାରେ ଛୋଟ ଛୋଟ ଚାଳ ଘରେ ଥିବା ମହିଳା ଓ ପିଲାମାନଙ୍କର ଅବସ୍ଥା ପ୍ରତ୍ୟକ୍ଷ କଲେ, ସେତେବେଳେ ତାହାର କିପରି ଉନ୍ନତି ହୋଇପାରିବ ତାହା ତାଙ୍କ ଚିନ୍ତାର ବିଷୟ ହେଲା। ସ୍ଥାନୀୟ ଓକିଲମାନେ ଚାଷୀମାନଙ୍କର ଅଭିଯୋଗ ଲେଖିଲେ। ସେବାଗ୍ରାମରୁ କେତେକ କର୍ମୀ ଆସି ଗ୍ରାମ୍ୟ ପରିବେଶକୁ ସଜାଡ଼ିବା ପାଇଁ ସେ ଖବର ପଠାଇଲେ। ସେ ଚମ୍ପାରଣର ଗ୍ରାମକୁ, ଗ୍ରାମ ବୁଲି ଲୋକଙ୍କଠାରୁ ସେମାନଙ୍କର ସମସ୍ୟା ଶୁଣିବା ଓ ବୁଝିବାକୁ ଚେଷ୍ଟା କଲେ।

୧୬ ଏପ୍ରିଲ୍ ୧୯୧୭ ରେ ଗାନ୍ଧୀ ଜସୌଲୀ ପଟ୍ଟୀ ଗ୍ରାମରେ ପହଞ୍ଚିଲେ। ସେଠାରୁ ୯କିମି ଚାଲିବା ପରେ ସେ ଚନ୍ଦ୍ରାହିଆ ଗ୍ରାମରେ ପହଞ୍ଚିଲେ। ସେହି ଗ୍ରାମର ସବୁ ଲୋକ ଥିଲେ ଶ୍ରମିକ ଏବଂ ନିକଟସ୍ଥ ମୋତିହାରୀ ଫ୍ୟାକ୍ଟେରୀରେ କାମ କରୁଥିଲେ। ଗାଁରେ ଅଳ୍ପ କେତେକ ଲୋକ ଥିଲେ, ଅନ୍ୟ ସମସ୍ତେ ଫ୍ୟାକ୍ଟେରୀରେ କାମ କରିବାକୁ ଯାଇଥିଲେ। ସେହି ଗାଁରେ ଉପସ୍ଥିତ ଥିବା ଜଣେ ବ୍ୟକ୍ତି କହିଲା ଯେ ଜିଲ୍ଲାର କଲେକ୍ଟର ଫ୍ୟାକ୍ଟେରୀର ସାହେବ ଓ ମ୍ୟାନେଜରଙ୍କୁ କିଛି କହିବା ପାଇଁ ସାହସ ରଖୁନାହିଁ। ଏହି କଥାବାର୍ତ୍ତା ଚାଲିଥିବା ବେଳେ ଜଣେ ପୁଲିସ ସବଇନ୍‌ସପେକ୍ଟର ଆସି ଗାନ୍ଧୀଙ୍କୁ କହିଲା ଯେ ପୁଲିସ ସୁପରିଟେଣ୍ଡେଣ୍ଟ ଆପଣଙ୍କୁ ସଲାମ ପଠାଇଛନ୍ତି। ଗାନ୍ଧୀ ତା'ର କହିବା ଅର୍ଥ ବୁଝିଗଲେ। ସେ ତାଙ୍କ ସହିତ ଆସିଥିବା ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କୁ ଜସୌଲାପଟ୍ଟୀ ଯିବାକୁ ନିର୍ଦ୍ଦେଶ ଦେଇ ନିଜେ ପୁଲିସ ଅଧିକାରୀଙ୍କ ସହିତ ଚାଲିଲେ। କିଛି ବାଟ ଚାଲିବା ପରେ ସେହି ପୁଲିସ ଅଧିକାରୀ ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଗୋଟିଏ ନୋଟିସ୍ ତାଙ୍କ ହାତକୁ ବଢ଼ାଇଦେଲା। ଏହି ନୋଟିସ୍‌ରେ ତାଙ୍କୁ ତୁରନ୍ତ ଚମ୍ପାରଣ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା। ତାଙ୍କୁ ନୋଟିସ୍ ପ୍ରାପ୍ତିରେ ହସ୍ତାକ୍ଷର କରିବାକୁ କୁହାଯିବାରୁ ସେ ସେଥିରେ ଲେଖିଲେ ଯେ ସେ ସେହି ଆଦେଶ ମାନିବାକୁ ଅସ୍ୱୀକାର କରୁଛନ୍ତି ଏବଂ ଯେ ପର୍ଯ୍ୟନ୍ତ ତାଙ୍କର ତଦନ୍ତ ଶେଷ ନ ହୋଇଛି ସେପର୍ଯ୍ୟନ୍ତ ସେ ଚମ୍ପାରଣରେ ରହିବେ, ଏହା ତାଙ୍କର ସ୍ଥିର ସିଦ୍ଧାନ୍ତ।

ସେ ଏହାପରେ ପଣ୍ଡିତ ମଦନମୋହନ ମାଳବ୍ୟ, ମଜହରୁଲ ହକ ଓ ଅନ୍ୟ ଭାରତୀୟ ନେତାମାନଙ୍କୁ ଟେଲିଗ୍ରାମ ଦ୍ୱାରା ଚମ୍ପାରଣର ଅବସ୍ଥା ସଂପର୍କରେ ସୂଚନା ଦେଲେ ଏବଂ ସି.ଏଫ୍.ଆଣ୍ଡ୍ରୁଜଙ୍କୁ ଶୀଘ୍ର ଚମ୍ପାରଣ ପହଞ୍ଚିବାକୁ କହିଲେ। ଗାନ୍ଧୀ ରାତିସାରା ଉଜାଗର ରହି ଲୋକମାନଙ୍କୁ ଚିଠି ଲେଖିଲେ, ବ୍ରଜ କିଶୋର ପ୍ରସାଦଙ୍କୁ ସବୁ ପ୍ରକାର ନିର୍ଦ୍ଦେଶ ଦେଲେ ଏବଂ ତାଙ୍କୁ ଗିରଫ୍ କରାଗଲେ କ'ଣ କରିବାକୁ ହେବ, ତାହାର କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ। ୧୭ ଏପ୍ରିଲ ଦିନ ଚାଷୀମାନଙ୍କର ଅଭିଯୋଗ ଲେଖା ଆରମ୍ଭ ହେଲା। ତାଙ୍କର ନାମ ଓ ଠିକଣା ଏବଂ ଲିଖିତ ଓ ମୌଖିକ ଅଭିଯୋଗ ଲେଖା ଦିନସାରା କୌଣସି ବିଶ୍ରାମ ନ ଦେଇ କର୍ମକର୍ତ୍ତାମାନେ କରିବାରେ ଲାଗିଗଲେ। ଗାନ୍ଧୀଙ୍କୁ ଯେ କୌଣସି ସମୟରେ ଆରେଷ୍ଟ କରାଯାଇପାରେ। ସମଗ୍ର ଭାରତରୁ ଟେଲିଗ୍ରାମ ଆସିବାକୁ ଆରମ୍ଭ କଲା। ଗାନ୍ଧୀ ସମସ୍ତଙ୍କୁ

ଚମ୍ପାରଣ ଆସିବାକୁ ମନାକଲେ ଏବଂ କହିଲେ ଯେ ତାଙ୍କର ଆରେଷ୍ଟ ହେବାପରେ ଆନ୍ଦୋଳନ ଚଳାଇବା ପାଇଁ ସେମାନଙ୍କର ଆବଶ୍ୟକତା ରହିଛି। ଖବର କାଗଜମାନଙ୍କରେ ଚମ୍ପାରଣରେ ଘଟୁଥିବା ସଂବାଦ ପ୍ରକାଶିତ ହେବାରେ ଲାଗିଲା। ୧୭ଏପ୍ରିଲ ସଂଧ୍ୟା ସୁଦ୍ଧା ତାଙ୍କୁ ଆରେଷ୍ଟ ନ କରାଯିବାରୁ ସେ ୧୮ଏପ୍ରିଲ ସକାଳେ ତାଙ୍କର ସହଯୋଗୀମାନଙ୍କ ସହିତ ଶାମପୁର ଗ୍ରାମକୁ ଯିବା ସଂପର୍କରେ ଚିଠି ଲେଖି ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଜଣାଇଲେ। ସେ ତାଙ୍କର ଯିବାର ସମୟ ମଧ୍ୟ ସୂଚୀତ କଲେ। ଏହା ଥିଲା ତାଙ୍କର ସତ୍ୟାଗ୍ରହ କରିବାର କୌଶଳ। ସେ କୌଣସି କଥା ଗୁପ୍ତ ରଖୁ ନଥିଲେ। ଜିଲ୍ଲା ମାଜିଷ୍ଟ୍ରେଟ ତାଙ୍କୁ ଲେଖିଲେ ଯେ ଭାରତୀୟ ପେନାଲ କୋଡର ଧାରା ୧୮୮ ଅନୁସାରେ ତାଙ୍କ ଉପରେ ଅଭିଯୋଗ ହୋଇଛି, ତେଣୁ ସେ ମୋତିହାରୀରେ ରହିବେ ଓ ୧୮ ଏପ୍ରିଲ୍ ୧୨.୩୦ ସମୟରେ ସବ୍‌ଡିଭିଜନାଲ ଅଫିସର ସମ୍ମୁଖରେ ଉପସ୍ଥିତ ହେବେ। ଚାଷୀମାନେ ଏକଥା ଯେତେବେଳେ ଜାଣିଲେ, ତା' ପରଦିନ ସେମାନେ ବହୁ ସଂଖ୍ୟାରେ ଅଦାଲତରେ ଏକତ୍ରିତ ହେଲେ। ଗାନ୍ଧୀ ଚାହିଁଥିଲେ ଏହି ଆଦେଶକୁ ଅସ୍ୱୀକାର କରିପାରିଥାନ୍ତେ ମାତ୍ର ଚାଷୀମାନଙ୍କ ମଧ୍ୟରେ ଆସିଥିବା ଜାଗରଣରୁ ତାଙ୍କର ଅନୁଭବ ହେଲା ଯେ ଏହି ସମୟ ସେମାନଙ୍କ ମନ ମଧ୍ୟରେ ଥିବା ଭୟକୁ ଦୂର କରିବା ପାଇଁ ଉପଯୁକ୍ତ ସମୟ ହେବ। ସେଥିପାଇଁ ସେ ଅଦାଲତରେ ଉପସ୍ଥିତ ହେଲେ । ସେ ଏହା ମଧ୍ୟ ନିଶ୍ଚିତ କଲେ ଯେ, ସେ ଏହି ସଂଗ୍ରାମରେ କଂଗ୍ରେସର ସହଯୋଗ ନେବେ ନାହିଁ ଏବଂ କୃଷକମାନଙ୍କୁ ସଂଗଠିତ କରି ଏହି ସଂଗ୍ରାମକୁ ଶେଷ ପରିଣତିରେ ପହଞ୍ଚାଇବେ।

ସରକାର ଗାନ୍ଧୀଙ୍କୁ ଘେରିବାକୁ ଯୋଜନା କରିଥିଲେ କିନ୍ତୁ ପରିସ୍ଥିତି ଏପରି ହେଲା ଯେ ସରକାର ନିଜେ କାଠଗଡ଼ା ମଧ୍ୟରେ ଠିଆ ହୋଇଗଲେ।

ତା' ପର ଦିନ ୧୨ଟା ପର୍ଯ୍ୟନ୍ତ ଚାଷୀମାନଙ୍କର ଅଭିଯୋଗ ଲେଖା କାମ ଚାଲିଲା। ଗାନ୍ଧୀ ଯେତେବେଳେ ଅଦାଲତ ଯିବାକୁ ଆରମ୍ଭ କଲେ, ତାଙ୍କ ସହିତ ପ୍ରାୟ ୨ ହଜାର କୃଷକ ଯୋଗ ଦେଲେ। ଅଦାଲତରେ ୧୦ଟା ବେଳୁ ଚାଷୀ ମାନଙ୍କର ଭିଡଲାଗି ଥିଲା। ଗାନ୍ଧୀ ଗିରଫ୍ ହେବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ। ଯେତେବେଳେ ମକଦ୍ଦମା ଆରମ୍ଭ ହେଲା, ସରକାରୀ ଓକିଲ ବୁଝିପାରୁ ନଥିଲେ ଯେ ସେ କ'ଣ କରିବେ। ସେ ମକଦ୍ଦମାର କାର୍ଯ୍ୟକୁ ବନ୍ଦ ରଖିବା ପାଇଁ ମାଜିଷ୍ଟ୍ରେଟଙ୍କ ଉପରେ ଚାପ ପକାଇଲେ। ଏହା ଦେଖି ଗାନ୍ଧୀ କହିଲେ ଯେ ମକଦ୍ଦମାକୁ ସ୍ଥଗିତ ରଖିବାର କୌଣସି ଆବଶ୍ୟକତା ନାହିଁ କାରଣ ସେ ସରକାରଙ୍କର ଆଦେଶ ଉଲ୍ଲଂଘନ କରିବା ଅପରାଧକୁ ସ୍ୱୀକାର କରୁଛନ୍ତି। ତାଙ୍କୁ ଚମ୍ପାରଣ ଛାଡ଼ିବାକୁ ଆଦେଶ ଦିଆଯାଇଥିଲା। ସେ ସ୍ୱୀକାର କଲେ ଯେ ତାଙ୍କୁ ୧୪୪ ଧାରା ଅନୁସାରେ ଦିଆଯାଇଥିବା ନୋଟିସ୍‌ର ସେ ଅବହେଳା କରିଛନ୍ତି। ସେ ସରକାରଙ୍କର ଏହି ନୋଟିସ୍‌କୁ ଏଇଥିପାଇଁ ଅବହେଳା କରିଛନ୍ତି ଯେ ତାଙ୍କ ନିକଟରେ ଏହାଠାରୁ ବଡ଼ ଆଇନ୍ ଈଶ୍ୱରଙ୍କର ଆଇନ୍ ପାଳନ କରିବାକୁ ଅଛି। ଯେହେତୁ ସେ ଏହି ଆଇନ୍‌କୁ ଉଲ୍ଲଂଘନ କରିଛନ୍ତି, ତେଣୁ ସେ ନିଜକୁ ଦୋଷୀ ମାନୁଛନ୍ତି ଏବଂ ଅଦାଲତର ସମୟ ନଷ୍ଟ କରବାକୁ ଚାହୁଁନାହାନ୍ତି। ଅଦାଲତ ତାଙ୍କୁ ଯେଉଁ ଦଣ୍ଡ ଦେବେ ତାହାକୁ ସେ ସ୍ୱୀକାର କରିବେ।

ମାଜିଷ୍ଟ୍ରେଟ ତାଙ୍କୁ କହିଲେ ଯେ ଯଦି ସେ ଜିଲ୍ଲା ତ୍ୟାଗ କରି ଚାଲିଯିବାକୁ ସମ୍ମତ ହୁଅନ୍ତି ତେବେ ତାଙ୍କ ଉପରେ ଲାଗିଥିବା ଏହି ମକଦ୍ଦମାକୁ ଉଠାଇ ନିଆଯିବ। ଏହାର ଉତ୍ତରରେ ଗାନ୍ଧୀ କହିଲେ ଯେ ବର୍ତ୍ତମାନ ଏଠାରୁ ମୋର ଯିବାର କୌଣସି ଆଗ୍ରହ ନାହିଁ, ଏପରିକି ଜେଲରେ ସଜା କାଟି ସାରିବା ପରେ ମଧ୍ୟ ମୁଁ ଏଠାରେ ରହିବି ଯେ ପର୍ଯ୍ୟନ୍ତ ମୋର ଏଠାରୁ କାର୍ଯ୍ୟ ସରିନାହିଁ। ତାଙ୍କର ଏପରି ଉତ୍ତରରେ ମାଜିଷ୍ଟ୍ରେଟ ଓ ସରକାରୀ ଓକିଲ କ'ଣ କରିବେ ଏହା ନେଇ ଚିନ୍ତିତ ହୋଇପଡିଲେ। ଅଦାଲତ ବାହାରେ ଚାଷୀମାନଙ୍କର ଭିଡ଼ ବଢ଼ିବାରେ ଲାଗିଥିଲା। ମାଜିଷ୍ଟ୍ରେଟ ପ୍ରଥମେ ମକଦ୍ଦମାର ଶୁଣାଣିକୁ ଦ୍ୱିପହର ୩ଟା ପର୍ଯ୍ୟନ୍ତ ସ୍ଥଗିତ ରଖିଦେଲେ କିନ୍ତୁ ଶୁଣାଣି ଆରମ୍ଭ ହେବା ପରେ ଏହି ମକଦ୍ଦମାର ଫଇସଲା ୨୧ ଏପ୍ରିଲ୍ ପର୍ଯ୍ୟନ୍ତ ସ୍ଥଗିତ ରହିଲା ବୋଲି କହିଲେ। କିନ୍ତୁ ୧୦୦ଟଙ୍କା ମୁଚାଲିକାରେ ତାଙ୍କୁ ବେଲ ଦିଆଯିବ। ଗାନ୍ଧୀ ୧୦୦ଟଙ୍କା ଜମା କରିବାକୁ ମନା କରିଦେଲେ। ଏହା ଶୁଣି ମାଜିଷ୍ଟ୍ରେଟ କୌଣସି ବ୍ୟକ୍ତିର ଗ୍ୟାରେଣ୍ଟି ଦେବାକୁ ନିର୍ଦ୍ଦେଶ ଦେଲେ। ତାହା ମଧ୍ୟ ଗାନ୍ଧୀ ମନା

କରିଦେଲେ । ଏହା ଶୁଣି ମାଜିଷ୍ଟ୍ରେଟ ତାଙ୍କୁ ଛାଡ଼ିଦେଲେ ଏବଂ ୨୧ ଏପ୍ରିଲରେ ଅଦାଲତର ନିଷ୍ପତ୍ତି ଶୁଣାଇବେ ଓ ସେ ଦିନ ସେ ଉପସ୍ଥିତ ରହିବାକୁ କହିଲେ ।

ଏହା ଥିଲା ଗାନ୍ଧୀଙ୍କର ଚମ୍ପାରଣ ସତ୍ୟାଗ୍ରହର ପ୍ରଥମ ବିଜୟ ଏବଂ ଏହାର ପ୍ରଭାବ ଚାଷୀମାନଙ୍କ ଉପରେ ପଡ଼ିଲା । ଗାନ୍ଧୀ ସେମାନଙ୍କର ଅଭିଯୋଗ ଲେଖିବାର କାର୍ଯ୍ୟ ପୁଣି ଆରମ୍ଭ କରିଦେଲେ । ସକାଳ ୬.୩୦ ରୁ ଏହା ଆରମ୍ଭ ହୋଇ ସନ୍ଧ୍ୟା ୬.୩୦ ପର୍ଯ୍ୟନ୍ତ ଚାଲୁଥିଲା । ୨୦ ଏପ୍ରିଲ୍ ସନ୍ଧ୍ୟାରେ ମାଜିଷ୍ଟ୍ରେଟ ଖବର ପଠାଇଲେ ଯେ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ତାଙ୍କ ଉପରେ ଲଗାଯାଇଥିବା ମକଦ୍ଦମାକୁ ପ୍ରତ୍ୟାହାର କରିବା ପାଇଁ ଆଦେଶ ଦେଇଛନ୍ତି ଏବଂ କଲେକ୍ଟର କହିଛନ୍ତି ଯେ ସେ ତାଙ୍କର ଅନୁସନ୍ଧାନ କାର୍ଯ୍ୟ ବିନା କୌଣସି ପ୍ରତିବନ୍ଧକରେ ଜାରି ରଖିପାରିବେ । ଏହା ଥିଲା ଦେଶ ପାଇଁ ପ୍ରଥମ ଅସହଯୋଗ ଆନ୍ଦୋଳନ ।

୨୧ ଏପ୍ରିଲ ଦିନ ବହୁ ଦୂର ଗ୍ରାମମାନଙ୍କରୁ ଚାଷୀମାନେ ଆସିବାକୁ ଲାଗିଲେ କାରଣ ଅଦାଲତ ରାୟ ଦେବାର ଥିଲା । ସରକାର ମକଦ୍ଦମା ପ୍ରତ୍ୟାହାର କରିଥିବାର ଶୁଣି ସେମାନଙ୍କର ଖୁସି କହିଲେ ନ ସରେ । ୨୨ ଏପ୍ରିଲରେ ଗାନ୍ଧୀ ମୋତିହାରୀରୁ ବେତିୟା ଆସିଲେ । ସବୁଠାରେ ଚାଷୀମାନଙ୍କର ଭିଡ଼ ଓ ସେମାନଙ୍କର ଅଭିଯୋଗ ଲେଖା । ୨୭ ଏପ୍ରିଲ୍‌ରେ ସେ ରାଜକୁମାର ଶୁକ୍ଳାଙ୍କର ଘର ଦେଖିବାକୁ 'ମୁରଲୀ ଭରବା' ଗଲେ । କାରଣ ଗୋଟିଏ ମାସ ପୂର୍ବରୁ ଫ୍ୟାକ୍ଟରୀର ଗୁଣ୍ଡାମାନେ ତାଙ୍କ ଘରୁ ଲୁଟି ନେଇଥିଲେ । ସେ ଘରର ଅବସ୍ଥା ଦେଖି ତଟସ୍ଥ ହୋଇଗଲେ ।

ଗାନ୍ଧୀ ଚମ୍ପାରଣର ନୀଳଚାଷୀମାନଙ୍କ ଦୁର୍ଦ୍ଦଶା ସଂପର୍କିତ ତଦନ୍ତ ରିପୋର୍ଟ ସରକାରଙ୍କୁ ଦେଲେ । ୪ ଜୁନ୍‌ରେ ଗାନ୍ଧୀ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ ଗେଟ୍‌ଙ୍କୁ ସାକ୍ଷାତ କଲେ । ଏହି ସାକ୍ଷାତ୍ ଆଲୋଚନା ଦୀର୍ଘ ୬ଘଣ୍ଟା ଧରି ଚାଲିଲା । ସରକାର ଏହାକୁ ପୁଙ୍ଖାନୁପୁଙ୍ଖ ଯାଞ୍ଚ କରିବା ପାଇଁ ଗୋଟିଏ କମିଶନ ଗଠନ କଲେ । ପରିଶେଷରେ ନୀଳଚାଷ ସମ୍ବନ୍ଧୀୟ ତିନିକାଠିଆ ବ୍ୟବସ୍ଥା ସଂପୂର୍ଣ୍ଣ ବନ୍ଦ ହେଲା ।

**ଚମ୍ପାରଣ ସତ୍ୟାଗ୍ରହ ଏହି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଯେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏହା ଥିଲା ପ୍ରଥମ ସତ୍ୟାଗ୍ରହ ଯାହା ମୂଳରୁ ଶେଷ ପର୍ଯ୍ୟନ୍ତ ଅହିଂସା ମାଧ୍ୟମରେ ପରିଚାଳିତ ହୋଇଥିଲା ।** ଏହା ସାଧାରଣ ଲୋକମାନଙ୍କୁ କଂଗ୍ରେସର ଜାତୀୟ ରାଜନୀତି ସହିତ ସଂଶ୍ଳିଷ୍ଟ କଲା । ଅହିଂସାର ଏହି ପ୍ରୟୋଗକୁ ରାଷ୍ଟ୍ରୀୟ ସ୍ତରରେ ସ୍ୱୀକୃତି କରାଗଲା । ଗାନ୍ଧୀଙ୍କ ନେତୃତ୍ୱ ପ୍ରତି ଦେଶବାସୀଙ୍କର ଆସ୍ଥା ସ୍ଥାପିତ ହେଲା । ଦେଶର ସାଧାରଣ ଜନତା ବ୍ରିଟିଶ ଶାସନରୁ ଭୟମୁକ୍ତ ହୋଇ ସ୍ୱାଧୀନତାର ସ୍ୱପ୍ନ ଦେଖିଲେ । ସମଗ୍ର ଦେଶର କୃଷକମାନଙ୍କର ଭରସା କଂଗ୍ରେସ ପାଲଟିଗଲା । ଦେଶର ରାଜନୀତି ଓ ଏହାର କାର୍ଯ୍ୟ କରିବାର ଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ ହେଲା ।

ଗାନ୍ଧୀ ସତ୍ୟାଗ୍ରହ ଆନ୍ଦୋଳନ ମାଧ୍ୟମରେ ଚାଷୀମାନଙ୍କୁ ନ୍ୟାୟ ଦେବାକୁ ସକ୍ଷମ ହେବା ସହିତ ସେମାନଙ୍କୁ ଶିକ୍ଷିତ କରି ସ୍ଥାୟୀ ପରିବର୍ତ୍ତନର ମଞ୍ଜି ରୋପିତ କଲେ । ଏହି ଚମ୍ପାରଣ ଆନ୍ଦୋଳନ ଗାନ୍ଧୀଙ୍କର ମନ ଓ ହୃଦୟ ମଧ୍ୟରେ ପ୍ରବେଶ କରି ଯେପରି ଯାତ୍ରା କଲା ତାହା ଥିଲା ଅଦ୍‌ଭୁତ ଏବଂ ଫୁଲର ପାଖୁଡ଼ା ପରି ଗୋଟିକ ପରେ ଗୋଟିଏ ପ୍ରସ୍ଫୁଟିତ ହୋଇଯାଇଥିଲା ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫



# ରାମଦୋଳି ପରବ

ଡକ୍ଟର ପ୍ରମୋଦିନି ହୋତା

ସୌନ୍ଦର୍ଯ୍ୟର ଗନ୍ତାଘର କୋରାପୁଟ ଯେଉଁଠି ଦିନେ ମହାକବି କାଳିଦାସ 'ମେଘଦୂତ' ରଚନା କରିଥିଲେ। ରାମାୟଣରେ ବର୍ଣ୍ଣିତ ରାମଗିରି, ଦଣ୍ଡକାରଣ୍ୟ, ପଞ୍ଚବଟୀ, ମାଲ୍ୟବନ୍ତ, ଚିତ୍ରକୁଟ, ସୀତାକୁଣ୍ଡ–ବାଲ୍ମୀକି ଏଠାରେ ରହିଥିବା ଆଶ୍ରମରେ ବସି ରଚନା କରିଥିଲେ ବୋଲି ଜନରବ ରହିଛି। ଏଠାରେ ରହିଥିବା ବାଲ୍ମିକୀ ଆଶ୍ରମ କୋରାପୁଟ ଜିଲ୍ଲାର ନନ୍ଦପୁର ବ୍ଲକର ପାନ୍ତଲୁଙ୍ଗ ଗ୍ରାମ ନିକଟରେ ରହିଛି। ଏଠାରେ ରହିଥିବା ଅଣ୍ଡର ଗୁଡ଼ା ଗ୍ରାମ ନିକଟରେ ମାଛକୁଣ୍ଡ ନଦୀ ପ୍ରବାହିତ। ଏଠାରେ ଥିବା ଦୁଇଟି ପାହାଡ଼, ଡାକୋକୋଣ୍ଡା ପାହାଡ଼ ଏବଂ କପାଟ ପାହାଡ଼ର ମାଛକୁଣ୍ଡ ନଦୀ ଅବବାହିକା ନିକଟରେ ଏହି ଗ୍ରାମ ଅବସ୍ଥିତ। ଏହି ଦୁଇଟି ପାହାଡ଼ ମଧ୍ୟରେ ମୁକ୍ତି ଆମ୍ବ ଗ୍ରାମ ରହିଅଛି। କପାଟ ପାହାଡ଼ରେ ରହିଛି ଏକ ବିଶାଳ ଗୁମ୍ଫା। ଏହାକୁ ରାଜଗୁମ୍ଫା ବା ବାଲ୍ମିକୀ ଆଶ୍ରମ ନାମରେ ନାମକରଣ କରାଯାଇଛି। ଏହି ରାଜଗୁମ୍ଫା ତିନି ମହଲା ବିଶିଷ୍ଟ । ପ୍ରତିଟି ମହଲାରେ ରହିଛି ଦେବାଦେବୀ, ମୁନିଋଷି ପ୍ରତିମୂର୍ତ୍ତି। ରାଜଗୁମ୍ଫାର ମଧ୍ୟ ଭାଗରେ ରହିଛି ବିଶାଳ ଖାଲି ସ୍ଥାନ। ସେଠାରେ ପାଣିକୁଣ୍ଡ, ଯଜ୍ଞ କୁଣ୍ଡ ନିକଟରେ ବସି ବାଲ୍ମିକୀ ଯଜ୍ଞ କରୁଥିଲେ ଏବଂ ଏଠାରେ ଚାରି ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ବସି ଯଜ୍ଞ କରୁଥିବା ଜନଶ୍ରୁତି ରହିଛି।



ଗୁମ୍ଫା ନିକଟବର୍ତ୍ତୀ ଗ୍ରାମକୁ ମୁକ୍ତି ଆମ୍ବ ଗ୍ରାମ ନାମରେ ବାଲ୍ମିକୀ ନାମିତ କରିଥିଲେ ବୋଲି ସେଠାରେ ଥିବା ଗ୍ରାମବାସୀ କହିଥାନ୍ତି। ଏଠାରେ ରହିଥିବା ଲୋକଙ୍କୁ ବାଲ୍ମିକୀ କୁହାଯାଏ।

ଦିନେ ଶ୍ରବଣ କୁମାର ମଧ୍ୟ ନିଜ ପିତାମାତାଙ୍କ ସହିତ ଆସି ଏହି ଗୁମ୍ଫାରେ ବାସ କରୁଥିଲେ ବୋଲି ଜନରବ ରହିଛି। ବାଲ୍ମିକୀ କୁମାର ପୂର୍ଣ୍ଣିମା ଦିନ ଜନ୍ମ ହୋଇଥିଲେ। ଏଠାରେ ବାସ କରୁଥିବା ବାଲ୍ମିକୀ ସଂପ୍ରଦାୟ ଗ୍ରାମବାସୀ କୁମାର ପୂର୍ଣ୍ଣିମାକୁ ବାଲ୍ମିକୀଙ୍କ ଜନ୍ମଦିନ ଭାବି ଜାକଜମକରେ ପର୍ବ ପାଳନ କରିଥାନ୍ତି। ପୂଜାର୍ଚ୍ଚନା କରି ବାଲ୍ମିକୀଙ୍କୁ ସ୍ମରଣ କରିଥାନ୍ତି । ରାମାୟଣରେ ବର୍ଣ୍ଣିତ ଅଛି ରାମଚନ୍ଦ୍ର ଚଉଦବର୍ଷ ବନବାସ କରିଥିଲେ। ରାମଚନ୍ଦ୍ର ବିଭିନ୍ନ ସ୍ଥାନ ବୁଲି ଦଣ୍ଡକାରଣ୍ୟରେ ପହଞ୍ଚିଥିଲେ। ଦଣ୍ଡକାରଣ୍ୟରେ ଭ୍ରମଣ କରିବା ସମୟରେ ସୀତାଙ୍କୁ ଭାରୀ ଶୋଷ ହେଲା। ପାଖରେ ଜଳାଶୟ ନପାଇ ସୀତାଙ୍କ ଶୋଷ ମେଣ୍ଟାଇବା ପାଇଁ ରାମଚନ୍ଦ୍ର ଏହି ସ୍ଥାନରେ ଶର ନିକ୍ଷେପ କରି ଗୋଟିଏ ଜଳକୁଣ୍ଡ ସୃଷ୍ଟି କଲେ। ସେହି ଜଳକୁଣ୍ଡକୁ ପୂର୍ଣ୍ଣାପାଣି କୁହାଯାଏ। ଏହି କୁଣ୍ଡର ପାଣି ନିର୍ମଳ

ଏବଂ ଏହା ଗଙ୍ଗାଜଳ ଭଳି ପବିତ୍ର । ସେହି ଜଳକୁଣ୍ଡର ପାଣି ପିଇ ସୀତା ଶୋଷ ମେଣ୍ଟାଇଥିଲେ । ରାମଚନ୍ଦ୍ର ଏଠାରେ ଏକବର୍ଷ ବନବାସରେ ରହିଥିଲେ ବୋଲି ଲୋକଙ୍କ ବିଶ୍ୱାସ ରହିଛି । ଏହି ଗ୍ରାମରେ ବିବାହ ଉତ୍ସବରେ ଆମ୍ବଗଛ ବରକନ୍ୟାଙ୍କ ଦ୍ୱାରା ରୋପଣ କରାଯାଏ । ରୋପଣ ସମୟରେ ବରକନ୍ୟା ଦୁହେଁ ବୈବାହିକ ଜୀବନ ସୁଖରେ ଜୀବନଯାପନ କରିବା ପାଇଁ ଗଛ ନିକଟରେ ପ୍ରତିଜ୍ଞା କରିଥାନ୍ତି । ବରଯାତ୍ରୀ ଏବଂ କନ୍ୟାଯାତ୍ରୀ ସେମାନଙ୍କ ନିକଟରେ ରହି ଆଶୀର୍ବାଦ ପ୍ରଦାନ କରିଥାନ୍ତି । ତେଣୁ ଏଠାରେ ପରିବାରରେ କୌଣସି ଗଣ୍ଡଗୋଳ ହୁଏ ନାହିଁ । ଘରର ସମସ୍ତେ ପ୍ରତିଜ୍ଞାକୁ ଅକ୍ଷରେ ଅକ୍ଷରେ ପାଳନ କରିଥାନ୍ତି । ତେଣୁ ଏଠାରେ ଅନେକ ଆମ୍ବଗଛ ରହିଛି । ତେଣୁ ଏହି ଗ୍ରାମର ନାମ ମୁକ୍ତି ଆମ୍ବରେ ନାମିତ ହୋଇଛି । ଯେଉଁମାନେ ପୂଜାରୀ ସେମାନଙ୍କୁ ପୂର୍ଯାକାରୀ ବା ଦିଶାରୀ କୁହାଯାଏ । ଏଠାରେ ରହିଥିବା ପୁରୁଣା କାଳିଆ ଲୋକମାନେ ତାଳପତ୍ରରେ ଲେଖାଥିବା ଲେଖାକୁ ଏକ ପ୍ରକାର ମନ୍ତ୍ର ଉଚ୍ଚାରଣ କରି ମନ୍ତ୍ର ବୋଲିଥାନ୍ତି । ଗର୍ଭାବସ୍ଥାରେ ସ୍ତ୍ରୀମାନଙ୍କୁ ବିଭିନ୍ନ ଆତ୍ମାର ଭୟରେ ସନ୍ଧ୍ୟାରେ ବାହାରକୁ ଛାଡ଼ନ୍ତି ନାହିଁ । ଛୁଆ ଜନ୍ମ ହେବାର ନବମ ଦିନରେ ଛୁଆର ନାମକରଣ କରାଯାଏ । ଏହାକୁ ଗେଡ଼ି ଚାଡ଼ଅକା କୁହାଯାଏ । ବାଲ୍ମିକୀ ସଂପ୍ରଦାୟ ପମ୍ପାସରୋବରକୁ ପାମ୍ପାଗାବତୁ କହିଥାନ୍ତି ।

ଆଜିକାଲି ବାଲ୍ମିକୀ ସଂପ୍ରଦାୟର ଲୋକମାନେ ଏହି ଜଳକୁ ଗଙ୍ଗାଜଳ ରୂପରେ ବିଭିନ୍ନ ଶୁଭକାର୍ଯ୍ୟରେ ବ୍ୟବହାର କରିଥାନ୍ତି । ବାଲ୍ମିକୀ ବାସ କରିବା ପୂର୍ବରୁ ଏଠାରେ ଲୋକଙ୍କୁ ଉଞ୍ଜାରୀ, ବଙ୍ଗପାଳ, ବାୟାକୁଳ ନାମରେ ଡକା ଯାଉଥିଲା । ବାଲ୍ମିକୀ ଏଠାରେ ବାସ କରିବା ଦିନଠାରୁ ଏମାନଙ୍କୁ ବାଲ୍ମିକୀ ସଂପ୍ରଦାୟ କୁହାଯାଉଛି । ଏହି ସଂପ୍ରଦାୟର ଲୋକମାନେ ଋଷିମାନଙ୍କ ଭଳି ଧଳା କିମ୍ବା ଗେରୁଆ ପୋଷାକ ପରିଧାନ କରିଥାନ୍ତି । ଏମାନଙ୍କ ଭାଷାରେ ସଂସ୍କୃତ ଭାଷାର ଶବ୍ଦ ବ୍ୟବହାର କରାଯାଏ ଯଥା – ତ୍ୱ ପଠସି – ତ୍ୱଂ ପାଠମ୍ କେରି ତାସୁ । ଏମାନେ ଗୁରୁମାଇଁ ସଂସ୍କୃତି ଆତ୍ମାର ଘଟ ପରିବର୍ତ୍ତନରେ ବିଶ୍ୱାସ କରିଥାନ୍ତି । ବାଲ୍ମିକୀ ସଂପ୍ରଦାୟ ସରଳ, ନିଷ୍କପଟ, ଧର୍ମଭୀରୁ ଅଟନ୍ତି । ବାଲ୍ମିକୀ ଉଇହୁଙ୍କାରୁ ବାହାରି ଥିଲେ । ଦସ୍ୟୁ ରତ୍ନାକରରୁ ବାଲ୍ମିକୀ ଋଷିରେ ପରିଣତ ହୋଇଥିଲେ ଭାବି ଏମାନେ ଉଇହୁଙ୍କାକୁ ପୂଜା କରିଥାନ୍ତି । ରାମଚନ୍ଦ୍ର, ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନଙ୍କୁ ଏମାନେ ପୂଜା କରିଥାନ୍ତି । ରାମଚନ୍ଦ୍ରଙ୍କ ପାଇଁ ଏଠାରେ ପ୍ରତି ବାରବର୍ଷକୁ ଥରେ ରାମଦୋଳି ପରବ ପାଳନ କରାଯାଏ । ରାମଚନ୍ଦ୍ର ୧୨ ବର୍ଷ ପରେ ବନବାସରେ ଏଠାରେ ରହିଥିଲେ । ଏହି ଗାଁରେ ବିବାହ ଉତ୍ସବରେ ଆମ୍ବପତ୍ର ବ୍ୟବହାର କରାଯାଏ । ମୁକ୍ତିଆମ୍ବ ଗାଁକୁ ଯିବା ପାଇଁ ରାସ୍ତା ଭଲ ନାହିଁ । ଦୁଇଟି ପାହାଡ଼ର ମଧ୍ୟ ଭାଗରେ ରହିଥିବା ଯୋଗୁଁ ଦୁର୍ଗମ ପଥ ଅତିକ୍ରମ କରି ଯିବାକୁ ପଡ଼ିଥାଏ । ଏହି ଅଂଚଳର ଭାଷା ହେଉଛି ସଂସ୍କୃତ ଭାଷା । ରାମଚନ୍ଦ୍ରଙ୍କୁ ପୂଜା କରିବା ଏବଂ ଏଠାକୁ ରାମଚନ୍ଦ୍ରଙ୍କ ଆଗମନର ସ୍ମୃତିଚାରଣ ସ୍ୱରୂପ ମୁକ୍ତି ଆମ୍ବ ଗାଁ ନିକଟରେ ରହିଥିବା ଅଣ୍ଡରଗୁଡ଼ା ଗ୍ରାମରେ ପ୍ରତି ବାରବର୍ଷରେ ଥରେ ରାମଦୋଳି ପର୍ବ ପାଳନ କରାଯାଏ । ବାରବର୍ଷ ପୂର୍ବରୁ ଏହି ପର୍ବର ଶୁଭାରମ୍ଭ କରାଯାଏ । ଗାଁର ମୁଖିଆଙ୍କୁ ସ୍ୱପ୍ନାଦେଶ ହୁଏ । ସ୍ୱପ୍ନାଦେଶ ଅନୁଯାୟୀ ମୁଖିଆ ଦୁଇଟି ଆମ୍ବଗଛକୁ ପ୍ରଥମେ ଚିହ୍ନଟ କରିଥାନ୍ତି । ସେହି ଆମ୍ବ ଗଛରେ ପାରମ୍ପରିକ ପୂଜାର୍ଚ୍ଚନା ପୂର୍ବକ ନଡ଼ିଆ, କଦଳୀ, ଧୂପଦୀପ, ଫୁଲ ଚନ୍ଦନ ଦ୍ୱାରା ଆବାହନ କରାଯାଏ । ଗାଁର ମୁଖିଆ ଦୁଇଟି ଆମ୍ବ ଗଛରେ ସୂତା ଗୁଡ଼ାଇ ଦିଅନ୍ତି । ଗାଁର କୌଣସି ବ୍ୟକ୍ତି ସେହି ଦୁଇଟି ଆମ୍ବ ଗଛକୁ କାଟନ୍ତି ନାହିଁ କି ପତ୍ର ମଧ୍ୟ ଛିଣ୍ଡାନ୍ତି ନାହିଁ । ପ୍ରତିଦିନ ସେଠାରେ ପୂଜାର୍ଚ୍ଚନା କରାଯାଏ ।

ରାମଦୋଳି ପରବ ପ୍ରତି ବାରବର୍ଷରେ ଥରେ ଅକ୍ଷୟ ତୃତୀୟା ଦିନ ପାଳନ କରାଯାଏ ଏବଂ ଏଠାରେ ବିରାଟ ମେଳା ହୁଏ । ବାରବର୍ଷ ପୂରିବାର ପାଞ୍ଚଦିନ ପୂର୍ବରୁ ମୁଖିଆଙ୍କ ସ୍ୱପ୍ନାଦେଶ ଅନୁଯାୟୀ ଗାଁରେ ୧୨ ବର୍ଷ ଠାରୁ ୧୪ ବର୍ଷ ମଧ୍ୟରେ ଚାରିଜଣ ପିଲାଙ୍କୁ ନେଇ ଗାଁ ମୁଣ୍ଡରେ ରହିଥିବା ନିଛାଟିଆ ସ୍ଥାନରେ ଜଙ୍ଗଲରେ ଛାଡ଼ି ଦିଆଯାଏ । ସେମାନେ ଜଙ୍ଗଲରେ ବୁଲି ଏହି ପାଞ୍ଚଦିନ ଫଳମୂଳ ଖାଇ ବନବାସୀ ଜୀବନ ବିତାଇଥାନ୍ତି । ସେହି ପିଲାମାନଙ୍କର କେହି ଗ୍ରାମବାସୀ ଖୋଜ ଖବର ରଖନ୍ତି ନାହିଁ, ଦେଖା କରନ୍ତି ନାହିଁ । ଗ୍ରାମବାସୀ ଭାବନ୍ତି ସେମାନଙ୍କୁ ଦେଖାକଲେ ଗାଁର ଅଶୁଭ ହେବ । ସେମାନେ ସେହି ପାଞ୍ଚଦିନ ଅସ୍ପୃଶ୍ୟ ବୋଲି ଧରାଯାଏ । ପାଞ୍ଚଦିନ ବନବାସ ଜୀବନ ଚାରିଜଣ ପିଲା ବିତାଇଲା ପରେ ସେମାନଙ୍କୁ ଗାଁ ମୁଣ୍ଡରେ ବରଗଛ ମୂଳରୁ ପୂଜାର୍ଚ୍ଚନା କରି ପଟୁଆର ସହିତ ଲୋକମାନେ ଗ୍ରାମ ଭିତରକୁ

ପାଛୋଟି ଆଣିଥାନ୍ତି । ତା'ପର ଦିନ ଆମ୍ବଗଛ କଟାଯାଇ ଦୋଳି ତିଆରି କରାଯାଏ । ପୂଜାର୍ଚ୍ଚନା କରାଯିବା ପରେ ପିଲା ଚାରିଜଣଙ୍କୁ ପ୍ରଥମେ ସେହି ଦୋଳିରେ ବସିବାକୁ ଦିଆଯାଏ । ପିଲାମାନଙ୍କୁ ପୂଜା କରାଯାଏ । ସେମାନଙ୍କ ପାଦ ଧୋଇବା ପରେ ପିଲାମାନେ ଦୋଳିରେ ବସି ଦୋଳି ଖେଳିଥାନ୍ତି । ସେମାନଙ୍କୁ ସେହି ସମୟରେ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଭାବେ ଗାଁ ଲୋକେ ପୂଜା କରିଥାନ୍ତି । ତା'ପରେ ରାମଦୋଳି ପର୍ବ ଆରମ୍ଭ ହୋଇଥାଏ । ଚାରିଜଣ ପିଲା ଦୋଳି ଖେଳି ତଳକୁ ଓହ୍ଲାଇଲା ପରେ ଗାଁର ୧୨ ବର୍ଷ ଠାରୁ ୧୪ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ପିଲା ଏହି ଦୋଳି ଖେଳନ୍ତି । ଏହି ଦୋଳି ଖେଳକୁ ରାମଦୋଳି ପର୍ବ କୁହାଯାଏ । ଏହି ପର୍ବ ବହୁତ ଧୁମ୍‌ଧାମ୍‌ରେ ପାଳନ କରାଯାଏ । ଏହି ପର୍ବ ଦେଖିବାକୁ ଓଡ଼ିଶା ତଥା ଆନ୍ଧ୍ରପ୍ରଦେଶର ଅନେକ ଲୋକ ଆସିଥାନ୍ତି । ଦୁର୍ଗମ ପଥ, ପାହାଡ଼ିଆ ଅଞ୍ଚଳ ହୋଇଥିବା ସତ୍ତ୍ୱେ ଏଠାରେ ବିରାଟ ମେଳା ବସେ । ମୁକ୍ତିଆମ୍ବଠାରେ ଜନ ସମାବେଶ ସହିତ ପ୍ରବଳ ଭିଡ଼ ହୁଏ । ବାଲ୍ମିକୀ ସଂପ୍ରଦାୟର ରାମଦୋଳି ପର୍ବ ଯେ ସେମାନଙ୍କ ମଧ୍ୟରେ ସୀମିତ ହୋଇରହିଛି ତାହା ନୁହେଁ ବରଂ ଏହା ସମୁଦାୟ ଆନ୍ଧ୍ର ଓ ଓଡ଼ିଶାର ପର୍ବ କହିଲେ ଅତ୍ୟୁକ୍ତି ହେବନାହିଁ । ଆଜିକାଲି ଅଣ୍ଡରଗୁଡ଼ା ଗ୍ରାମବାସୀ ରାମଦୋଳି ପରବ ସଂଘ ତିଆରି କରି ଏହି ପର୍ବ ଯେମିତି ଶୃଙ୍ଖଳିତ ହେବ ସେଥିପାଇଁ ସଭା କରୁଛନ୍ତି ଏବଂ ଏହି ପର୍ବ ଅତି ଆଡମ୍ବର ସହକାରେ ପାଳିତ ହୋଇଆସୁଛି ।

ପାଇଲ ସାହି, ଜୟପୁର
କୋରାପୁଟ

# ପ୍ରଥମ ମହାବିଦ୍ୟା ମା' କାଳୀ

**ସରୋଜ ରଞ୍ଜନ ପଟ୍ଟନାୟକ**

ସୂରୁଜ ବୁଡିଲେ ଦିନ ସରିଯାଏ
ଆକାଶେ ଦିଶନ୍ତି ତାରା
ଅନ୍ୟାୟ ଅନୀତି ଅଜ୍ଞାନ ଅନ୍ଧାର
ହଟି ଯାଉ ଏହି ଧରା ।

ମା' କାଳୀଙ୍କର ମର୍ତ୍ତ୍ୟ ଆଗମନେ
ଦୁଷ୍ଟ ଶକ୍ତି ଯାଏ ଲୋପ
ବରଷକେ ଥରେ ଆସେ ଦୀପାବଳି
ଧରି ଆନନ୍ଦ ସନ୍ଦେଶ ।

ଆଲୋକ ମାଳାରେ ପରିସ୍ଫୁଟ ହୁଏ
ମର୍ତ୍ତ୍ୟ ଭୁବନ ମଣ୍ଡଳ
ଅସତ୍ୟ ଉପରେ ସତ୍ୟର ବିଜୟ
ସଦା ହୋଇଯାଏ ଜୟ ।

ଜାତି ଧର୍ମ ନାମେ କୁସଂସ୍କାର ସବୁ
ଅନ୍ଧାର ରହିଛି ଭରି
ମା'କାଳୀଙ୍କର ଆଗମନ ଦେଖି
ଅନ୍ଧାର ଯାଏ ବାହୁଡି ।

ଘର ନଂ–୨ ଆର ଏଫ୍– ୪/୧
କୋ ଅପରେଟିଭ୍ ହାଉସିଂ କଲୋନୀ
ୟୁନିଟ୍–୩, ଖାରବେଳ ନଗର, ଭୁବନେଶ୍ୱର–୧

# ପର୍ଯ୍ୟଟନ ପୀଠ କେଦାରନାଥ

**କୁଞ୍ଜ ବିହାରୀ ସାହୁ**

ବରଗଡ଼ ଜିଲ୍ଲା ଐତିହ୍ୟର ଗନ୍ତାଘର । ପ୍ରାଣ-ପ୍ରାଚୁର୍ଯ୍ୟ ଭରା ପ୍ରାକୃତିକ ପରିବେଶ । ସବୁଜ ଅରଣ୍ୟ ପରିବେଷ୍ଟିତ ଉତ୍ତୁଙ୍ଗ ପାହାଡ଼-ପର୍ବତ, ନଦୀ-ନାଳ, ଗିରି ଗହ୍ୱର । ମାଇଲ ମାଇଲ ବ୍ୟାପୀ ଲମ୍ବିଛି ଶସ୍ୟ ଶାମଳା । ଘଞ୍ଚ ଅରଣ୍ୟାନୀରେ ଆଚ୍ଛାଦିତ ହୋଇ ଏହା ପ୍ରାଚୀନ ଐତିହ୍ୟ ଓ ପରମ୍ପରାକୁ ସମୁଜ୍ଜ୍ୱଳ କରିପାରିଛି । ଭାଷା ସଂସ୍କୃତି, ଚାଲିଚଳନ ଖୁବ୍ ପାଖାପାଖି ଏବଂ ଆପଣାର ଆପଣାର ଲାଗେ । ଆଧ୍ୟାତ୍ମିକ ଚେତନାରେ ନିମଜ୍ଜିତ ଏଠାକାର ଅଧିବାସୀ । ପଥପାର୍ଶ୍ୱର ବୃକ୍ଷ ମୂଳରେ ଅବା ପ୍ରସ୍ତର ଖମ୍ବରେ ଉଭା ହୋଇଥିବା ଦେବା-ଦେବୀ ବିଭିନ୍ନ ନାମରେ ନାମିତ । ସ୍ଥାନେ ସ୍ଥାନେ ଛୋଟ-ବଡ଼ ମନ୍ଦିରରେ ଗ୍ରାମ ଦେବୀ ପୂଜା ପାଇବା ସହ ଅନେକ କିମ୍ବଦନ୍ତୀ ପୂର୍ଣ୍ଣ ମନ୍ଦିର ପ୍ରତ୍ୟକ୍ଷ ଦେବା-ଦେବୀ ଭାବେ ଶ୍ରଦ୍ଧାଳୁ ଭକ୍ତଙ୍କ ମନ-ହୃଦୟକୁ ଭକ୍ତିରେ ରସାଣିତ କରିପାରିଛି । ଅନେକ ମନ୍ଦିର କେଉଁ ରାଜା ରାଜୁଡ଼ା ଶାସନରୁ ନିର୍ମିତ ହୋଇ ସେଥିରେ ଦେବା-ଦେବୀ ପୂଜା ପାଇଆସୁଛନ୍ତି, ଆଧ୍ୟାତ୍ମିକତାର ସ୍ୱର ବହନ କରି ଏବଂ ସମସ୍ତଙ୍କର ଶାନ୍ତି ଓ ସୁରକ୍ଷା ପ୍ରଦାନ ଲାଗି ।



ବରଗଡ ସଦର ମହକୁମାଠାରୁ ପ୍ରାୟ ୪୦ କି.ମି. ଦୂରରେ ଅମ୍ବାଭୋନା ଗାଁ ରେ ଆଲୋଚ୍ୟ ଶୈବପୀଠ ଶ୍ରୀ ଶ୍ରୀ ବାବା କେଦାରନାଥ ପୂଜା ପାଉଛନ୍ତି । ଗମନାଗମନର ସୁବିଧା ହେତୁ ବିଭିନ୍ନ ସମୟରେ ଶ୍ରଦ୍ଧାଳୁ ଭକ୍ତ ତଥା ଯାତ୍ରୀମାନେ ଏହି ଶୈବ ପୀଠକୁ ଆସନ୍ତି ଏବଂ ସୁନ୍ଦର ପରିବେଶକୁ ଉପଭୋଗ କରିବା ସହ ଭକ୍ତି-ପୂତ ଭାବେ ବାବାଙ୍କୁ ଦର୍ଶନ କରିଥାନ୍ତି । ରାସ୍ତାକଡ଼ରେ ଶାଳ, ଶାଗୁଆନ, ମହୁଲ ଗଛ ପରି ଜଙ୍ଗଲିଆ ଗଛଗୁଡ଼ିକ ଯାତ୍ରୀମାନଙ୍କୁ ଆକୃଷ୍ଟ କରିପାରୁଛି । ବରଗଡ଼ରୁ ସମରଧରା ଗାଁ ଛକରୁ ବାମ ପଟେ ପ୍ରାୟ ୫ କି.ମି. ଅତିକ୍ରମ କଲା ପରେ ଅମ୍ବାଭୋନା ଗାଁ ପଡ଼େ । ସେଇଠି ଶ୍ରୀ ଶ୍ରୀ କେଦାରନାଥ ମନ୍ଦିର ଦୃଶ୍ୟମାନ ହୁଏ । ମନ୍ଦିରର ଉଚ୍ଚତା ପ୍ରାୟ ୨୨ ଫୁଟ ହେଲେ ହେଁ ଏହାର କଳାତ୍ମକ ଶୈଳୀ ଏବଂ ପ୍ରତିଛବି ତଥା ପାରିପାର୍ଶ୍ୱିକ ଅବସ୍ଥିତି ରମଣୀୟ ଏବଂ ଭକ୍ତିର ମହାର୍ଘ ବୋଲି ଅନୁମେୟ କରିହୁଏ । ଛତିଶଗଡ଼ ରାଜ୍ୟର ସୀମାରେଖାଠାରୁ ମାତ୍ର ୧୦ କି.ମି. ଦୂରରେ ଏହି ମନ୍ଦିରଟି ନିର୍ମାଣ କରାଯାଇଛି । କେବଳ ଚାକ୍ଷୁଷ ପ୍ରମାଣ ହିଁ

ସାର ହୋଇଥାଏ । ପୌରାଣିକ ଆଖ୍ୟାନରୁ ଜଣାପଡ଼େ ଯେ ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ବନବାସ କାଳରେ ସ୍ନାନ ପରେ ଶିବାଭିଷେକ ଏବଂ ପୂଜା କରୁଥିଲେ । ଏହି ସମୟରେ ଲକ୍ଷ୍ମଣ ତିନୋଟି ତୀର ଭୂଗର୍ଭକୁ କ୍ଷେପଣ କରି ଗଙ୍ଗା, ଯମୁନା ଓ ସରସ୍ୱତୀ ଆବିର୍ଭାବ କରିଥିଲେ । ସେହି ଜଳରେ ସ୍ନାନ କରି ଏକ ବାଲୁକା ଲିଙ୍ଗ ସ୍ଥାପନା କରି ପୂଜାର୍ଚ୍ଚନା କରିଥିଲେ । ଦ୍ୱାପର ଯୁଗ ଆରମ୍ଭ ହୁଅନ୍ତେ ବାଲୁକା ଲିଙ୍ଗଟି ଧୀରେ ଧୀରେ ପ୍ରସ୍ତର ଲିଙ୍ଗ ରୂପ ଧାରଣ କଲା ।

ଭିନ୍ନ ଭିନ୍ନ ପୁସ୍ତକ ପୁସ୍ତିକାରେ ଭିନ୍ନ ଭିନ୍ନ ରାଜାମାନଙ୍କୁ କେଦାରନାଥ ମନ୍ଦିରର ପ୍ରତିଷ୍ଠାତା ଭାବେ ବର୍ଣ୍ଣନା କରାଯାଇଥିବାରୁ ମନ୍ଦିରର ପ୍ରତିଷ୍ଠା ଗବେଷଣା ସାପେକ୍ଷ । କେତେକ ଗବେଷଣାରୁ ଉପଲବ୍ଧ ଯେ ମନ୍ଦିରଟି ଏକ ଗଡ଼ ମଧ୍ୟରେ ଥିଲା । ସାମ୍ପ୍ରତିକ ସମୟରେ ବି ଉକ୍ତ ଗଡ଼ର ଭଗ୍ନ ପ୍ରାଚୀର ମନ୍ଦିରକୁ ବେଢ଼ି ରହିଛି । ଗଡ଼ର ମୀନାର ସହ ଏକ ନିର୍ଦ୍ଦିଷ୍ଟ ଦୂରତ୍ୱରେ ଭଗ୍ନାବସ୍ଥାରେ ପଡ଼ି ରହି ଏହି ମହିମାମୟ ସ୍ଥାନର ମୂକସାକ୍ଷୀ ଭାବରେ ଦଣ୍ଡାୟମାନ । ଏତଦ୍‌ବ୍ୟତୀତ ମନ୍ଦିରଟି ଏକ ଜଳାଶୟ ଭିତରେ ରହିଛି । ଗଡ଼ ତଥା ମନ୍ଦିରରେ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ କରାଗଲେ ଏକ ଲୁପ୍ତ ଐତିହ୍ୟ ଓ ସଂସ୍କୃତିର ପୁନଃଉଦ୍ଧାର ହୋଇପାରନ୍ତା ।

ଷୋଡ଼ଶ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ସମ୍ବଲପୁରର ଚୌହାନ ବଂଶର ପଂଚମ ରାଜା ବଳିଆର ସିଂ ରାଜୁତି କରୁଥିଲେ । ତାଙ୍କର ଦେବାନ୍ ଥିଲେ ଦକ୍ଷିଣ ରାୟ । ରାଜା ଶିବଙ୍କ ଉପାସକ ଥିଲେ । ଦିନେ ରାଜାଙ୍କୁ ସ୍ୱପ୍ନାଦେଶ ହେଲା ଯେ, ସମ୍ବଲପୁରର ବିଭିନ୍ନ ସ୍ଥାନରେ ଆଠଟି ଶିବଲିଙ୍ଗ ଆବିର୍ଭାବ ହୋଇଛି । ଯଥା– (୧) ହୁମାରେ ବିମଳେଶ୍ୱର (୨) ମାନେଶ୍ୱରରେ ମାନଧାତା ବାବା (୩) ସୋର୍ଣ୍ଣୀରେ (ବରଗଡ) ସ୍ୱପ୍ନେଶ୍ୱର (୪) ଦେଏଗାଁରେ ବୈଦ୍ୟନାଥ (୫) ନୀଳଜୀ(ଭଟର୍ଲି)ରେ ନୀଳକଂଠେଶ୍ୱର (୬) ସରଣ୍ଡା(ବରଗଡ)ରେ ବିଶ୍ୱେଶ୍ୱର (୭) ଗାଏସମାରେ ବାଲୁଙ୍କେଶ୍ୱର ଓ (୮) ଅମ୍ବାଭୋନା(ବରଗଡ଼)ରେ କେଦାରନାଥ । ପରବର୍ତ୍ତୀ କାଳରେ ସେଗୁଡ଼ିକ ଅଷ୍ଟଶମ୍ଭୁ ନାମରେ ବିରାଜିତ ହୋଇ ଅଜସ୍ର ଶ୍ରଦ୍ଧାଳୁଙ୍କ ପୁଣ୍ୟପୀଠ ରୂପେ ପରିଗଣିତ ହେଲା ।

ହୁମାସ୍ଥିତ ବିମଳେଶ୍ୱର ମନ୍ଦିର ସମ୍ବଲପୁର ରାଜ୍ୟର ପ୍ରତିଷ୍ଠାତା ବଳରାମ ଦେବଙ୍କ ଦ୍ୱାରା ନିର୍ମାଣ କରାଯାଇଥିବା ବେଳେ ଉପରୋକ୍ତ ଉଲ୍ଲିଖିତ ମନ୍ଦିରଗୁଡ଼ିକ ମହାରାଜା ଅଜିତ ସିଂହ ଏବଂ ତାଙ୍କ ସୁପୁତ୍ର ଅଭୟ ସିଂହଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା ବୋଲି ଐତିହାସିକ ପରିସଂଖ୍ୟାନରୁ ଜଣାପଡ଼େ । ସେନାପତି ଦକ୍ଷିଣ ରାୟଙ୍କ ଦ୍ୱାରା ସନ୍ଧାନ ହେଲା ଯେ ୨୫ ମାଇଲ ଦୂର ନଦୀର ଅପର ପାର୍ଶ୍ୱରୁ ଲରା ଗାଁର ହରି ସାହୁ ନାମକ ଜନୈକ ବ୍ୟକ୍ତିଙ୍କ ଗାଈ ପ୍ରତିଦିନ ଆସି ଅମ୍ବାଭୋନା ଏବଂ ଗଙ୍ଗେଇ ଗାଁ ବାଉଁଶ ଜଙ୍ଗଲ ମଝିରେ ବୋହିଯାଉଥିବା ନାଳ କଡ଼ରେ ଥିବା ନିର୍ଦ୍ଦିଷ୍ଟ ସ୍ଥାନରେ ଆପେ ଆପେ ଛିଡ଼ା ହୋଇ କ୍ଷୀର ଦେଇ ଚାଲିଯାଏ । ଧୀରେ ଧୀରେ ଏହା ଲୋକମୁଖରେ ପ୍ରଚାରିତ ହେଲା । ବନାଗ୍ନି ପରି ଖବରଟି ଦିଗବିଦିଗରେ ଚହଳ ପକେଇ ଦେଲା । ସମୟକ୍ରମେ ସମ୍ବଲପୁର ରାଜା ବଳିଆର ସିଂହଙ୍କୁ ସ୍ୱପ୍ନାଦେଶ ହେଲା । ଶିବ ଭକ୍ତ ରାଜା କାଳ ବିଳମ୍ବ ନ କରି ଦେଓାନ ଆହ୍ୱାନ ପୂର୍ବକ ଆଦେଶ ଦେଲେ ଅମ୍ବାଭୋନାରେ ଶିବ ମନ୍ଦିରଟିଏ ସ୍ଥାପନା କରିବା ପାଇଁ । ରାଜାଙ୍କ ଆଦେଶକୁ ଶିରୋଧାର୍ଯ୍ୟ ମନେକରି ଦକ୍ଷିଣ ରାୟ ଯଥୋଚିତ ପଦକ୍ଷେପ ନେଲେ ଏବଂ ଶିବ ମନ୍ଦିରଟିଏ ନିର୍ମାଣ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କଲେ । ତତ୍ପରେ ଶୁଦ୍ଧ–ପୂତ ଭାବରେ ପୁରୋହିତଙ୍କ ଉପସ୍ଥିତିରେ ପାତାଳଫୁଟା ଲିଙ୍ଗ (କେଦାରନାଥ)ଙ୍କୁ ପ୍ରତିଷ୍ଠା କରାଗଲା । ସେହିଦିନଠୁ ଅମ୍ବାଭୋନାଠାରେ ଦେବ ଦେବ କେଦାରନାଥ ପ୍ରତ୍ୟକ୍ଷ ଦେବତା ଭାବେ ପୂଜା ପାଇଆସୁଛନ୍ତି । ଏହା ବରଗଡ଼ ଜିଲ୍ଲାର ଭକ୍ତଙ୍କ ପାଇଁ ଭକ୍ତି ପୀଠ ରୂପେ ପରିଗଣିତ ହେବା ସହ ଛତିଶଗଡ଼ ରାଜ୍ୟର ହଜାର ହଜାର ଭକ୍ତଙ୍କ ଆରାଧ୍ୟ ଦେବ ପୀଠ ରୂପେ ଶୋଭା ବର୍ଦ୍ଧନ କରିଆସୁଅଛି ।

ମନ୍ଦିରର ନିଜସ୍ୱ ସଂପତ୍ତି କହିଲେ ତାକୁ ଘେରି ରହିଥିବା କେଦାରନାଥ ଗଡ଼ର ପ୍ରାୟ ୨୧ ଏକର ପାହାଡ଼ ପଥରବେଷ୍ଟିତ ଜମି, ଯାହା ଚାଷୋପଯୋଗୀ ନୁହେଁ । ଚୌହାନ ବଂଶୀୟ ରାଜାମାନେ ମନ୍ଦିରର ରକ୍ଷଣାବେକ୍ଷଣ ତଥା ମହାପ୍ରଭୁଙ୍କ ପୂଜା ଏବଂ ନୀତିକାନ୍ତି ପାଇଁ ଭଟଲି ଥାନା ତାଳପାଲି ଗ୍ରାମ ଏବଂ ଅମ୍ବାଭୋନା ସତୀର୍ଦହା ଗ୍ରାମର ରାଜସ୍ୱ ଉତ୍ସର୍ଗୀକୃତ କରିଥିଲେ, ଯାହା ରାଜସ୍ୱ କାଗଜାତ୍‌ରୁ ଜଣାପଡ଼ିଥାଏ । ଏତଦ୍‌ବ୍ୟତୀତ

ତତ୍‌କାଳୀନ ସମ୍ବଲପୁର ରାଜ୍ୟର ଚୌହାନ ବଂଶୀୟ ରାଜାମାନଙ୍କ ଦ୍ୱାରା ନିଯୁକ୍ତ ସେବକ ସେବାୟତମାନେ ମାର୍ଫତଦାର ଥାଇ ବଂଶାନୁକ୍ରମିକ ଭାବରେ ଉତ୍ତରାଧିକାରୀ ସୂତ୍ରରେ ନିରବଛିନ୍ନ ଭାବରେ ପୂଜାର୍ଚ୍ଚନା କରିଆସୁଥିବାର ତଥ୍ୟ ରହିଅଛି । ରାଜସ୍ୱ ବିଭାଗର କାଗଜାତ୍ ଅନୁଯାୟୀ ପ୍ରଥମ ସେଟେଲମେଂଟ (ରସେଲ ସେଟେଲମେଂଟ) ସମୟରୁ ଉତ୍ତରାଧିକାରୀ ସୂତ୍ରେ ପୂଜକମାନଙ୍କର ବଂଶାବଳୀ ଅନୁସାରେ ଆନନ୍ଦ ଗିରି, ଧନରାଜ ଗିରି, ଘାସି ଗିରି, ତାଙ୍କ ପରେ ନିରଞ୍ଜନ ଗିରି, ମହାଦେବ ଗିରି, ତାଙ୍କ ପରେ କହ୍ନେୟାଲାଲ ଗିରି, କେଦାର ଗିରି ଧ୍ରୁବ ଗିରି ଆଦି ପୂଜା କରିଆସୁଛନ୍ତି ।

ଟ୍ରଷ୍ଟବୋର୍ଡ଼ – ୨୦୦୦ ମସିହାରୁ ମନ୍ଦିରର ସୁପରିଚାଳନା ନିମନ୍ତେ କେଦାରନାଥ ମନ୍ଦିର ଟ୍ରଷ୍ଟବୋର୍ଡ଼ ଗଠନ କରାଯାଇଛି ଏବଂ ବର୍ତ୍ତମାନ ଟ୍ରଷ୍ଟ୍‌ବୋର୍ଡ ଦ୍ୱାରା ମନ୍ଦିର ପରିଚାଳିତ ହେଉଅଛି ।

ମନ୍ଦିରର ପ୍ରବେଶ ପଥରେ ଏକ ସୁଦୃଶ୍ୟ ତୋରଣ ରହିଛି । ତୋରଣର ଉପରି ଭାଗରେ ଦେବ ଦେବ ମହାଦେବଙ୍କର ତାଣ୍ଡବ ନୃତ୍ୟଶୈଳୀର ଚିତ୍ରକଳ୍ପ ଅଙ୍କିତ ହୋଇଛି । ଏହା ଆଗନ୍ତୁକ ଭକ୍ତମାନଙ୍କୁ ଆକୃଷ୍ଟ କରିଥାଏ । ବାମ ପଟେ ହସ୍ତ–ପଦ ପ୍ରକ୍ଷାଳନ ପାଇଁ ସୁନ୍ଦର ବ୍ୟବସ୍ଥା ହୋଇଛି । ମନ୍ଦିର ପାର୍ଶ୍ୱରେ ଥିବା ଭୋଗ ଦୋକାନରୁ ଭକ୍ତମାନେ ଭୋଗ ନେଇ ବାବା କେଦାରନାଥଙ୍କୁ ଲାଗି କରିଥାନ୍ତି । ପାଖରେ ଥିବା ଜଳାଶୟରେ ମଧ୍ୟ ଭକ୍ତମାନେ ସ୍ନାନ ପୂର୍ବକ ଶୁଦ୍ଧ–ପୂତ ହୋଇ ମନ୍ଦିର ବେଢ଼ାକୁ ଯାଆନ୍ତି । ଏହି ଜଳାଶୟଟି ପ୍ରଚଣ୍ଡ ରୌଦ୍ରତାପରେ ଶୁଷ୍କ ହେଲେ ଆବଶ୍ୟକ ସ୍ଥଳରେ ପାଇପ ସାହାଯ୍ୟରେ ପାଣି ଭରିଦିଆଯାଏ । କେଉଁ ଅନାଦି କାଳରୁ ଏକ ବିରାଟକାୟ ବଟବୃକ୍ଷ ନିଜର କାୟା ବିସ୍ତାର କରି ରହିଛି । ଗ୍ରୀଷ୍ମ କାଳରେ ଭକ୍ତଙ୍କୁ ଶୀତଳତା ପ୍ରଦାନ କରିବାରେ ସହାୟକ ହୋଇପାରୁଛି । ଛୋଟ ଛୋଟ ପିଲାଙ୍କର ଦୋଳି ଖେଳିବାରେ ବି ଖୋରାକ ଯୋଗାଇଥାଏ । ଏହା ଛଡା ବଉଳଗଛ, ଆମ୍ବ ଗଛ, ଅଶ୍ୱତ୍ଥ ଗଛ ନିଜର ଆସ୍ଥାନ ଜମେଇ ଛାୟା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଆମୋଦ ପ୍ରମୋଦର ସାକ୍ଷୀ ହୋଇରହିଛନ୍ତି ।

ପରିସର ମଧରେ ନିର୍ମିତ ହୋଇଥିବା କେଦାରନାଥ କଲ୍ୟାଣ ମଣ୍ଡପରେ ବିବାହ ଓ ବ୍ରତ ଆଦି ଧର୍ମୀୟ ଶୁଭ କାର୍ଯ୍ୟକ୍ରମ ସୁଚାରୁରୂପେ ସଂପାଦିତ ହୋଇଥାଏ ।

**ଭୋଗମଣ୍ଡପ** – ତା ୩୦.୦୪.୧୯୯୮ରିଖରୁ ଭୋଗମଣ୍ଡପର ଶୁଭାରମ୍ଭ ହୋଇଛି । କାର୍ପଣ୍ୟଠୁ ଦୂରରେ ରହି ଦୂର–ଅଦୂରର ବିପୁଳ ଶ୍ରଦ୍ଧାଳୁ ଭକ୍ତମାନେ ସହଯୋଗର ହାତ ପ୍ରସାରିଛନ୍ତି । ମନ୍ଦିର ବେଢାରେ ଥିବା ଦ୍ୱିଭୂଜା ଦୁର୍ଗା ଓ କାଳ ଭୈରବଙ୍କଠାରେ ପ୍ରତିବର୍ଷ ଦଶହରା ଦଶମୀ ତିଥିରେ ଛାଗବଳି ଦିଆଯାଉଥିଲା । ସତୁରୀ ଦଶକରେ ଗାଁ ଗଉନ୍ତିଆ ସିତାରାମ ପ୍ରଧାନ, ବ୍ରହ୍ମାବଧିତ ବୈଷ୍ଣବଚରଣ ବାବା ଏବଂ ପୂଜାରୀ ମହାଦେବ ପୁରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପଶୁବଳି ବନ୍ଦ କରାଗଲା ଏବଂ କଖାରୁ ବଳି ପରମ୍ପରା ଆରମ୍ଭ କରାଗଲା । ଏତଦ୍‌ବ୍ୟତୀତ ସେମାନଙ୍କ ପ୍ରରୋଚନାରେ ୧୯୭୫ ମସିହାଠାରୁ ଏହି ପୀଠରେ ପ୍ରତିମାସ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ବେଢ଼ା ପରିକ୍ରମା ସହ ରାତ୍ରରେ ଭକ୍ତମାନେ ଉଜାଗର ରହନ୍ତି ଏବଂ ସତ୍‌ସଙ୍ଗରେ ଭାଗ ନେଇ ଅପୂର୍ବ କୃପା ଲାଭ କରନ୍ତି । ସେହିଭଳି ପ୍ରତିମାସ ସଂକ୍ରାନ୍ତିର ପୂର୍ବ ରାତ୍ରିରେ ଭକ୍ତମାନେ ଏକନିଷ୍ଠ ଭାବରେ କେଦାରନାଥଙ୍କୁ ଉପାସନା କରି ନିଜର ମନସ୍କାମନା ପୂର୍ଣ୍ଣ କରିଥାନ୍ତି । ଭଜନ, କୀର୍ତ୍ତନ, ଜଣାଣ ଗାନରେ ପୀଠଟି ସଂଗୀତମୁଖର ହୋଇଉଠେ । ୨୦୦୬ ମସିହାରେ ବୈଷ୍ଣବ ଧର୍ମର ପ୍ରଚାର ପାଇଁ କେଦାରନାଥ ମନ୍ଦିର ସମ୍ମୁଖରେ ଏକ ରାଧାମାଧବ ମନ୍ଦିର ସ୍ଥାପନା କରାଯାଇଥିଲା । ପୂଜା ସାମଗ୍ରୀର ବିକ୍ରି ପାଇଁ ଏକ ଷ୍ଟଲ କରାଯାଇଛି । ଏହି ଷ୍ଟଲ ପ୍ରତିବର୍ଷ ଶିବରାତ୍ରି ପୂର୍ବରୁ ନିଲାମ ହୁଏ । ପ୍ରତି ଇଂରାଜୀ ମାସ ଶେଷ ରବିବାର ଦିନସତ୍‌ସଙ୍ଗ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ । ଭଗବାନ ଶିବଙ୍କ ଉଦ୍ଦେଶ୍ୟରେ ହବନ ଏବଂ ପରେ ପରେ ପ୍ରବଚନର ମଙ୍ଗଳମୟ କାର୍ଯ୍ୟକ୍ରମ ସଂପାଦନ କରାଯାଇଥାଏ । ସେହିଭଳି ଶ୍ରାବଣ ମାସରେ ଶ୍ରାବଣି ପର୍ବ ଅନୁଷ୍ଠିତ ହୋଇ ଭକ୍ତମାନଙ୍କ ମନରେ ଉତ୍ସାହ ଓ ମନୋରଞ୍ଜନର ଖୋରାକ ଯୋଗାଇଥାଏ । ଫାଲ୍‌ଗୁନ କୃଷ୍ଣ ତ୍ରୟୋଦଶୀ ତିଥିରେ ମହାଶିବରାତ୍ରୀ ପାଳନ କରାଯାଏ । ଭକ୍ତମାନେ ରାତ୍ରି ଉଜାଗର ରହନ୍ତି । ବେଢ଼ା ଚାରିପଟେ ଭକ୍ତମାନେ ଦୀପ ଜାଳି କେଦାରନାଥ(ମହାଦେବ)ଙ୍କୁ ସ୍ମରଣ କରିଥାନ୍ତି । ସ୍ଥାନୀୟ

ମାନସିକଧାରୀ ଭକ୍ତ ଏପରିକି ପଡ଼ୋଶୀ ରାଜ୍ୟ ଛତିଶଗଡ଼ ରାଜ୍ୟର ଅନେକ ଶ୍ରଦ୍ଧାଳୁ ମାନସିକଧାରୀ ଭକ୍ତମାନେ ଝଂଡ଼ା ଚଢ଼ାନ୍ତି । ଝଂଡ଼ା ଚଢ଼େଇବା ଦ୍ୱାରା ସେମାନଙ୍କର ମାନସିକ ପୂର୍ଣ୍ଣ ହୁଏ ବୋଲି ବିଶ୍ୱାସ ରହିଛି । ଏହି ବିଶ୍ୱାସ ଓ ପରମ୍ପରାର ଦେବ ଦେବ କେଦାରନାଥଙ୍କର ଅନୁପମ ଧାରା ବୋଲି ବିବେଚିତ ହୋଇଥାଏ । ମହାଦୀପ ଉଠିଲା ପର୍ଯ୍ୟନ୍ତ ଭକ୍ତମାନେ ଏକନିଷ୍ଠ ଭାବେ ଠାକୁରଙ୍କ ମହାନତାକୁ ପରଖି ନେଉଥାନ୍ତି । ମହାଦୀପ ଉଠିଲା ପରେ ପରେ ହିଁ ମନ୍ଦିର ପୂଜାରୀଙ୍କ ଦ୍ୱାରା ମାନସିକ ଝଂଡ଼ା ମହାଦେବଙ୍କୁ ଅର୍ପଣ କରାଯାଇଥାଏ । ଏଥିଅନ୍ତେ ପ୍ରସାଦ ପରଷି ଦିଆଯାଏ ସମବେତ ଭକ୍ତମାନଙ୍କୁ । ନିକଟରେ ଏକ ଖୋଲା ପଡ଼ିଆରେ ମୀନାବଜାର ବସେ । ଜାତି–ବର୍ଣ୍ଣ–ଧର୍ମ ନିର୍ବିଶେଷରେ ଭକ୍ତମାନେ ଏକତ୍ରିତ ହୋଇ ଠାକୁର ଓ ଏହି ପବିତ୍ର ସ୍ଥାନର ମହିମା ପ୍ରତି ନିବିଡ଼ ଆତ୍ମୀୟତା ପ୍ରଦର୍ଶନ କରିଥାନ୍ତି । ଶୃଙ୍ଖଳିତ ଭାବେ ମହାଶିବରାତ୍ରୀ ପର୍ବ ପାଳିତ ହୁଏ । ଏହି ମେଳା ମହୋତ୍ସବ ପାଞ୍ଚଦିନ ବ୍ୟାପୀ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ ।

ପ୍ରତିବର୍ଷ ଜାନୁଆରୀ ମକର ସଂକ୍ରାନ୍ତି ସମୟରେ ପଂଚଦିବସୀୟ କୃଷ୍ଣଗୁରୁ ଧାମ ଅନୁଷ୍ଠିତ ହୁଏ । ଏହି ସମୟରେ କେଦାରନାଥ କଳାସାହିତ୍ୟ ସଂସଦର ବାର୍ଷିକ ସମାବର୍ତ୍ତନ ଉତ୍ସବ, ମକର ମିଳନ ଅନୁଷ୍ଠିତ ହୋଇ କୃତି ସାହିତ୍ୟିକ, କଳାକାର ଏବଂ ପ୍ରତିଭାବାନ ଛାତ୍ରଛାତ୍ରୀମାନଙ୍କୁ ସମ୍ମାନିତ ଏବଂ ପୁରସ୍କୃତ କରାଯାଏ । ଏପ୍ରିଲ ମାସର ଶେଷ ରବିବାର ଦିନ ଶ୍ରୀଶ୍ରୀ କେଦାରନାଥ ସେବା ସମିତିର ବାର୍ଷିକ ସମାରୋହ ଅନୁଷ୍ଠିତ ହୁଏ । ସେହିଭଳି ଚତୁର୍ଦ୍ଦଶୀ ସତସଙ୍ଗ ମଣ୍ଡଳିର ଆନୁକୂଲ୍ୟରେ ଅନନ୍ତମୁଖୀ ପାଠ ହୋଇ ଭାଗବତ ଜନ୍ମ ଉତ୍ସବ ପାଳିତ ହୁଏ । ସମସ୍ତ କର୍ମକର୍ମାଣି ଶାନ୍ତି–ଶୃଙ୍ଖଳା ଓ ନୀତି–ନିୟମ ଅନୁଯାୟୀ ପରିବେଷିତ ହୋଇଥାଏ ।

କେଦାରନାଥ ମନ୍ଦିର ପାର୍ଶ୍ୱରେ ରାଧାକୃଷ୍ଣ ମନ୍ଦିର, ଶନି ମନ୍ଦିର, ଦୁର୍ଗା ମନ୍ଦିର, ସାମ୍ନାରେ ଷ୍ଟାଡିୟମ୍, ପାର୍ଶ୍ୱରେ ସରସ୍ୱତୀ ଶିଶୁ ମନ୍ଦିର ରହିଛି । ଏଭଳି ଏକ ସୁ ପରିବେଶରେ ମନ୍ଦିରର ଗାମ୍ଭୀର୍ଯ୍ୟ ଦ୍ୱିଗୁଣିତ ହୋଇଥାଏ । ଏକ ସମୟରେ କେଦାରନାଥଙ୍କ ଦର୍ଶନ ସହ ପାର୍ଶ୍ୱ ଦେବା–ଦେବୀ ମନ୍ଦିର ବେଢା ବୁଲି ଭକ୍ତ ସମୂହ ଆଧ୍ୟାତ୍ମିକ ଚେତନାରେ ନିଜକୁ ହଜାଇ ଦିଅନ୍ତି । ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାପଡେ ଯେ କେଦାରନାଥଙ୍କ ମହିମା ସୁଦୁରପ୍ରସାରୀ ଏବଂ ବରଗଡ ଜିଲ୍ଲା ତଥା ପଡୋଶୀ ରାଜ୍ୟବାସୀଙ୍କର ଧର୍ମୀୟ ଭାବନାର ବଳିଷ୍ଠ ଉଦାହରଣ । ପଥଚାରୀ ବି ଭକ୍ତ ପାଲଟିଯାଏ ଏଭଳି ପ୍ରତ୍ୟକ୍ଷ ଠାକୁରଙ୍କ ବେଢା ତଥା ଶିବ ଲିଙ୍ଗ ସନ୍ଦର୍ଶନରେ ।

ଆସନ୍ତୁ, ବରଗଡ ଜିଲ୍ଲାକୁ ବୁଲି ଆସି ଏଭଳି ଶୈବ ପୀଠରେ ପାଦ ଦେବା ଏବଂ ମହିମା ମଣ୍ଡିତ ଶ୍ରୀଶ୍ରୀ କେଦାରନାଥଙ୍କ ଆଶିଷ ଲଭି ନିଜକୁ ଧନ୍ୟ ମନେ କରିବା ସହ ପୁଣ୍ୟ ଅର୍ଜନ କରିବା ।

ଏଲ୍.ଆଇ.ଜି–୧୫
ନୟାପଲ୍ଲୀ ବ୍ରୀଟ୍ କଲୋନୀ
ଭୁବନେଶ୍ୱର–୭୫୧୦୧୨



# ଗୋଟିପୁଅ ନୃତ୍ୟ

**ଗୁରୁଶ୍ରୀ ବିମଳ ଘୋଷ**

ଯୁଗ ଯୁଗ ଧରି ଉତ୍କଳୀୟ ଧର୍ମ, କଳା ଓ ସଂସ୍କୃତି ବିଶାଳ ଆର୍ଯ୍ୟାବର୍ତ୍ତରେ ନିଜର ଶ୍ରେଷ୍ଠତା ପ୍ରତିପାଦିତ କରିଆସିଛି । ଉତ୍କୃଷ୍ଟ କଳାର ରାଜ୍ୟଭାବେ ଉତ୍କଳର ସ୍ୱତନ୍ତ୍ର ପରିଚୟ ରହିଛି । ଇତିହାସ ଅନୁଧ୍ୟାନ କଲେ ଜଣାଯାଏ, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ କଳିଙ୍ଗ ସମ୍ରାଟ ଐର ଖାରବେଳଙ୍କ ସମୟ ବେଳକୁ କଳିଙ୍ଗର ସୀମା ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଯାହା ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ସନ୍ନିକଟ ଖଣ୍ଡଗିରି ଉଦୟଗିରିରେ ଥିବା ହାତୀଗୁମ୍ଫା ଶିଳାଲିପିରୁ ଜଣାପଡିଥାଏ । କେବଳ ସେତିକି ନୁହେଁ କଳିଙ୍ଗରେ ସଙ୍ଗୀତ, ବାଦ୍ୟ ଓ ନୃତ୍ୟର ପରିଚୟ ସେଠାରେ ଖୋଦିତ ପ୍ରସ୍ତର ମୂର୍ତ୍ତିରୁ ଜଣାପଡିଥାଏ । ଓଡ଼ିଶାର ପ୍ରାଚୀନତା ବିଭିନ୍ନ ନାମକରଣରୁ ଜଣାପଡେ, ଯେମିତି ଉଡ୍ର, କଳିଙ୍ଗ, ଉତ୍କଳ ଓ ଓଡ଼ିଶା । ଉତ୍କଳୀୟ କଳା ଓ ସଂସ୍କୃତି ଆଜି ମଧ୍ୟ ମନ୍ଦିର ଗାତ୍ରମାନଙ୍କରେ ପ୍ରସ୍ଫୁଟିତ । ଅଷ୍ଟମ ଶତାବ୍ଦୀରେ ନିର୍ମିତ ମୁକ୍ତେଶ୍ୱର ମନ୍ଦିର, ନବମ ଶତାବ୍ଦୀରେ ନିର୍ମିତ ରାଜାରାଣୀ ମନ୍ଦିର, ତ୍ରୟୋଦଶ ଶତାବ୍ଦୀରେ କୋଣାର୍କ ମନ୍ଦିର, ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଲିଙ୍ଗରାଜ ମନ୍ଦିର ଏବଂ ଜଗନ୍ନାଥ ମନ୍ଦିର ଗାତ୍ରରେ ଉତ୍କଳ ସଙ୍ଗୀତ, ବାଦ୍ୟ ଓ ନୃତ୍ୟ ସମ୍ବନ୍ଧରେ ପ୍ରସ୍ତର ଗାତ୍ରରେ ଅନେକ ଉତ୍କଳୀୟ କଳା ଓ ସଂସ୍କୃତି ଏବଂ ସ୍ଥାପତ୍ୟ କଳା ମାଧ୍ୟମରେ ବିଦ୍ୟମାନ ଅଟେ । ଭାରତ ମୁନିଙ୍କ (ପ୍ରଥମ ଶତାବ୍ଦୀ) ନାଟ୍ୟଶାସ୍ତ୍ରରେ ଏ ସମ୍ବନ୍ଧେ ବିଶଦ ବିବରଣୀ ରହିଛି ।



ଉତ୍କଳର ଆଦ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ ନେଇ ଓଡ଼ିଆମାନଙ୍କ ସମସ୍ତ ପର୍ବପର୍ବାଣି, ଧର୍ମ ଓ ସଂସ୍କୃତି ସମୃଦ୍ଧ ଅଟେ । ଯେଉଁ ଗବେଷକ ଶ୍ରୀଜଗନ୍ନାଥଙ୍କ ଆଦି ଓ ଅନ୍ତ ଖୋଜି ପାଇନାହାଁନ୍ତି, ସେମାନେ ଓଡ଼ିଆ ସଂସ୍କୃତିର ପ୍ରାରମ୍ଭ କଥା ଚିନ୍ତା କରିବା ଦୁରୁହ ଅଟେ । ଜଗନ୍ନାଥଙ୍କ ସଂସ୍କୃତି ହିଁ ଓଡିଆ ସଂସ୍କୃତି । ଏହାର ପ୍ରମାଣ ଓଡ଼ିଶା ବା ଉତ୍କଳୀୟ ସଂସ୍କୃତି ଅଟେ । ଓଡ଼ିଶାରେ କେଶରୀ ବଂଶ ରାଜତ୍ୱ ସମୟରେ ଖ୍ରୀ.ପୂ. ୭୪୦–୭୫୪ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ନୃପତି ଗନ୍ଧର୍ବ କେଶରୀ ଅଥବା ଖ୍ରୀ.ପୂ. ୯୯୯–୧୦୧୩ ପର୍ଯ୍ୟନ୍ତ ଶାସନ କରିଥିବା ନୃପତି ଦୃତ୍ୟ କେଶରୀ ଥିଲେ ଶାସ୍ତ୍ରୀୟ ନୃତ୍ୟ ପ୍ରବୀଣ । ଅଭିନୟ ଚନ୍ଦ୍ରିକାରେ ଉଲ୍ଲେଖ ରହିଛି, ‘ଉଡ୍ର ଦେଶ ସଦାଶ୍ରେଷ୍ଠ

ନାଟ୍ୟାଭିନୟ ପ୍ରକ୍ରିୟା, ଗଜପତି ପ୍ରତାପରୁଦ୍ର ଦେବ ଥିଲେ ଜଣେ ପ୍ରବୀଣ ନୃତ୍ୟଶିଳ୍ପୀ, ଏଥିନିମିତ୍ତ ସେ 'ସଙ୍ଗୀତ ସାହିତ୍ୟ-ସନ୍ତପ' ଭାବେ ସମ୍ମାନିତ ହୋଇଥିଲେ, ଯାହା ସେସମୟରେ ରାଜମୁନ୍ଦ୍ରି ରାଜ୍ୟପାଳ ରାୟ ରାମାନନ୍ଦ ପଟ୍ଟନାୟକଙ୍କ ତଥ୍ୟରୁ ଜଣାଯାଏ । ଉଲ୍ଲେଖଯୋଗ୍ୟ ଯେ ରାଜ୍ୟପାଳଙ୍କ ତଥ୍ୟାନୁସାରେ ପ୍ରତାପରୁଦ୍ର ଦେବ ଶ୍ରୀମନ୍ଦିର ଭିତର ସେବାରେ ନିୟୋଜିତ ମାହାରୀ ନୃତ୍ୟ, ଯେଉଁ ଦେବଦାସୀମାନେ ଶ୍ରୀଜଗନ୍ନାଥଙ୍କ (ପହୁଡ) ସମ୍ମୁଖରେ ପରିବେଷଣ କରୁଥିଲେ, ଗଜପତି ପ୍ରତ୍ୟକ୍ଷଭାବେ ସେମାନଙ୍କୁ ନୃତ୍ୟାଭିନୟ ପ୍ରଶିକ୍ଷଣ ଦେବା ସହିତ ଗୀତିନାଟ୍ୟକୁ ପ୍ରଚଳନ କରାଇଥିଲେ ।

କଳିଯୁଗର ତ୍ରାଣକର୍ତ୍ତା ଓ ବିଶ୍ୱନିୟନ୍ତା ଶ୍ରୀଜଗନ୍ନାଥଙ୍କ ସେବାରେ ସଙ୍ଗୀତ, ନୃତ୍ୟ ଓ ବାଦ୍ୟ ପ୍ରଚଳିତ । କାରଣ ପତିତପାବନ ନିଜେ ହେଉଛନ୍ତି ସଙ୍ଗୀତ ପ୍ରିୟ । ଓଡ଼ିଆ ଭାଗବତ ରଚୟିତା ଜଗନ୍ନାଥ ଦାସଙ୍କୁ 'ଅତିବଡୀ' ଉପାଧିରେ ଭୂଷିତ କରିଥିଲେ ନିଜେ ଶ୍ରୀଚୈତନ୍ୟ ମହାପ୍ରଭୁ । ଅତିବଡ଼ୀ ଜଗନ୍ନାଥ ଦାସ ଉଲ୍ଲେଖ କରିଛନ୍ତି ଜଗନ୍ନାଥଙ୍କ ସଙ୍ଗୀତାସକ୍ତି ସମ୍ବନ୍ଧେ ।

ତାଙ୍କ ଲେଖାରେ-

ମୋ ଜନମ କରମର କଥନ
ମୋର ଉତ୍ସବେ ହୃଷ୍ଟମନ
ନାନା ସୁବାଦ୍ୟ ନୃତ୍ୟଗୀତ
କୀର୍ତ୍ତନ କରି ମୋ ଅଗ୍ରତେ ।

ଶ୍ରୀମନ୍ଦିରରେ ନୃତ୍ୟର ପ୍ରବେଶ ପଞ୍ଚମ ଶତାବ୍ଦୀରୁ । ଏହି ତଥ୍ୟ ବିଭିନ୍ନ ଐତିହାସିକ ତଥ୍ୟରୁ ଜଣାପଡେ । ଶ୍ରୀଜଗନ୍ନାଥଙ୍କ ସେବାରେ ଏହି ଗୀତବାଦ୍ୟ ଓ ନୃତ୍ୟର ଦୁଇଟି ସେବା ପ୍ରଚଳିତ ହେଲା ଶ୍ରୀମନ୍ଦିର ଭିତର ଗାଉଣା ଓ ବାହାର ଗାଉଣା । ଭିତର ଗାଉଣା ମାହାରୀ ଭାବେ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ବଙ୍ଗୀୟ ଗୌଡିୟ ବୈଷ୍ଣବ ଧର୍ମଗୁରୁ ପ୍ରଭୁ ଶ୍ରୀଚୈତନ୍ୟ ମହାପ୍ରଭୁ ବଙ୍ଗ ଦେଶରୁ ଉତ୍କଳର ଶ୍ରୀକ୍ଷେତ୍ର ଭାବେ ଖ୍ୟାତ ପୁରୀକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଆସିଥିଲେ । କହିବା ବାହୁଲ୍ୟ ସେସମୟରେ ଆଜିର ଯିବା ଆସିବା ପାଇଁ ରାଜପଥ ବା ରେଳପଥ ନଥିଲା । ବଙ୍ଗବାସୀଙ୍କୁ ଜଗନ୍ନାଥ ଧାମକୁ ଆସିବାକୁ ହେଲେ ପାଦରେ ଚାଲି ଚାଲି ଏବଂ ନୌକା ମାଧ୍ୟମରେ ଜଳଯାତ୍ରା କରି ଆସିବାକୁ ପଡୁଥିଲା । ଚୈତନ୍ୟ ଦେବ ନିଜ ବୈଷ୍ଣବ ଭକ୍ତ ଏବଂ ଅନୁଗାମୀଙ୍କ ସହ ପଦବ୍ରଜରେ ଶ୍ରୀକ୍ଷେତ୍ରକୁ ଆସିଥିଲେ । ସେତେବେଳେ ଓଡ଼ିଶାର ସୀମା ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଚୈତନ୍ୟ ମହାପ୍ରଭୁ ପଦବ୍ରଜରେ ଭକ୍ତଙ୍କ ଗହଣରେ ଆସି ଓଡ଼ିଶା ସୀମାନ୍ତ ମେଦିନପୁର ଅଞ୍ଚଳର ଗୋପିବଲ୍ଲଭପୁରଠାରେ ଥିବା ଗୁପ୍ତ ବୃନ୍ଦାବନରେ ରାତ୍ରିଯାପନ କରିଥିଲେ ।

ଶ୍ରୀଚୈତନ୍ୟ ପଦବ୍ରଜରେ ଶହ ଶହ ଭକ୍ତ ଓ ଅନୁଗାମୀଙ୍କ ସହ ଆସୁଥାନ୍ତି । ବାଟ ମଝିରେ ସୁବର୍ଣ୍ଣରେଖା, ସାଳନ୍ଦୀ, ବୈତରଣୀ, ମହାନଦୀ, କାଠଯୋଡି, ଦୟା ଆଦି ନଦୀ ପାରି ହୋଇ ପୁରୀ ନିକଟସ୍ଥ ଚନ୍ଦନପୁର ପହଞ୍ଚନ୍ତି । ଚନ୍ଦନପୁର ନିକଟରେ ପ୍ରବାହିତ ଭାର୍ଗବୀ ନଦୀରେ ନିଜର ଦଣ୍ଡ ଭାଙ୍ଗି ଜଳ ବିସର୍ଜନ କରି ସେଠାରୁ ସାଷ୍ଟାଙ୍ଗ ଦଣ୍ଡବତ ପକାଇ ପକାଇ ଶ୍ରୀମନ୍ଦିର ପହଞ୍ଚି ଥିଲେ । ସେସମୟରେ ଶ୍ରୀକ୍ଷେତ୍ରରେ ଚନ୍ଦନଯାତ୍ରା ଅବସରରେ ନରେନ୍ଦ୍ର ପୋଖରୀରେ ଚାପଖେଳ ହେଉଥାଏ । ମହାପ୍ରଭୁ ଚାପ ଖେଳିବାକୁ ବାହାରିବା ସମୟରେ ପରମ୍ପରା ମୁତାବକ ସମ୍ମୁଖରେ ମାହାରୀ ନୃତ୍ୟ ପରିବେଷଣ ହେଉଥିଲେ ମଧ୍ୟ ଅନ୍ୟ ପକ୍ଷରେ ଯାତ୍ରାକୁ ଆସୁଥିବା ପଞ୍ଚ ମହାଦେବଙ୍କ ସମ୍ମୁଖରେ କୌଣସି ନୃତ୍ୟ ପରିବେଷଣ ନ ଥିଲା ।

ଶିବ ହେଉଛନ୍ତି ନାଟ୍ୟଗୁରୁ । ଶିବଙ୍କ ତାଣ୍ଡବ ନୃତ୍ୟ ବିଶ୍ୱବିଦିତ । ଯେକୌଣସି ସଙ୍ଗୀତ ଓ ନୃତ୍ୟ ପରିବେଷଣ ସମୟରେ ନୃତ୍ୟଶିଳ୍ପୀ ପ୍ରଥମେ ଶିବ ଆବାହନ କରିଥାନ୍ତି । ଦୈନିକ ନୃତ୍ୟାରମ୍ଭ ଶିବଙ୍କ ସ୍ତୁତିରୁ ଆରମ୍ଭ ହେବା ବେଳେ ମାନୁଷି ବା ଗଣନୃତ୍ୟ ଶିଳ୍ପୀ ପରିବେଷଣ ଆରମ୍ଭରେ ବିଘ୍ନରାଜ ଗଣେଶଙ୍କୁ ଆବାହନ କରିଥାନ୍ତି । ଶ୍ରୀଚୈତନ୍ୟ ଏଥିନିମନ୍ତେ ଗଜପତିଙ୍କୁ ପରାମର୍ଶ ଦେଇ ପଞ୍ଚ ମହାଦେବଙ୍କ ସମ୍ମୁଖରେ ଏବଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବାହାର ଯାତ୍ରା ଉତ୍ସବ ଚନ୍ଦନଯାତ, ଝୁଲଣ ଯାତ ଓ ଦୋଳଯାତମାନଙ୍କରେ ସମ୍ମୁଖରେ ନୃତ୍ୟ କରିବାକୁ ନୃତ୍ୟଶିଳ୍ପୀ ବା ଗୋଟିପୁଅଙ୍କୁ ନୃତ୍ୟଶିକ୍ଷା ଦେବା ପାଇଁ ପରାମର୍ଶ ଦେଲେ । ଉପଦେଶକୁ ସାଦରେ ଗ୍ରହଣ କରି ଗଜପତି ପ୍ରତାପରୁଦ୍ର ଦେବ ପୁରୀରେ ଥିବା ସାତସାଇ ଆଖଡାରେ ଜଣେ ଜଣେ ଗୋଟିପୁଅଙ୍କୁ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା କରାଇଥିଲେ ।

ଏହି ଗୋଟିପୁଅ ନୃତ୍ୟ ପାଇଁ ନିର୍ଦ୍ଦିଷ୍ଟ ଆଚରଣ ବିଧି ଲାଗୁ ହୋଇଥିଲା । କେତେକ ପୁଅ ପିଲା କେବଳ ଛଅବର୍ଷ

ବୟସରୁ ବାର ବର୍ଷ ପର୍ଯ୍ୟନ୍ତ ଏହି ନୃତ୍ୟ କରିବାକୁ ଯୋଗ୍ୟ ଅଟନ୍ତି । ପୁରୀ ସାତ ସାହିରେ ଥିବା ଆଖଡା ଘରେ ଗୋଟିପୁଅ ନୃତ୍ୟ ଶିକ୍ଷା ଦିଆଗଲା । ଚନ୍ଦନଯାତ୍ରା ଏକୋଇଶ ଦିନ ବ୍ୟାପୀ ଅନୁଷ୍ଠିତ ହୋଇଥାଏ । ଏଣୁ ସାତ ଆଖଡାକୁ ପ୍ରତ୍ୟେକ ତିନି ଦିନ ଧରି ଗୋଟିପୁଅ ନୃତ୍ୟ ପରିବେଷଣ କରୁଥିଲେ । କଥିତ ଅଛି, ନିଜେ ଗଜପତି ମହାରାଜା ଏହି ପରମ୍ପରାକୁ ପ୍ରଚଳନ ପାଇଁ ସେସମୟରେ ଅନ୍ୟ ଅଠର ଜଣ ଉତ୍କଳୀୟ ସାମନ୍ତ ରାଜାମାନଙ୍କୁ ନିର୍ଦ୍ଦେଶ ଦେଇ କାର୍ଯ୍ୟକାରୀ କରାଇଥିଲେ । ସେଥିପାଇଁ ପ୍ରତ୍ୟେକ ରାଜ୍ୟରେ ରାଜାମାନେ ମଧ୍ୟ ସେମାନଙ୍କ ରାଜ୍ୟରେ ହେଉଥିବା ହେଉଥିବା ଯାତ୍ରା ଉତ୍ସବମାନଙ୍କରେ ଗୋଟିପୁଅ ନୃତ୍ୟ ପ୍ରଚଳନ କଲେ ଏବଂ ତତ୍ ସହିତ ସ୍ୱତନ୍ତ୍ର ଗୋଟିପୁଅ ନୃତ୍ୟ ଦଳ ଗଢିଥିଲେ ।

ଏହି ଗୋଟିପୁଅ ନୃତ୍ୟ ପରବର୍ତ୍ତୀ ସମୟରେ ଉତ୍କଳର ବିଭିନ୍ନ ମନ୍ଦିର ଓ ମଠମାନଙ୍କରେ ପରିବେଷଣ ହେବା ଆରମ୍ଭ ହେଲା । ମହାପ୍ରଭୁଙ୍କୁ ଯାତ ଅବସରରେ ପୁରୀରେ ଓଡ଼ିଆ ମଠ, ଝାଞ୍ଜପିଟା ମଠ, ଏମାର ମଠ, ଉତ୍ତର ପାର୍ଶ୍ୱ ଓ ଦକ୍ଷିଣ ପାର୍ଶ୍ୱ ମଠ ଆଦିମାନଙ୍କରେ ଗୋଟିପୁଅ ନୃତ୍ୟ ସେବା ଆରମ୍ଭ ହୁଏ । ଏଠାରେ କହି ରଖିବା ଉଚିତ୍ ହେବ ଯେ ହଜାର ହଜାର ବର୍ଷ ଧରି ଏହି ଉଡ୍ର ବା ଉତ୍କଳକୁ ହିନ୍ଦୁ ରାଜାମାନେ ଶାସନ କରି ଆସିଥିଲେ । ଏତଦ୍‌ବ୍ୟତୀତ ଉତ୍କଳ ଏକ ହିନ୍ଦୁ ସାମ୍ରାଜ୍ୟ ଥିଲା । ଏହି ସାମ୍ରାଜ୍ୟରେ ଆର୍ଯ୍ୟ ଏବଂ ଅନାର୍ଯ୍ୟମାନେ ବାସ କରୁଥିଲେ ମଧ୍ୟ ଉଭୟ ହିନ୍ଦୁ ଦେବାଦେବୀଙ୍କୁ ପୂଜା କରୁଥାଆନ୍ତି । ଏଣୁ ଗୋଟିପୁଅ ନୃତ୍ୟ ବିଭିନ୍ନ ଅଞ୍ଚଳରେ ପ୍ରଦର୍ଶିତ ହୋଇ ପ୍ରସାରିତ ହେବାକୁ ଲାଗିଲା । ପରିବେଷଣ ହେଉଥିବା ଗୋଟିପୁଅ ନୃତ୍ୟରେ ଗୋଟିଏ ପୁଅ ପିଲା ନୃତ୍ୟ କରୁଥିଲା କିନ୍ତୁ ପରବର୍ତ୍ତୀ ସମୟରେ ଏହି ନୃତ୍ୟ ଏକକରୁ ବୃଦ୍ଧି ପାଇ ଦଳନୃତ୍ୟରେ ପରିଣତ ହେଲା, ଠିକ୍ ମାହାରୀ ନୃତ୍ୟ ସଦୃଶ୍ୟ ।

ଗୋଟିପୁଅ ନୃତ୍ୟର ଆଦର ଏବଂ ପ୍ରସାର ପନ୍ଦରଶହ ଶତାବ୍ଦୀରୁ ଅଠର ଶହ ଶତାବ୍ଦୀ ପର୍ଯ୍ୟନ୍ତ ଲାଗି ରହିଥିଲା । କିନ୍ତୁ ୧୮୦୩ ମସିହାରୁ ଇଂରେଜମାନଙ୍କ ଓଡ଼ିଶା ଶାସନ ବେଳକୁ ଏହି ଗୋଟିପୁଅ ନୃତ୍ୟ ନିଜର ସ୍ଥିତାବସ୍ଥା ଜାହିର୍ କରିବାରେ ବିଫଳ ହେଲା । ଏହାର ଏକମାତ୍ର କାରଣ ଥିଲା ରାଜ ପୃଷ୍ଠପୋଷକତା ନ ମିଳିବା ମୋଗଲ ଶାସନ ସମୟଠାରୁ ଏହି ଗୋଟିପୁଅ ନୃତ୍ୟ ଏକପ୍ରକାର ରାଜ ପୃଷ୍ଠପୋଷକତା ହରେଇ ବସିଥିବା ବେଳେ ଇଂରେଜ ଶାସନ ସମୟକୁ ଏହି ଗୋଟିପୁଅ ନୃତ୍ୟ ଦଳସବୁ ଢୋକେ ପିଇ ଦଣ୍ଡେ ଜିଇବା ଅବସ୍ଥାକୁ ଆସିସାରି ଥିଲେ । କାଁ ଭାଁ କେଉଁଠି କେମିତି ଧର୍ମୀୟ ପୃଷ୍ଠପୋଷକତାରେ ଏହି କଳା ବଞ୍ଚି ରହିଥିଲା ।

ଊନବିଂଶ ଶତାବ୍ଦୀର ଅନ୍ତିମାରମ୍ଭ ବେଳକୁ ଅନେକ ଗୋଟିପୁଅ ନୃତ୍ୟ ଦଳ ନିଜ ନିଜର ସ୍ଥିତି ହଜାଇ ସାରିଥିଲେ । ପୁରୀ ଜିଲ୍ଲାର ସାତ ଆଖଡା ବ୍ୟତୀତ ବିଭିନ୍ନ ଅଞ୍ଚଳରେ ଗୋଟିପୁଅ ଦଳ ଗଢି ଉଠିଥିଲା ଏବଂ ଗୋଟିପୁଅ ଗୁରୁମାନେ ଶିକ୍ଷା ଦେଇଆସୁଥିଲେ । ପୁରୀ ଜିଲ୍ଲାର ଡିମିରିଶେଣା, କୁଣେଇ, ଦରଡା, ଶିରୁଳି ମହାବୀର ଓ ଐତିହ୍ୟ ଗ୍ରାମ ରଘୁରାଜପୁରଠାରେ ଗୋଟିପୁଅ ନୃତ୍ୟଦଳ ରହିଥିଲା । ଏହିସବୁ ସ୍ଥାନମାନଙ୍କରେ ଗୋଟିପୁଅ ନୃତ୍ୟ ଗୁରୁଭାବେ ଯଥାକ୍ରମେ ଗୁରୁ ଚନ୍ଦ୍ରଶେଖର ପଟ୍ଟନାୟକ, ଗୁରୁ ଗୋପିନାଥ ଦାସ, ଗୁରୁ ଅର୍ଜ୍ଜୁନ ଚରଣ ପଣ୍ଡା, ଗୁରୁ ପତିତପାବନ ମହାପାତ୍ର ଏବଂ ଗୁରୁ ବଳଭଦ୍ର ସାହୁ ନୃତ୍ୟ ଶିକ୍ଷା ଦେଉଥିଲେ କିନ୍ତୁ ପରବର୍ତ୍ତୀ ସମୟରେ କେବଳ ରଘୁରାଜପୁର ବ୍ୟତିରେକ ଅନ୍ୟ ସ୍ଥାନମାନଙ୍କରେ ଗୋଟିପୁଅ ନୃତ୍ୟ ନିଜର ସତ୍ତା ହରାଇ ଥିଲା ।

ଏମିତି ଘଡିସନ୍ଧି ସମୟରେ ପୁରୀ ଜିଲ୍ଲା ରଘୁରାଜପୁର ଗ୍ରାମରେ ଗୋଟିପୁଅ ଗୁରୁ ଶ୍ରୀ ବଳଭଦ୍ର ସାହୁ ନୃତ୍ୟ ଶିକ୍ଷା ଦେଉଥାଆନ୍ତି । ସ୍ମରଣଯୋଗ୍ୟ ଯେ, ଏହି ଐତିହ୍ୟ ରଘୁରାଜପୁର ଗ୍ରାମ ଅନେକ ଚିତ୍ରକର ଓ କଳାକାରମାନଙ୍କୁ ନେଇ ସାରା ବିଶ୍ୱରେ ଗର୍ବାନ୍ୱିତ ଅଟେ । ରଘୁରାଜପୁର ହେଉଛି ବିଶ୍ୱ ପ୍ରସିଦ୍ଧ ନୃତ୍ୟଗୁରୁ ପଦ୍ମବିଭୂଷଣ କେଳୁଚରଣ ମହାପାତ୍ର ଓ ପଦ୍ମଶ୍ରୀ ମାଗୁଣି ଦାସଙ୍କ ଜନ୍ମସ୍ଥଳୀ । ଉଭୟ ନୃତ୍ୟଗୁରୁ ଗ୍ରାମର ଗୋଟିପୁଅ ନୃତ୍ୟଗୁରୁ ବଳଭଦ୍ର ସାହୁଙ୍କଠାରୁ ନୃତ୍ୟଶିକ୍ଷା ଗ୍ରହଣ କରିଥିଲେ । ଉଭୟ ଥିଲେ ସମସାମୟିକ । ଭାରତ ସ୍ୱାଧୀନତା ପ୍ରାପ୍ତି ପରେ ଗୋଟିପୁଅ ନୃତ୍ୟଗୁରୁ ଶ୍ରୀ କେଳୁଚରଣ ମହାପାତ୍ର ପରବର୍ତ୍ତୀ ସମୟରେ ଗୋଟିପୁଅ ଏବଂ ମାହାରୀ ନୃତ୍ୟ ମିଶ୍ରଣରେ ଏକ ସ୍ୱତନ୍ତ୍ର ଓଡ଼ିଶୀ ନୃତ୍ୟ ଶୈଳୀ ସୃଷ୍ଟି କରିବାରେ ଏବଂ ଏହାକୁ ଶାସ୍ତ୍ରୀୟ ନୃତ୍ୟରେ ପରିଣତ କରିବାରେ ବିଶେଷ ଭୂମିକା ନେଇଥିଲେ । ତାଙ୍କ ସହ ମାହାରୀ ସେବାର ଗୁରୁ ଶ୍ରୀ ପଙ୍କଜ ଚରଣ ଦାସ, କାଳିଚରଣ ପଟ୍ଟନାୟକ, ସଂଯୁକ୍ତା

ପାଣିଗ୍ରାହୀ ଏବଂ ତତ୍କାଳୀନ ସଙ୍ଗୀତତ ନାଟକ ଏକାଡେମୀ ସମ୍ପାଦକ ସ୍ୱର୍ଗତ ଧିରେନ୍ଦ୍ର ନାଥ ପଟ୍ଟନାୟକଙ୍କ ଦୀର୍ଘ ପ୍ରୟାସ ଫଳରେ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟର ମର୍ଯ୍ୟାଦା ମିଳିବା ସମ୍ଭବ ହୋଇଥିଲା । କିନ୍ତୁ ଓଡ଼ିଶୀ ଶାସ୍ତ୍ରୀୟ ନୃତ୍ୟର ଆଦ୍ୟ ଜନନୀ ଗୋଟିପୁଅ ନୃତ୍ୟ ଅବଲୁପ୍ତ ହେବାକୁ ବସିଲା, ପୃଷ୍ଠପୋଷକତା ବିହୀନ ଏହି ଗୋଟିପୁଅ ନୃତ୍ୟ ସବୁଦିଗରୁ ଅନାଥ ହୋଇସାରିଥିଲା । ପ୍ରବୀଣ ଗୋଟିପୁଅ ପ୍ରଶିକ୍ଷକ ଓଡ଼ିଶୀ ଶାସ୍ତ୍ରୀୟ ନୃତ୍ୟ କାର୍ଯ୍ୟରେ ବ୍ୟସ୍ତ ରହି ଶେଷ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟ ପାଇଁ କାର୍ଯ୍ୟ କରି ଶ୍ରୀଯୁକ୍ତ ମହାପାତ୍ର ଚିରଦିନ ପାଇଁ ଓଡ଼ିଶୀ ନୃତ୍ୟ ପ୍ରତି ତାଙ୍କ ଅବଦାନ ପାଇଁ ସ୍ମରଣୀୟ ହୋଇ ରହିବେ । କିନ୍ତୁ ଗୋଟିପୁଅ ନୃତ୍ୟକୁ ଅବଲୁପ୍ତ ପ୍ରାୟ ଅବସ୍ଥାର ପୁନଃ ଉଦ୍ଧାର କରି ବିଶ୍ୱ ଦରବାରରେ ଉଚ୍ଚ ପ୍ରଶଂସିତ କରାଇବା ସହ ଏହି ମୌଳିକ କଳାକୁ ବଞ୍ଚାଇ ରଖି ପାରିଥିବାରୁ ଗୋଟିପୁଅ ନୃତ୍ୟଗୁରୁ ପଦ୍ମଶ୍ରୀ ମାଗୁଣି ଚରଣ ଦାସଙ୍କ ନାମ ଭାରତ ନୃତ୍ୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ ।

ଗୁରୁଶ୍ରୀ ମାଗୁଣୀ ଚରଣ ଦାସଙ୍କ ପିତୃପୁରୁଷ ଶ୍ରୀଚୈତନ୍ୟଙ୍କ ଅନୁଗାମୀ ହୋଇ ଆସିଥିବା ପାରିବାରିକ ତଥ୍ୟରୁ ଜଣାପଡେ । ଐତିହ୍ୟ ରଘୁରାଜପୁରରେ ଥିବା ଗୋପୀନାଥ ମନ୍ଦିର ଏବଂ ଦଶଭୁଜା ମନ୍ଦିର ସେମାନଙ୍କ ପରିବାର ଦ୍ୱାରା ପରିଚାଳିତ ଅଟେ । ଉକ୍ତ ପରିବାରର ସଦସ୍ୟ ସ୍ୱର୍ଗତ କୁଳମଣୀ ଦାସ ଏବଂ ପତ୍ନୀ ଦମୟନ୍ତୀ ଦାସଙ୍କ ଜ୍ୟେଷ୍ଠପୁତ୍ର ଭାବେ ଅଗଷ୍ଟ ମାସ ପାଞ୍ଚ ତାରିଖ ଉଣେଇଶ ଶହ ଏକୋଇଶ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଚାଟଶାଳୀରେ ଅଧ୍ୟୟନ ସମୟରୁ ସେ ଥିଲେ କଳାସକ୍ତ । ଚାଟଶାଳୀ ପାଠପଢା, ଗ୍ରାମ ଗୋପୀନାଥ ମନ୍ଦିର ପାର୍ଶ୍ୱରେ ହେବାବେଳକୁ ନିକଟରେ ଗୋଟିପୁଅ ଆଖଡାରେ ନୃତ୍ୟ ଶିକ୍ଷା ମଧ ଦିଆଯାଉଥିଲା । ଏଣୁ ବାଳୁତ ଅବସ୍ଥାରୁ ମାଗୁଣୀ ଗୋଟିପୁଅ ନୃତ୍ୟ ଶିକ୍ଷା ସହ ନୃତ୍ୟରେ ବ୍ୟବହୃତ ମର୍ଦ୍ଦଳ (ପଖଉଜ), ହାରମୋନିୟମ୍, କରତାଳ ଆଦି ବାଦ୍ୟଯନ୍ତ୍ର ଗୁରୁ ପଦ୍ମନାଭ ମିଶ୍ରଙ୍କଠାରୁ ଶିକ୍ଷା କରିଥିଲେ । ସେସମୟରେ ରଘୁରାଜପୁରରେ ଗୋଟିଏ ଗୋଟିପୁଅ ଦଳ ଏବଂ ଗୋଟିଏ ଗୀତିନାଟ୍ୟ ଯାତ୍ରାଦଳ ଥାଏ । ନୃତ୍ୟ ଓ ବାଦନ କଳାରେ ବିଚକ୍ଷଣ ମାଗୁଣୀ ଦାସ ସମସାମୟିକ ଗୋଟିପୁଅ ନୃତ୍ୟଶିଳ୍ପୀ କେଳୁଚରଣ ମହାପାତ୍ରଙ୍କ ସହ ପୁରୀଠାରୁ ପରିଚାଳିତ ହେଉଥିବା ସ୍ୱର୍ଗତ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଲୀଳା ଦଳରେ ଯୋଗ ଦିଅନ୍ତି ।

ଉଲ୍ଲେଖଯୋଗ୍ୟ ଯେ ମୋହନ ସୁନ୍ଦର ଦେବଙ୍କ ରାସଲୀଳାରେ ଯୋଗ ଦେଉଥିବା ପ୍ରାୟ ସମସ୍ତ କଳାକାର ରଘୁରାଜପୁର ଗ୍ରାମର ଅଟନ୍ତି । ମାଗୁଣୀ ଦାସ ଉକ୍ତ ରାସଲୀଳାରେ ନାରୀ ଭୂମିକାରେ ଅଭିନୟ କରୁଥିଲେ । ସମୟକ୍ରମେ ରାସଦଳର ଅନ୍ତ ଘଟେ । ଯୁବକ ମାଗୁଣୀ ଦାସ ଠାକୁର ଶ୍ରୀ ଅଭିରାମ ପରମହଂସଙ୍କ ଶିଷ୍ୟତ୍ୱ ଗ୍ରହଣ ପରେ ତାଙ୍କରି ଉପଦେଶରେ ନିଜେ ଏକ ଗୋଟିପୁଅ ଦଳ ଗଠନ କଲେ ଏବଂ ଅବଲୁପ୍ତ ହେବାକୁ ଥିବା ନୃତ୍ୟକଳାକୁ ନୂତନ ଜୀବନ୍ୟାସ ଦେଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ସେତିକି ନୁହେଁ ମାଗୁଣୀ ଦାସ ଗୋଟିପୁଅ ନୃତ୍ୟ ଶିକ୍ଷା ଦେବା ପାଇଁ ଆର୍ଥିକ ଅନୁନ୍ନତ ପରିବାର ପିଲାଙ୍କୁ ନିଜ ଅନୁଷ୍ଠାନରେ ନୃତ୍ୟ ଶିକ୍ଷା ଦାନ ସହ ସରକାରୀ ବିଦ୍ୟାଳୟରେ ପଠନରେ ସହାୟକ ହୋଇଥିଲେ । ଫଳରେ ଅନେକ ଗରିବ ପିଲା ଗୋଟିପୁଅ ନୃତ୍ୟ ଶିକ୍ଷା ସହ ପାଠପଢି ମଣିଷ ହୋଇଛନ୍ତି । ଏଥିପାଇଁ ହେଉଥିବା ବ୍ୟୟ ଭାର ସେ ନିଜେ ଭରଣା କରୁଥିଲେ । ୧୯୪୧–୪୨ ମସିହାରୁ ଗୋଟିପୁଅ ଦଳ ଗଠନ କରି ଏହାକୁ ସୁଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଧରି ବଞ୍ଚାଇ ରଖିବା ଏକ ଅସାଧାରଣ କାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିପାଇଁ ଗୁରୁ ନିଜର ସମସ୍ତ ପୈତୃକ ସମ୍ପତ୍ତିକୁ ହସି ହସି ଗୋଟିପୁଅ ନୃତ୍ୟଦଳ ପାଇଁ ଅକାତରେ ବିକ୍ରୟ କରିଛନ୍ତି କିନ୍ତୁ ନିଜ ଲକ୍ଷ୍ୟପଥରୁ କେବେ କକ୍ଷଚ୍ୟୁତ ହୋଇ ନାହାଁନ୍ତି ।

ଦଶଭୁଜା ଗୋଟିପୁଅ ଓଡ଼ିଶୀ ନୃତ୍ୟ ପରିଷଦ ଗଠନ କରି ଦୀର୍ଘ ସତୁରି ବର୍ଷରୁ ଊର୍ଦ୍ଧ୍ୱ ସମୟ କୌଣସି ବାହ୍ୟ ଆର୍ଥିକ ସାହାଯ୍ୟ ବ୍ୟତିରେକ ଯେଉଁଭଳି ଭାବେ ସେ ଶହ ଶହ ଗୋଟିପୁଅ ନୃତ୍ୟଶିଳ୍ପୀ ସୃଷ୍ଟି କରିଛନ୍ତି, ଆଜି ଦିନରେ ତାହା କଳ୍ପନାତୀତ ।

୧୯୪୧ ମସିହାରେ ନିଜ ହାତରେ ଗଢିଥିବା ଏହି ଅନୁଷ୍ଠାନ ଏକ ଅଣ ସରକାରୀ ଅନୁଷ୍ଠାନ ଭାବେ ପଞ୍ଜିକରଣ ହୁଏ ୧୯୮୪ ମସିହାରେ । ପୃଷ୍ଠପୋଷକତା ହରାଇଥିବା ଏହି ପାରମ୍ପରିକ ନୃତ୍ୟକଳାକୁ ପୁଣି ଥରେ ଲୋକଲୋଚନକୁ ଆଣି ବିଶ୍ୱବ୍ୟାପୀ ପରିଚୟ ଦେବାରେ ମାଗୁଣି ଦାସଙ୍କ ଅବଦାନ

ଅତୁଳନୀୟ ଅଟେ । ଏହି ନୃତ୍ୟ ପରିବେଷଣରେ ଭରି ରହିଛି ଓଡ଼ିଶାର ପ୍ରାଚୀନ କଳାତ୍ମକ ରଚନା । ପ୍ରଥମରୁ ଉଲ୍ଲେଖ କରିଛି ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଗୀତଗୋବିନ୍ଦ ପ୍ରିୟ । ଏଣୁ ମାହାରୀ ନୃତ୍ୟରେ ଗୀତଗୋବିନ୍ଦ ପରିବେଷଣ ହେଉଥିବା ବେଳେ ଗୋଟିପୁଅ ନୃତ୍ୟରେ ମଧ୍ୟ ଗୀତଗୋବିନ୍ଦ ପରିବେଷଣ ହେଉଥିଲା । ଏତଦ୍‌ବ୍ୟତୀତ ଗୋଟିପୁଅ ନୃତ୍ୟ ପରିବେଷଣ ଓ ଏହାର ବାଦ୍ୟ ସଙ୍ଗୀତ ଆଦି ଥିଲା ପରମ୍ପରା ପରିପୂର୍ଣ୍ଣ । ଗୋଟିପୁଅରେ ବାଦ୍ୟ ନୃତ୍ୟ ସଙ୍ଗୀତମାନଙ୍କର ରଚୟିତା ଯଥାକ୍ରମେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, କବି ଦିନକୃଷ୍ଣ, ବନମାଳି ଆଦି ଥିବା ସମୟରେ ବାଦ୍ୟଯନ୍ତ୍ର ଭାବେ ମର୍ଦ୍ଦଳ ଓ ହାରମୋନିୟମ୍‌ର ବ୍ୟବହାର ରହିଥିଲା । ନୃତ୍ୟରେ ବ୍ୟବହୃତ ତାଳ ଯଥାକ୍ରମେ ଏକତାଳ, ରୂପକ, ଝୁଲା, ତ୍ରିପଟା, ଝମ୍ପା, କୁଡୁକ, ଆଡତାଳି, ଯତି ଏବଂ ଆଦିତାଳ ପ୍ରଭୃତି ଚାରିମାତ୍ରା ତାଳଠାରୁ ଷୋଳମାତ୍ରା ତାଳ ପର୍ଯ୍ୟନ୍ତ ବ୍ୟବହାର ହେଉଥିଲା । ଏହି ନବତାଳ ପରବର୍ତ୍ତୀ ପର୍ଯ୍ୟାୟରେ ଶାସ୍ତ୍ରୀୟ ମାନ୍ୟତା ପାଇଥିବା ଓଡ଼ିଶୀ ନୃତ୍ୟରେ ଏହାର ବ୍ୟବହାର ଦେଖିବାକୁ ମିଳେ । ଭଜନ, ଜଣାଣ, ଛାନ୍ଦ, ଚମ୍ପୂ ଗାୟନ ଥିଲା ସଙ୍ଗୀତର ଅଂଶ ବିଶେଷ ।

ବନ୍ଧନୃତ୍ୟ ହେଉଛି ଗୋଟିପୁଅ ନୃତ୍ୟର ସ୍ୱତନ୍ତ୍ର ପରିଚୟ । ବାଳ ନୃତ୍ୟ ଶିଳ୍ପୀମାନେ ଏହି ବନ୍ଧ ନୃତ୍ୟକୁ ନାଚିବା ପାଇଁ ପ୍ରଭୂତ କଷ୍ଟ ସ୍ୱୀକାର କରି ଏହି ନୃତ୍ୟକଳାକୁ ସାଧନ କରନ୍ତି । ବାଳ କଳାକାରଙ୍କୁ ମୁଖ୍ୟତଃ ବନ୍ଧନୃତ୍ୟ ପାଇଁ ବାରଗୋଟି ପ୍ରଧାନ କ୍ରିୟା ସାଧନ କରିବାକୁ ପଡେ । ସେଗୁଡିକ ହେଲା – ଚିରା, ଲହୁଣିଆ ବା ଅଣ୍ଟାଭଙ୍ଗା, ଏକପାଦ, ବୁଲା, ଶୂନ୍ୟ, ଲେଉଟିଆ, ଶିର, ପଦ୍ମାସନ, ହଂସ, ନୌକା, ମୟୂର ଓ ଶଗଡି । ନିଜ ଶରୀରକୁ ନୃତ୍ୟଶିଳ୍ପୀ ଏହିସବୁ ଶରୀରଚର୍ଯ୍ୟା ଦ୍ୱାରା ଗଢି ତୋଳିଥାଏ । ଅଭିନୟ ଏହାର ଅଙ୍ଗହାର ଅଟେ । ଏକାଧିକ ଗୋଟିପୁଅ ନୃତ୍ୟଶିଳ୍ପୀ ନୃତ୍ୟ ପରିବେଷଣ ଆରମ୍ଭ ହେବା ପରେ ଅନ୍ୟାନ୍ୟ ବିଶେଷ ଭଙ୍ଗୀ ଏବଂ ଶୈଳୀ ଏଥିରେ ସଂଯୁକ୍ତ ହୋଇ ଦର୍ଶକଙ୍କ ଚିତ୍ତ ବିନୋଦନ କରିଥାଏ ।

ପଦ୍ମଶ୍ରୀ ଗୁରୁ ମାଗୁଣୀ ଦାସଙ୍କ ଜୀବନବ୍ୟାପୀ ସାଧନାର ଫଳ ଭାବେ ତାଙ୍କରି ଦ୍ୱାରା ପ୍ରତିଷ୍ଠିତ ଦଶଭୁଜା ଗୋଟିପୁଅ ଓଡ଼ିଶୀ ନୃତ୍ୟ ପରିଷଦ ୧୯୮୪ ମସିହାରେ ପ୍ରଥମ ଥର ପାଇଁ ଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା 'ଅଙ୍ଗହାର ଉତ୍ସବ'ରେ ନୃତ୍ୟ ପରିବେଷଣର ସୁଯୋଗ ପାଆନ୍ତି । ଏହି ନୃତ୍ୟଶୈଳୀ ଏବଂ ବାଳ ଗୋଟିପୁଅ ନୃତ୍ୟ ଶିଳ୍ପୀମାନଙ୍କର ବନ୍ଧ ନୃତ୍ୟ ଦେଖି ଦର୍ଶକ ବିମୋହିତ ହେବା ସହ ଦେଶବ୍ୟାପୀ ବିଶିଷ୍ଟ ନୃତ୍ୟଶିଳ୍ପୀମାନଙ୍କ ଦୃଷ୍ଟି ଆକର୍ଷଣ କରେ ।

ଏହା ପରେ ଗୋଟିପୁଅ ଦଳ କେବଳ ଭାରତରେ ଅନୁଷ୍ଠିତ ହେଉଥିବା ନୃତ୍ୟ ଉତ୍ସବ ନୁହେଁ, ବିଦେଶରେ ମଧ୍ୟ ଏହି ନୃତ୍ୟ ପରିବେଷଣରେ ଆଶାତୀତ ସଫଳତା ପାଏ । ଭାରତର ପ୍ରମୁଖ ନୃତ୍ୟୋତ୍ସବ–କାଳିଦାସ ସମାରୋହ ମଧ୍ୟପ୍ରଦେଶ, ଗୁଜୁରାଟର ନବରାତ୍ରି ଉତ୍ସବ, ଶିଳ୍ପ ପ୍ରଦର୍ଶନୀ, ପ୍ରଗତି ମଇଦାନ, ଦିଲ୍ଲୀ, ଖଜୁରାହ ନୃତ୍ୟ ଉତ୍ସବ, ସୂରଜକୁଣ୍ଡ ମେଳା, ହରିୟାନା, ବୈଷ୍ଣୋଦେବୀ ନବରାତ୍ରି ଉତ୍ସବ ଏବଂ ମହାବଳୀ ମସ୍ତକ ଅଭିଷେକ କର୍ଣ୍ଣାଟକ ଆଦି ରାଜ୍ୟରେ ନୃତ୍ୟ ପରିବେଷଣ କରି ନୃତ୍ୟ ଦ୍ୱାରା ଦର୍ଶକଙ୍କୁ ବିମୋହିତ କରେ । ସମସ୍ତେ ଏହି ଛୋଟ ଛୋଟ ବାଳକମାନଙ୍କ ବନ୍ଧନୃତ୍ୟ ଏବଂ ପ୍ରତିଭା ଦେଖି ଆଶ୍ଚର୍ଯ୍ୟ ପ୍ରକଟ କରନ୍ତି, ଯାହା ଉତ୍ସବ ପରେ ବିଭିନ୍ନ ସମ୍ବାଦପତ୍ର ପୃଷ୍ଠା ମଣ୍ଡନ କରି ଗୋଟିପୁଅ ନୃତ୍ୟର ଭୂୟସୀ ପ୍ରଶଂସା ସହ ବାଳ କଳାକାରଙ୍କ ନୃତ୍ୟରେ ଅଭିଭୂତ ହୋଇଥିବା କଥା ପ୍ରକାଶ ପାଏ, ଯାହା ନୃତ୍ୟଦଳର ଆତ୍ମବିଶ୍ୱାସକୁ ସୁଦୃଢ଼ କରେ । ଆଲୋଚକ ଏବଂ ସମାଲୋଚକ ନୃତ୍ୟ ଦେଖି ନୃତ୍ୟର ପ୍ରଶଂସା ସହ ଏହାର ସମସ୍ତ ଶ୍ରେୟ ଗୁରୁ ଶ୍ରୀ ମାଗୁଣୀ ଚରଣ ଦାସଙ୍କୁ ଦିଅନ୍ତି । ପରବର୍ତ୍ତୀ ସମୟରେ ଏହି ନୃତ୍ୟଦଳ ଭାରତର କେବଳ କାଶ୍ମୀର ଏବଂ ନାଗାଲାଣ୍ଡ ରାଜ୍ୟ ବ୍ୟତୀତ ଅନ୍ୟ ସମସ୍ତ ରାଜ୍ୟରେ ଗୋଟିପୁଅ ନୃତ୍ୟ ପ୍ରଦର୍ଶନ କରି କୋଟି କୋଟି ଭାରତୀୟ ଦର୍ଶକଙ୍କ ମନ ମୋହିତ କରିଛନ୍ତି । ସବୁ ସ୍ଥାନରେ ଦର୍ଶକ ସମାଜ ବାଳ କଳାକାରଙ୍କ ନୃତ୍ୟ ଦେଖିବା ପରେ ବାଳକମାନଙ୍କୁ ସ୍ନେହ ଶ୍ରଦ୍ଧା ପ୍ରଦର୍ଶନରୁ ଜଣାପଡେ, ଦର୍ଶକ ଏହି ଶିଶୁ କଳାକାରଙ୍କ କଳା ନୈପୁଣ୍ୟ ଦେଖି କିଭଳି ବିସ୍ମୟାଭୂତ ଏବଂ ଆହ୍ଲାଦିତ । ଭାରତ ଭୂଖଣ୍ଡ ବ୍ୟତୀତ ଏହି ଐତିହ୍ୟସମ୍ପନ୍ନ ରଘୁରାଜପୁର ଦଶଭୁଜା ଗୋଟିପୁଅ ନୃତ୍ୟ ଦଳ ଗୁରୁଶ୍ରୀ ମାଗୁଣୀ ଦାସଙ୍କ ସହିତ ପ୍ୟାରିସ୍, ଜାପାନ, ସ୍କଟଲାଣ୍ଡ,

ଜର୍ମାନୀ, ୱାଶିଂଟନ୍ ଆଦି ସମୂହରେ ନୃତ୍ୟ ପ୍ରଦର୍ଶନ କରି ଅନେକ ପ୍ରଶଂସା ସାଉଁଟିଛନ୍ତି । ଗୁରୁଶ୍ରୀ ମାଗୁଣୀ ଦାସଙ୍କ ସେବା, ତ୍ୟାଗ ଏବଂ ଗୋଟିପୁଅ ନୃତ୍ୟଶୈଳୀର ନିରୀକ୍ଷକ ଓ ସଂରକ୍ଷକଭାବେ ଜୀବନ ସଂଘର୍ଷ ଏବଂ ବଳିଦାନ ସମ୍ବନ୍ଧରେ ଜାଣି ସାରିବା ପରେ ଭାରତର ଅନେକ ଶୀର୍ଷ ସ୍ତରୀୟ ନୃତ୍ୟଶିଳ୍ପୀ ଏହି ପରମଗୁରୁଙ୍କ ସାନ୍ନିଧ୍ୟ ପାଇବାକୁ ରଘୁରାଜପୁର ଆସି ତାଙ୍କ ଆବାସିକ କର୍ମଶାଳାରେ କୃତଜ୍ଞତା ଜ୍ଞାପନ କରିଯାଇଛନ୍ତି । ସେମାନଙ୍କ ମଧ୍ୟରୁ କଥକ ନୃତ୍ୟଗୁରୁ ଗିରିଧାରୀ ମହାରାଜ, ପଦ୍ମଭୂଷଣ ତିଜନ ବାଇ, ପ୍ରତିମା ବେଦୀ, ସୋନାଲ ମାନସିଂ, ମାଧବୀ ମୁଦଗଲ୍, ଗାଜି ଖାଁ, ରାଜସ୍ଥାନ, ରଞ୍ଜନ ଗୋହର, କବିତା ଦ୍ୱିବେଦୀ, ସୁନିଲ୍ କୋଠାରୀ, ରାଜୀବ ସେଠୀ ଓ ଇଲିଏନା ଚିତାରିସ୍ତି ଅନ୍ୟତମ ଅଟନ୍ତି ।

ଜୀବନବ୍ୟାପୀ ସାଧନା ଏବଂ ଓଡ଼ିଶାର ପାରମ୍ପରିକ ଗୋଟିପୁଅ ନୃତ୍ୟର ଦୀର୍ଘ ବର୍ଷ ଧରି ପରିଚୟକୁ ଉଜ୍ଜୀବିତ କରି ରଖିଥିବା ଏହି ମହାନ୍ ଗୋଟିପୁଅ ନୃତ୍ୟଗୁରୁଙ୍କୁ ୨୦୦୪ ମସିହାରେ ଭାରତ ସରକାର 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରନ୍ତି । ଏହି ବୟୋବୃଦ୍ଧ କଳାକାର ଗୋଟିପୁଅ ନୃତ୍ୟର ସଂରକ୍ଷକ ଭାବେ ଅନେକ ସ୍ଥାନରେ ପୁରସ୍କୃତ ମଧ୍ୟ ହୋଇଛନ୍ତି । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, କାଳିଦାସ ସମ୍ମାନ, ତୁଳସୀ ସମ୍ମାନ, ବିଶ୍ୱ ବରିଷ୍ଠ ନାଗରିକ ସମ୍ମାନ, ଗାନ୍ଧାର ମହାବିଦ୍ୟାଳୟ ମଣ୍ଡଳ ଏବଂ ଅଂଗାର ନୃତ୍ୟ ମଣ୍ଡଳ ଆଦି ବିଭିନ୍ନ ସ୍ଥାନରେ ସମ୍ମାନିତ ହୋଇଛନ୍ତି । ଗୋଟିପୁଅ ନୃତ୍ୟର ଶେଷ ଏକତୁଡିଶାଳ ଭାବେ ରଘୁରାଜପୁର ଆଜି ବିଶ୍ୱବିଦିତ । ଜୀବନବ୍ୟାପୀ ସାଧନା ଓ ସଂଘର୍ଷ ସହ ଜଡିତ ଥାଇ ଶେଷରେ ଏହି ପରମଗୁରୁଙ୍କ ଦେହାବସାନ ଘଟେ ଡିସେମ୍ବର ୪ ତାରିଖ ୨୦୦୮ ମସିହାରେ ।

ତାଙ୍କ ଆବର୍ତ୍ତମାନରେ ଦଶଭୁଜା ଗୋଟିପୁଅ ଅନୁଷ୍ଠାନ ବେସାହାରା ହୋଇ ଆଧୁନିକ ସଂସ୍କୃତି ଚାପ ମଧ୍ୟରେ ନିଜକୁ ବଞ୍ଚାଇ ରଖିବାକୁ ସଂଘର୍ଷ କରୁଛି । ତାଙ୍କ ଅନ୍ତେ ଜ୍ୟେଷ୍ଠପୁତ୍ର ଶ୍ରୀଯୁକ୍ତ ସେବେନ୍ଦ୍ର ଦାସ ଏବଂ ସୁଯୋଗ୍ୟ ନାତି ଏହି ନୃତ୍ୟ ପ୍ରକ୍ରିୟାକୁ ବଞ୍ଚାଇ ରଖିବା ପାଇଁ ସଂଘର୍ଷରତ । କିନ୍ତୁ ଦୁଃଖ ଏବଂ ପରିତାପର ବିଷୟ ଓଡ଼ିଶା ରାଜ୍ୟ ସରକାର ଓଡ଼ିଶାର ଏହି ପାରମ୍ପରିକ କଳାକୁ ବଞ୍ଚାଇ ରଖିବାକୁ ବିମାତାର ସ୍ଥାନ ଗ୍ରହଣ କରିଛନ୍ତି । କେନ୍ଦ୍ର ସରକାର ଏବଂ ରାଜ୍ୟ ସରକାର ଏହି ନୃତ୍ୟ ଧାରାକୁ ବଞ୍ଚାଇ ରଖିବାକୁ ଅଗ୍ରସର ନ ହେଲେ, ଦିନ ଆସିବ ଏହି ପାରମ୍ପରିକ ନୃତ୍ୟ କଳା ହଜିଯିବ, ଏଥିରେ ସନ୍ଦେହ ନାହିଁ । ଯେତେଦିନ ରଘୁରାଜପୁରରେ ଗୋଟିପୁଅ ନୃତ୍ୟ ବଞ୍ଚିଥିବ, ପଦ୍ମଶ୍ରୀ ମାଗୁଣୀ ଦାସଙ୍କ ଏହି ନୃତ୍ୟ ପାଇଁ ବଳିଦାନ କଥା ସବୁରି ମନରେ ଆସୁଥିବ ।

ଗବେଷକ, ଓଡ଼ିଶା ସଂସ୍କୃତି



# ଶକ୍ତି ସ୍ୱରୂପିଣୀ ମା’ କାଳୀ

ଅଧ୍ୟାପକ ରବୀନ୍ଦ୍ର କୁମାର ବେହୁରିଆ

ଦେବୀ ଆରାଧନା ବା ଶକ୍ତି ସାଧନା ଖାଲି ଭାରତବର୍ଷ ନୁହେଁ, ସମଗ୍ର ବିଶ୍ୱରେ ଏକ ପ୍ରଭାବଶାଳୀ ପରଂପରା । ସିନ୍ଧୁ ସଭ୍ୟତାର ମାଟିତଳୁ ମିଳିଥିବା ମାତୃକା ମୂର୍ତ୍ତି ସହିତ ଯୋଗାସନୋପବିଷ୍ଟ – ପଶୁ ପରିବେଷ୍ଟିତ ପଶୁପତି ମୂର୍ତ୍ତି– ଗବେଷକମାନଙ୍କ ମତରେ ଭାରତୀୟ ଶକ୍ତି ତତ୍ତ୍ୱ ଆପାତତଃ ପ୍ରାମାଣିକ ପରଂପରା । ଶବର ସଭ୍ୟତାର ଶାକମ୍ଭରୀ ପର୍ଯ୍ୟନ୍ତ ସକଳ ନାମବାଚକ ଦେବୀ ତତ୍ତ୍ୱ ମାତୃକା ଶକ୍ତିର ସୃଷ୍ଟି ଓ ସଂହାର ପ୍ରକ୍ରିୟାକୁ ହିଁ କେନ୍ଦ୍ରକରି ପ୍ରତିଷ୍ଠିତ ଓ କାଳବକ୍ଷରେ ପ୍ରସାରିତ । ଏଣୁ କୁହାଯାଏ, ଶତରୂପେଶତନାମେ ଶତରୂପା ଅପରୂପା । ଆର୍ଯ୍ୟ ପୁରାଣଜନିତ ଦକ୍ଷ ଯଜ୍ଞ ଭଗ୍ନଜନିତ କ୍ରାନ୍ତିକାରୀ ଆର୍ଯ୍ୟଅନାର୍ଯ୍ୟ ଅଥବା ଦେବାସୁର ଆଚାର ବିଚାରଜନିତ ଦେବତତ୍ତ୍ୱ ସେହି ମାତୃକା ଶକ୍ତିକୁ କେନ୍ଦ୍ରକରି ହିଁ ପ୍ରଚଳିତ – ଚଳମାନ ଧାରା । ବିଷ୍ଣୁଙ୍କ ସୁଦର୍ଶନ ଚକ୍ରରେ ଖଣ୍ଡିତ ଶିବ ପତ୍ନୀ ସତୀଙ୍କର ଦେହାବଶେଷ ଧାରଣ କରି ଭାରତବର୍ଷରେ ୫୧ ଗୋଟି ମହାଶକ୍ତି ପୀଠ ଓ



୨୬ ଗୋଟି ଶକ୍ତିଙ୍କର ଉପପୀଠର ଅବତାରଣା ଆର୍ଯ୍ୟମାନସର ଚିନ୍ତନ ପ୍ରକ୍ରିୟା ମାତ୍ର । ବର୍ତ୍ତମାନ ପର୍ଯ୍ୟନ୍ତ ଆବିଷ୍କୃତ– ଆରାଧିତ ସମଗ୍ର ଭାରତବର୍ଷରେ ଲକ୍ଷାଧିକ – ଶକ୍ତିପୀଠ – ବ୍ରହ୍ମା – ବିଷ୍ଣୁ – ମହେଶ୍ୱର କିମ୍ବା ବୌଦ୍ଧ ବଜ୍ରଯାନୀ ଧର୍ମ ଦର୍ଶନରେ ଗ୍ରଥିତ ହୋଇ ମାତୃକା ଶକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଆସୁଛନ୍ତି ।

ତତ୍ତ୍ୱବିଦ୍‌ମାନଙ୍କ ମତରେ ମାତୃକା ଉପାସନା ଏକମାତ୍ର ପରଂବ୍ରହ୍ମଙ୍କର ଚିତ୍ ଶକ୍ତିକୁ ନେଇ ପ୍ରସାରଣଶୀଳ । ଏଣୁ କୁହାଯାଇଛି –

ଏକୈବ ଶକ୍ତି ପରମେଶ୍ୱରସ୍ୟ
ବିବିଧା ବଦନ୍ତି ବ୍ୟବହାର କାଳେ
ଭୋଗେ ଭବାନୀ – ପୁରୁଷେଷୁ ଲକ୍ଷ୍ମୀ
ଶକ୍ତେ ଚ ଦୁର୍ଗା – ସଂହାରେ ତୁ କାଳୀ ।

ବେଦରେ ମହାକାଳୀଙ୍କର ଆରାଧନା ନିମିତ୍ତ ଦେବୀସୂକ୍ତ, କାଳରାତ୍ରିସୂକ୍ତ ଓ ଶ୍ରୀସୂକ୍ତମାନ ରହିଅଛି ।

ଋଗ୍‌ବେଦରେ ବାଗ୍‌ଦେବୀ ସୂକ୍ତ ହିଁ ବୈଦିକ ସାହିତ୍ୟରେ ଶାକ୍ତ ଭାବନାର ମୂଳ ଉତ୍ସ । ପରବର୍ତ୍ତୀ ଉପନିଷଦ ଓ ପୁରାଣରେ ଶାକ୍ତ ସାହିତ୍ୟର ପ୍ରଶଂସା କରାଯାଇଛି । ଭାରତର ସୁ–ପ୍ରାଚୀନ ସାହିତ୍ୟ ଋଗ୍‌ବେଦରେ ଯେପରି ଇନ୍ଦ୍ର ଓ ବରୁଣ ପ୍ରଭୃତି ଦେବତାଙ୍କର ପରିଚୟ ମିଳିଥାଏ, ସେହିପରି ବୈଦିକ ଦେବୀ କାଳୀ, ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ ପ୍ରଭୃତି ଦେବୀଙ୍କର ଦେଖିବାକୁ ମିଳିଥାଏ । ଏପରିକି ଜଗତର କର୍ତ୍ତା ଓ କାରଣ ସ୍ୱରୂପ ଈଶ୍ୱରଙ୍କୁ ଜଗଦମ୍ବାଭାବେ ଉପାସନା କରିବା ପ୍ରଣାଳୀ ଭାରତର ଶକ୍ତି ଉପାସନାର ପରଂପରା । ଏହି ପରଂପରାକୁ ବୃଦ୍ଧିମନ୍ତ କରିଛନ୍ତି ମା' ଦକ୍ଷିଣ କାଳୀଙ୍କର ଭକ୍ତି ଉପାସନାର ନିରଳସ ସାଧକଗୁଚ୍ଛ । ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଦେବ, ସ୍ୱାମୀ ବିବେକାନନ୍ଦ ପ୍ରକୃତ ପକ୍ଷରେ କହିବାକୁ ଗଲେ ଋଗ୍‌ବେଦଠାରୁ ଆରମ୍ଭ କରି ବାଣଭଟ୍ଟଙ୍କର 'ଚଣ୍ଡୀଶତକ' ଓ ଗୁପ୍ତ ଯୁଗରେ ସଂକଳିତ 'ସପ୍ତଶତୀ ଚଣ୍ଡୀ'ରେ ଦେବ ଅପେକ୍ଷା ଦେବୀଙ୍କର ପ୍ରକାଶ ଓ ପ୍ରଭାବର ଛାୟା ଅଧିକ ଦେଖିବାକୁ ମିଳିଥାଏ । ସପ୍ତଶତୀ ଚଣ୍ଡୀରେ ବିଶ୍ୱମାତା ମହିଷାସୁର ମର୍ଦ୍ଦିନୀ ଦୁର୍ଗାଙ୍କ କଥା ଉଲ୍ଲେଖ କରାଯାଇଛି । ସପ୍ତଶତୀ ଚଣ୍ଡୀର ଅଧିଷ୍ଠାତ୍ରୀ ଦେବୀ ଶ୍ରୀଚଣ୍ଡିକା କାଳୀ ତ୍ରିଶକ୍ତି ଯଥା : ମହାକାଳୀ, ମହାସରସ୍ୱତୀ ଓ ମହାଲକ୍ଷ୍ମୀଙ୍କର ସମନ୍ୱୟ ଅଟନ୍ତି ।

ଶକ୍ତିଙ୍କର ମହିମା ପ୍ରକଟନ କରିବାକୁ ଯାଇ ଋଗ୍‌ବେଦୀୟ ଦେବୀ ସୂକ୍ତ କହନ୍ତି –

ଅହଂ ରୁଦ୍ରେଭି – ର୍ବସୁଭିଶ୍ଚରାମି
ଆହମାଦି ତୈ ରତ – ବିଶ୍ୱ ଦେବୈଃ
ଅହଂ ମିତ୍ରାବରୁଣୋଭା ବିଭର୍ମି
ଅହମିନ୍ଦ୍ରାଗ୍ନି – ଅହଂ ଅଶ୍ୱିନୋଭା
ଅହଂ ସୋମ ମୋହନ ସଂ ବିଭର୍ମି
ଅହଂ ତ୍ୱଷ୍ଟାର ମୂତ୍ରପକ୍ଷଣଂ ଭଗମ୍....

ଅର୍ଥାତ୍ – ଶକ୍ତି ଦେବୀହିଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ପବନ– ତପନ–ଯମ–ଅଗ୍ନି – ବରୁଣ – ନୈରତ – କୁବେର – ଗ୍ରହିବସୁ – ଶକ୍ତି ବିନା ଦେବତାମାନଙ୍କର ଗତ୍ୟନ୍ତର ନାହିଁ ।

ବ୍ୟାସ ରଚିତ, ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଶ୍ରୀ ଶ୍ରୀ ଚଣ୍ଡୀରେ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କୁ ଦୁର୍ଗାଙ୍କର ଭିନ୍ନ ଭିନ୍ନ ଦିଗରେ ଉପାସନା କରାଯାଇଛି । ଯଥା:

ଜୟନ୍ତୀ ମଙ୍ଗଳାକାଳୀ ଭଦ୍ରାକାଳୀ କପାଳିନୀ
ଦୁର୍ଗେ ଶିବେ କ୍ଷମେଧାତ୍ରୀ ସ୍ୱାହାସ୍ୱାଧା ନମସ୍ତୁତେ ।

ଅତଏବ ଆମ ପୁରାଣ ପରଂପରାରେ ୩୩ ଗୋଟି ଦେବାଦେବୀ ତେତିଶି କୋଟି ହେବା ବିଚିତନ୍ତ୍ରା – କେଉଁଠି ?

ଏହି ଦୁର୍ଗା–କାଳୀ–ଭବାନୀ ପ୍ରଭୃତି ମାତୃକାଶକ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ଶକ୍ତି ବୋଲି ଆମର ପୁରାଣ ପରଂପରା କହେ । ଏହା ସେମାନଙ୍କର ମାୟାଶକ୍ତି ବା କ୍ରିୟାଶକ୍ତି ବୋଲି ଆପ୍ତବାକ୍ୟ ଅଛି । ପୁଣି କେତେକ କ୍ଷେତ୍ରରେ ଏହି ଶକ୍ତି ସେମାନଙ୍କର ଜନ୍ମଦାତ୍ରୀ ବୋଲି ଚିତ୍ରଣ କରାଯାଇଛି । ଯଥା:–

ଯା ଦେବୀ ଶିବ କେଶବାଦୀ ଜନନୀ –
ଯା ବୈଜଗନ୍ ମୋହିନୀ
ଯା ବ୍ରହ୍ମା ପିପିଲିକାଦି ଜଗତାଂ ନନ୍ଦୈକ ସଂହାୟିନୀ
ଯା ପଞ୍ଚ ପ୍ରଣବ ଦ୍ୱିରେଫନଳିନୀ –
ଯାଚିତ୍ କଳା ମାଳିନୀ
ସା ପାତୁ ବର ଦେବତା ଭଗବତୀ ଶ୍ରୀରାଜି ରାଜେଶ୍ୱରୀ

ଉତ୍କଳୀୟ ଶାକ୍ତ ପରଂପରାରେ ଶକ୍ତି ପୂଜାର ମାହାତ୍ମ୍ୟ ଅତି ପ୍ରାଚୀନ । ଏହା ପାହାଡ଼ର ପାଦଦେଶରୁ ବା ଶୀର୍ଷରୁ ସାଗର ବେଳା ପର୍ଯ୍ୟନ୍ତ ପ୍ରସାରିତ ଓ ସଂପୂଜିତ । କାଳିକା ପୁରାଣ ବର୍ଣ୍ଣନା ଅନୁସାରେ –

ଓଡ୍ରାକ୍ଷଂ ପ୍ରଥମ ପୀଠଂ ଦ୍ୱିତୀୟ ଜାଳ ଶୈଳକମ୍
ତୃତୀୟ ପୂର୍ଣ୍ଣ ପୀଠଂତୁ କାମରୂପଂ ଚତୁଷ୍ଟକମ୍ ।

କିମ୍ବା ଶ୍ୟାମାଢନ ତରଙ୍ଗ ଅନୁସାରେ

ଉଡ୍ଡୀୟାନଃ ପୂର୍ଣ୍ଣଗିରି ଜଳନ୍ଧର ସ୍ତଥୈବଚ
କାମରୂପ ଇତି ଖ୍ୟାତଃ କୌଳପୀଠ ଚତୁଷ୍ଟୟମ୍ ।

ଏଥିରୁ ସ୍ୱଷ୍ଟ ଅନୁମିତ ହୁଏ ଯେ ଉତ୍କଳୀୟ କୌଳମାର୍ଗ ବିସ୍ମୃତ ଅତୀତର ଅପାଶୋରା କାହାଣୀ । ଏହି ଶକ୍ତି ସ୍ୱରୂପିଣୀ ଭୟଙ୍କରୀ କାଳୀଙ୍କର ବର୍ଣ୍ଣନା କରିବାକୁ ଯାଇ ସ୍ୱର୍ଗତଃ କୁମାର

କବି ଅରକ୍ଷିତ ପ୍ରଧାନ ସାଗରସ୍ରୋତ ପୁସ୍ତକରେ ଆଦ୍ୟ ଅକ୍ଷର କ- ଓ ପ୍ରାନ୍ତ ଅକ୍ଷର-ଳ-ଛନ୍ଦରେ ଗାଇଛନ୍ତି -

କାକର କର କିରଣ କୃପାକୃତି କଟାକ୍ଷରୁ ଢ଼ାଳି -
କାଳରାତ୍ରୀ କଲ୍ୟାଣୀ ମା' ଜନୟତ୍ରୀ କପାଳିନୀ କାଳୀ

ଏଠାରେ କାଳୀ କରାଳ ରୂପା ହେଲେବି କଲ୍ୟାଣୀ ମାତୃଶକ୍ତି ବରାଭୟ ଦାୟିନୀ ବା ମଙ୍ଗଳ ବିଧାତ୍ରୀ । କବି କଣ୍ଠରେ-

କାରିଣୀ ତାରିଣୀ ତାରା ସଂହାରିଣୀ -
ଶକ୍ତି ମା' କରାଳୀ
କାତ୍ୟାୟିନୀ ଜନନୀ ଗୋ -
ଜଗତରୁ ପୋଛିଦିଅ କାଳି ।

କାଳୀଙ୍କ ପ୍ରାଚୀନତା ସଂପର୍କରେ ଐତିହାସିକ ପାନିକର କହନ୍ତି - "Infact Siva and Kali and the worship of Lingam and other features of Popular Hinduism were well established in India long before the Aryan Came."

ସମୟ ବା କାଳ କାହାକୁ ଅପେକ୍ଷା କରେ ନାହିଁ । କାଳଃ ଜଗତ୍ ଭକ୍ଷକଃ ମାତ୍ର ବା ସେହି କାଳ ବା ସମୟକୁ ଯେଉଁ ଅନିର୍ବଚନୀୟ ମହାଶକ୍ତି ଆୟତ୍ତ କରିଥାଆନ୍ତି । ସେହି ମହାଶକ୍ତି ହିଁ କାଳୀ, ଯାହାଙ୍କର କରାଙ୍ଗୁଳି ନଖରୁ ଶ୍ରୀମନ୍ନ ନାରାୟଣଙ୍କର ଦଶ ଅବତାର ଉତ୍ପତ୍ତି । କରାଙ୍ଗୁଳି ନଖୋତ୍ପତ୍ତି ନାରାୟଣ ଦଶାକୃତି । (ଲଳିତା ସହସ୍ର ନାମ) । ସେ କାଳୀ ପୁଣି ପରମା ବୈଷ୍ଣବୀ । ସେ ଲିଙ୍ଗାତୀତା । ତେଣୁ ମହାଭାରତରେ କୁହାଯାଇଛି - ଭୂତାନି କାଳଃ ପଚତୀତି ବାର୍ତ୍ତା । ଗୀତାରେ ମଧ କୁହାଯାଇଛି- କାଳୋଽସ୍ମି ଲୋକକ୍ଷୟକୃତ୍ ଏହି କାଳର ଶକ୍ତି ହିଁ କାଳୀ ।

ଶ୍ରୀ ଅରବିନ୍ଦଙ୍କ ମତରେ- ବିଶ୍ୱରେ ଯେଉଁ ଚାରି ମହାଶକ୍ତି ବିଶ୍ୱର ସୃଷ୍ଟି କ୍ରିୟାକୁ ପରିଚାଳନା କରୁଛନ୍ତି, ସେମାନେ ହେଲେ ମାହେଶ୍ୱରୀ, ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ । ତାଙ୍କ ମତରେ ପ୍ରଥମ ବିଗ୍ରହ ହେଲା- ପ୍ରଶାନ୍ତ ବିଶାଳତା, ସର୍ବବ୍ୟାପକ ଜ୍ଞାନ, ସ୍ଥିର ମଙ୍ଗଳମୟତା, ଅଫୁରନ୍ତ କରୁଣା, ଅତୁଳ ଅଦ୍ୱିତୀୟ ମହିମା ଓ ସର୍ବଶାସକ ମହତ୍ତ୍ୱ ।

ଦ୍ୱିତୀୟ ବିଗ୍ରହ ହେଲା - ତାଙ୍କର ଭାସ୍ୱର ବୀର୍ଯ୍ୟ ଓ ଅଦମ୍ୟ ଆବେଗ । ତାଙ୍କର ଯୋଦ୍ଧାଭାବ, ତାଙ୍କର ସର୍ବଜୟୀ ସଂକଳ୍ପ, ତାଙ୍କର ପ୍ରଖର କ୍ଷିପ୍ରତା ଆଉ ପ୍ରଳୟଙ୍କର ପ୍ରତାପ । ତାଙ୍କର ତୃତୀୟ ବିଗ୍ରହଟି ହେଲା - କାନ୍ତିମୟ, ମାଧୁର୍ଯ୍ୟମୟ, ଆଶ୍ଚର୍ଯ୍ୟମୟ, ସେଥିରେ ଅଛି ମା'ଙ୍କର ସୌନ୍ଦର୍ଯ୍ୟ, ସୁସଂଗତି ଓ ସୁଚାରୁ ଛନ୍ଦର ପ୍ରଗାଢ଼ ରହସ୍ୟ, ବିଚିତ୍ର ସୁକୁମାର ବୈଭବ, ଦୁର୍ବାର ଆକର୍ଷଣ, ମୋହିନୀ । ମା'ଙ୍କର ଚତୁର୍ଥ ବିଗ୍ରହଟି ହେଲା- ଅନ୍ତରଂଗ ଗଭୀର ଜ୍ଞାନ ତଥା ନିପୁଣ ନିର୍ଦ୍ଦୋଷ କର୍ମ ଓ ସକଳ ବସ୍ତୁକୁ ପ୍ରଶାନ୍ତି ଓ ନିର୍ଦ୍ଦିଷ୍ଟ ପୂର୍ଣ୍ଣତା ପ୍ରଦାନର ଏକ ନିବିଡ଼ ଗଭୀର ସାମର୍ଥ୍ୟରେ ବିଭୂଷିତା । ଜ୍ଞାନ, ବଳ ସଙ୍ଗତି, ପୂର୍ଣ୍ଣତା - ଏହିସବୁ ହେଲା ସେମାନଙ୍କର ବିଭିନ୍ନ ଗୁଣ ।(ମା' - ୩୭ - ୩୮)

ଏକ ସ୍ୱତନ୍ତ୍ର ଅଦ୍ୱେତବାଦୀ ସଂପ୍ରଦାୟ କ୍ରମଦର୍ଶନ ନାମରେ ସୁପରିଚିତ । ଏହି ସଂପ୍ରଦାୟ ବହୁ ବର୍ଷ ପୂର୍ବେ କାଶ୍ମୀର ଦେଶରେ ପ୍ରଭାବ ବିସ୍ତାର କରିଥିଲେ । କ୍ରମ ଦର୍ଶନ ଅନୁସାରେ ପରମ ତତ୍ତ୍ୱଙ୍କୁ କାଳୀ ନାମରେ ଉପାସନା କରାଯାଇଥାଏ । କାଳୀ ଶବ୍ଦ କଲ୍ ଧାତୁରୁ ଅକର୍ତ୍ତରି ଚ କାରକେ ସଂଜ୍ଞାୟାମ୍ ପାଣିନି ସୂତ୍ରରେ 'ଘଞ୍' ପ୍ରତ୍ୟୟ ଏବଂ ସ୍ତ୍ରୀତ୍ୱବିବକ୍ଷାରେ ଙୀପ୍ ପ୍ରତ୍ୟୟରୁ ନିଷ୍ପନ୍ନ ହୋଇଅଛି । କଲ୍ ଧାତୁର ଅର୍ଥ ହେଉଛି ବିକ୍ଷେପ, ଗତି, ପ୍ରାପ୍ତି, ସଂଖ୍ୟାନ ତଥା ଶବ୍ଦ । ସୁତରାଂ ସ୍ୱୟଂ କାଳୀ କ୍ଷେପ, ଜ୍ଞାନ, ପ୍ରସଂଖ୍ୟାନ, ଗତି ତଥା ନାଦନାମକ ପାଞ୍ଚଗୋଟି କାର୍ଯ୍ୟକୁ ସମ୍ପାଦନ କରାଇ ଥାଆନ୍ତି । ଏହ ଦର୍ଶନ ଅନୁସାରେ କାଳୀହିଁ ଅଖିଳ ବ୍ରହ୍ମାଣ୍ଡର ମୂଳତତ୍ତ୍ୱ । ଏହି ତତ୍ତ୍ୱକୁ ଯେଉଁ ତିନିଗୋଟି ନାମରେ ନାମିତ କରାଯାଇଅଛି, ସେଗୁଡ଼ିକ ହେଲା - (୧) ମାତୃ ସଦ୍‌ଭାବ, (୨) ବ୍ୟୋମ ବାମେଶ୍ୱରୀ (୩) କାଳକର୍ଷିଣୀ । କାଳୀଶକ୍ତି ଏକ ସ୍ୱତନ୍ତ୍ର ଶକ୍ତି । ସ୍ୱୟଂ କାଳୀ ନିଜକୁ ଦ୍ୱାଦଶ ରୂପରେ ପ୍ରକଟନ କରିଅଛନ୍ତି । ଏହି ଦ୍ୱାଦଶ ରୂପର ଜ୍ଞାନରେ ଜୀବନ ମୋକ୍ଷ ହୋଇଥାଏ । ଏଥିପାଇଁ କାଳୀତତ୍ତ୍ୱକୁ ମାତୃ ସଦ୍‌ଭାବ ତତ୍ତ୍ୱ ବୋଲି କୁହାଯାଇଥାଏ । ବ୍ରହ୍ମାଣ୍ଡର ସୃଷ୍ଟି-ସ୍ଥିତି-ଲୟର ମାଧାରଭୂତା କାଳୀଙ୍କର ଯେଉଁ ଦ୍ୱାଦଶ ବିଧ ରୂପର ବର୍ଣ୍ଣନା ଶାସ୍ତ୍ରରେ କରାଯାଇଅଛି, ସେସବୁ ହେଲା- (୧) ସୃଷ୍ଟିକାଳୀ (୨) ରକ୍ତକାଳୀ (୩) ସ୍ଥିତିନାଶକାଳୀ (୪) ଯମକାଳୀ (୫) ସଂହାରକାଳୀ (୬) ମୃତ୍ୟୁକାଳୀ (୭)ରୁଦ୍ରକାଳୀ ଅଥବା ଭଦ୍ରକାଳୀ

(୮) ମାର୍ତ୍ତଣ୍ଡକାଳୀ (୯) ପରମାର୍କ କାଳୀ (୧୦) ମହାଭୈରବ ଚଣ୍ଡୋଗଘୋର କାଳୀ ।

ଓଡ଼ିଶା ଇତିହାସରେ ପ୍ରଥମ ପାଦରେ ଶାକ୍ତଧର୍ମ ଏକ ସ୍ୱତନ୍ତ୍ର ଧର୍ମରୂପେ ବିରାଜମାନ ଥିଲା । ମହାଭାରତ, ହରିବଂଶ ଓ ବାୟୁ ପୁରାଣରେ ଶାକ୍ତଦେବୀ ଯାଜପୁରସ୍ଥ ବିରଜାଙ୍କ କଥା ଉଲ୍ଲିଖିତ ଅଛି । କଳିଙ୍ଗ ରାଜ୍ୟର ବୈତରଣୀ କୂଳରେ ବିରଜା ତୀର୍ଥ ଥିବା କଥା ବନ ପର୍ବରେ ଲେଖାଅଛି । ଗୁପ୍ତ ରାଜତ୍ୱର ପ୍ରାକ୍ କାଳରେ ବିରଜା କ୍ଷେତ୍ରରୁ ବୌଦ୍ଧ ଧର୍ମର ପ୍ରଭାବ ବିଲୁପ୍ତ ହୋଇଛି । ଭୌମ ରାଜତ୍ୱର ଆରମ୍ଭରେ ଏହା ପୁନର୍ବାର ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଛି । ଏହି ସମୟରେ ବୌଦ୍ଧଧର୍ମ, ଶୈବଧର୍ମ, ଶାକ୍ତ ଧର୍ମ ଓ ତନ୍ତ୍ରର ଅଦ୍ଭୁତ ସମନ୍ୱୟ ଘଟିଛି । ଭୁବନେଶ୍ୱରରେ ଆମେ ବିଭିନ୍ନ ମନ୍ଦିରରେ ଏହିଭଳି ସମନ୍ୱୟରୁ ଆଭାସ ପାଉଁ । ଭୁବନେଶ୍ୱରର ବୋଇତାଳ ମନ୍ଦିରରେ ବୌଦ୍ଧ–ତାନ୍ତ୍ରିକ ମୂର୍ତ୍ତି ଦେଖିବାକୁ ମିଳେ ।

୭ମ ଶତାବ୍ଦୀରେ ସପ୍ତମାତୃକା ପୂଜାରୁ ସଂଧାନ ମିଳେ ଭୁବନେଶ୍ୱର ଓ ଯାଜପୁରରେ । ଚାମୁଣ୍ଡା ବରାହ କାପାଳିକ ପୂଜା ବିଭିନ୍ନ ସ୍ଥାନରେ ସେସମୟରେ କରାଯାଉଥିଲା । ଗଙ୍ଗ ରାଜାମାନେ ଶକ୍ତି ପୂଜାର ବିରୋଧୀ ଥିଲେ । ମାଦଳାପାଞ୍ଜିରେ ଚୋଡ଼ଗଙ୍ଗଦେବ ଓଡ଼ିଶାରୁ ସବୁ ଦେବୀଙ୍କୁ ହଟେଇବାକୁ ନିର୍ଦ୍ଦେଶ ଦେଇଛନ୍ତି । ଗଙ୍ଗ ରାଜତ୍ୱରେ ଦେବଙ୍କ ସହ ତାଙ୍କ ପତ୍ନୀଙ୍କ ମୂର୍ତ୍ତି ରଖିବାର ପରଂପରା ହୋଇଥିଲା । କେତେକଙ୍କ ମତରେ କୋଣାର୍କ ମନ୍ଦିରଟି ଛାୟା ଦେବୀଙ୍କ ପୂଜାପାଇଁ ଉଦ୍ଦିଷ୍ଟ ଥିଲା ।

ମଧ୍ୟ ଯୁଗରେ ଓଡ଼ିଶାରେ ଯେ ଶାକ୍ତ ଧର୍ମ ଲୋକଙ୍କ ମଧ୍ୟରେ ଆଦୃତ ଥିଲା ତାହା ଅନସ୍ୱୀକାର୍ଯ୍ୟ । ଜଗନ୍ନାଥ ଧର୍ମର ପ୍ରଭାବ ବୃଦ୍ଧି ସଂଗେ ସଂଗେ ଅନ୍ୟ ଧର୍ମର ପ୍ରଭାବ ହ୍ରାସ ପାଇଥିଲେ ମଧ୍ୟ ଲୋକଙ୍କ ମଧ୍ୟରେ ବିଭିନ୍ନ ରୂପରେ ଏବଂ ବିଭିନ୍ନ କ୍ଷେତ୍ରରେ ଶାକ୍ତ ଓ ବୈଷ୍ଣବ ଧର୍ମ ଏବେବି ଆଦରଣୀୟ ହୋଇ ରହିଛି । ଶିବ, କାଳୀ, ଦୁର୍ଗା ଯେ ରକ୍ଷାକର୍ତ୍ତା, ରକ୍ଷାକର୍ତ୍ତ୍ରୀ ଆଶୁତୋଷ ମଂଗଳଦାୟିନୀ ଏହି ବିଶ୍ୱାସ ସାଧାରଣ ଲୋକଙ୍କୁ ଏ ପର୍ଯ୍ୟନ୍ତ ଆଚ୍ଛନ୍ନ କରି ରଖିଛି । ତେଣୁ ନାନା ସ୍ଥାନରେ ଗ୍ରାମେ ଗ୍ରାମେ ଶୈବ ମନ୍ଦିର ତଥା ଦୁର୍ଗା, କାଳୀ ପୂଜାରେ ବ୍ୟବସ୍ଥା ଅଛି । ଓଡ଼ିଶାର ପ୍ରସିଦ୍ଧ ଦେବୀପୀଠ କାକଟପୁର ମଙ୍ଗଳା, ବାଙ୍କୀ ଚର୍ଚ୍ଚିକା, ଝଙ୍କଡ଼ ସାରଳା, କୋଣାର୍କର ରାମଚଣ୍ଡୀ, ଭଦ୍ରକାଳୀ ଭଦ୍ରକ, ସମଲେଶ୍ୱରୀ ସମ୍ବଲପୁର, ଯାଜପୁରରେ ବିରଜା ଓଡ଼ିଆ ଜୀବନ ଭାଷା ସାହିତ୍ୟ ସଂସ୍କୃତିରେ ଜାଜ୍ୱଲ୍ୟମାନ ହୋଇରହିଛି । ଦୁର୍ଗା କାଳୀ ଜଗତ ଜନନୀ ରୂପେ ପୂଜିତା । ତାଙ୍କୁ ଆବାହନ କରି ଭକ୍ତମାନେ ଗାଇଥାନ୍ତି–

ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତ ବୀର୍ଯ୍ୟ
ବିଶ୍ୱବସ୍ୟ ବିଜଂ ପରମାମ୍ବିମୟା,
ସମୋହିତ ଦେବୀ ସମସ୍ତ ମେତ୍
ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତି ହେତୁଃ
(ଶ୍ରୀ ଶ୍ରୀ ଚଣ୍ଡୀ)

(ହେ ଦେବୀ ! ଆପଣ ଅନନ୍ତ ବୀର୍ଯ୍ୟା, ବୈଷ୍ଣବୀ ଶକ୍ତି । ଆପଣ ବିଶ୍ୱର ଆଦି କାରଣ ମହାମାୟା । ଆପଣ ସମସ୍ତ ଜଗତକୁ ମୋହଗ୍ରସ୍ତ କରିଛନ୍ତି । ଆପଣ ପ୍ରସନ୍ନା ହେଲେ ଇହଲୋକରେ ଶରଣାଗତ ଭକ୍ତକୁ ମୁକ୍ତି ପ୍ରଦାନ କରନ୍ତୁ) ।

ସାରଳା ଦାସଙ୍କ ରଚିତ ଚଣ୍ଡୀ ପୁରାଣରେ ବର୍ଣ୍ଣିତ ଅଛି–

ଯେତେ ରୁଧିର ଟୋପା ପଡ଼ିଲାକ ପୃଥ୍ୱୀ
ଟୋପାକରୁ ତଥା ଏକ ଦୈତ୍ୟ ଉତପତ୍ତି ।

ଚଣ୍ଡୀଙ୍କ ଅଙ୍ଗରୁ ଜାତ ଦେବୀ ନାରାୟଣୀ ରକ୍ତବୀର୍ଯ୍ୟ ଏକ ଅସୁର ସହ ଯୁଦ୍ଧ କରିବାକୁ ଆଦିଷ୍ଟ ହୋଇଥିଲେ । ମାତ୍ର ଅସୁରର ରକ୍ତ ଭୂମିରେ ପଡ଼ିବା ମାତ୍ରେ ପୁନଶ୍ଚ ରକ୍ତବୀର୍ଯ୍ୟର ସୃଷ୍ଟି ହେଲା । ଏଣୁ ନିରୁପାୟ ହୋଇ ଚଣ୍ଡୀ ନିଜ ଅଙ୍ଗରୁ ଜାତ କଲେ ମା' କାଳୀଙ୍କୁ, ଯିଏ ଟୋପାଏ ରକ୍ତ ତଳେ ପଡ଼ିବାକୁ ଦେଲେ ନାହିଁ । ତେଣୁ ସେ ଥିଲେ ରକ୍ତପାନକାରୀ ଭୟଙ୍କରୀ କାଳୀ ।

ମାର୍କଣ୍ଡେୟ ପୁରାଣ ଅନୁସାରେ ରକ୍ତବୀର୍ଯ୍ୟ ବଧ କରିବା ପାଇଁ ଚଣ୍ଡୀକାଠାରୁ ସାହାଯ୍ୟକାରିଣୀ ମା' କାଳୀଙ୍କର ସୃଷ୍ଟି । କାଳିକାପୁରାଣ ଏବଂ ଯୋଗିନୀ ତନ୍ତ୍ରରେ ବର୍ଣ୍ଣିତ କାଳୀ ଓ କାମାକ୍ଷା ଏକ ଏବଂ ଅଭିନ୍ନ । ଏମାନଙ୍କୁ ହିନ୍ଦୁଦେବୀ ରୂପେ ସ୍ୱୀକାର କରାଯାଇଛି ।

ଓଡ଼ିଶାରେ ବହୁ ଶକ୍ତିପୀଠ ବିଦ୍ୟମାନ ଓ ତନ୍ତ୍ରସାଧନାର ପରଂପରା ରହିଛି । କୁହାଯାଏ ଶିବ ସତୀଙ୍କ ଶବକୁ କାନ୍ଧରେ ପକାଇ ବୋହି ଚାଲିଥିବା ବେଳେ ବିଷ୍ଣୁ ମହାଦେବଙ୍କୁ ସେଥିରୁ ନିବୃତ୍ତ କରି ସ୍ୱାଭାବିକତାକୁ ଫେରାଇ ଆଣିବା ସକାଶେ ଚକ୍ରପେଶୀ ଶକ୍ତିଙ୍କ ଶବକୁ ଖଣ୍ଡ ବିଖଣ୍ଡ କରିଦେଲେ, ଯାହା ବିଭିନ୍ନ ସ୍ଥାନରେ ପଡ଼ିଥିଲା । ସେଗୁଡ଼ିକ ଶକ୍ତିପୀଠ ରୂପରେ ପରିଗଣିତ ହେଲା । ଓଡ଼ିଶାରେ ମଧ୍ୟ ଏପରି ଅନେକ ଶକ୍ତିପୀଠ ରହିଛି । ପ୍ରସିଦ୍ଧ ଶକ୍ତିପୀଠ ମଧ୍ୟରେ ଭଦ୍ରକରେ ଭଦ୍ରକାଳୀ, ଯାଜପୁରରେ ବିରଜା, ଝଙ୍କଡ଼ରେ ଶାରଳା, କୋଣାର୍କରେ ରାମଚଣ୍ଡୀ, ବାଣପୁରରେ ଭଗବତୀ, ପୁରୀରେ ବିମଳା, ବାଙ୍କୀରେ ଚର୍ଚ୍ଚିକା, ତାଳଚେରରେ ହିଙ୍ଗୁଳା, ବାରିପଦାରେ ଅମ୍ବିକା, ସମ୍ବଲପୁରରେ ସମଲେଇ, ଘଟଗାଁରେ ତାରିଣୀ, କାଁପଡ଼ାରେ ଦପାନାୟକାଣୀ, ଧାମରାରେ ଧାମରାଇ, କୋରକୋରାରେ ସାତଭଉଣୀ, କୋଠାରର କୋଠାରୀ ଇତ୍ୟାଦି । କବିବର ରାଧାନାଥ ରାୟ 'ଉଷା' କାବ୍ୟରେ ପଞ୍ଚୁଲିଙ୍ଗେଶ୍ୱରଠାରେ ଉତ୍ତର ଓଡ଼ିଶାର ଦେବଦେବୀଙ୍କୁ ଏକତ୍ର କରାଇଛନ୍ତି –

ଦିନେ ଚତୁର୍ଦ୍ଦଶୀ ନିଶିଯୋଗେ ତହିଁହେଲା ଉତ୍ସବ
ଅଭିନୟ କଲେ ଗର୍ନ୍ଧବେ ମିଳି ହର ତାଣ୍ଡବ ।
ଚୌଦିଗୁ ଆସିଲେ ଦେବୀଏ ନାଟ ଦେଖିବା ପାଇଁ
ବୈତରଣୀ ତୀରୁଁକି କୀଚକଈଶ୍ୱରୀ ସୋର ଖେଳାଇ
ଘଟଗ୍ରାମ ଘୋର ଅରଣ୍ୟ ଚାରିଣୀ ଦେବୀ ତାରିଣୀ
କେନ୍ଦୁଝରି ଦଣ୍ଡଦେବୀ ଦଣ୍ଡଧର ଉପହାରିଣୀ ।
ସାଳନ୍ଦୀ ସଲିଳେ ଅଭିଷିକ୍ତ ଦେବୀ ଭଦ୍ରକାଳିକା
ଦପାନିବାସିନୀ ଦୈତ୍ୟ ଦର୍ପହରା ଦେବୀ ନାୟିକା,
ଦେବଗିରି ନୀଳଶିଖର ମଣ୍ଡନା ମଣ୍ଡଳେଶ୍ୱରୀ
ଆସିଲେ ସରବେ ସେ ତାଣ୍ଡବେ ପଞ୍ଚୁଲିଙ୍ଗେଶ୍ୱରୀ ।

ଭାରତୀୟ ଆଧ୍ୟାତ୍ମିକତାରେ ମା' କାଳୀଙ୍କୁ – ଆଦ୍ୟାଶକ୍ତି ଜନନୀ ରୂପେ ପରିକଳ୍ପନା କରାଯାଇଛି । ଆଦିଶକ୍ତି ଦୁର୍ଗା, ମହାକାଳୀ, ମହାସରସ୍ୱତୀ ଓ ମହାଲକ୍ଷ୍ମୀ । ଏହି କାଳୀ ଚଣ୍ଡ ମୁଣ୍ଡକୁ ବିନାଶ କରିବା ହେତୁ ଚାମୁଣ୍ଡା ନାମରେ ଖ୍ୟାତ । ଓଡ଼ିଶାରେ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀରୁ ଚାମୁଣ୍ଡା ଉପାସନା ପ୍ରଚଳିତ । ତେବେ ଓଡ଼ିଶାରେ କାଳୀମୂର୍ତ୍ତି କେଉଁଠାରେ ଦେଖିବାକୁ ମିଳେ ନାହିଁ । ଯେଉଁ ସବୁ ସ୍ଥାନରେ ଦକ୍ଷିଣକାଳୀ, ରକ୍ଷାକାଳୀ, ଶ୍ମଶାନ କାଳୀ, ବଗଳାମୁଖୀ ପୂଜା ପାଉଛନ୍ତି, ସେସବୁ ବାସ୍ତବରେ ଚାମୁଣ୍ଡା ମୂର୍ତ୍ତି ।

ବଲାଙ୍ଗୀର ଜିଲ୍ଲାରେ ଚୌଷଠି ଯୋଗିନୀ, ବାଳକାଟି ନକଟସ୍ଥ ହୀରାପୁରରେ ଚୌଷଠି ଯୋଗିନୀ ଓ ଯାଜପୁରରେ ସପ୍ତମାତୃକା ପୀଠ ବିଦ୍ୟମାନ । ସମ୍ବଲପୁର ରାଜା ଇନ୍ଦ୍ରଭୂତି ଓ ରାଣୀ ଲକ୍ଷ୍ମୀଙ୍କର ଥିଲେ ତନ୍ତ୍ର ସାଧିକା ଓ ଶାକ୍ତ । ଓଡ଼ିଆ ସାହିତ୍ୟର ଆଦ୍ୟ ଉଦ୍‌ଗାତା ଭାବେ କୁହାଯାଉଥିବା ଚର୍ଯ୍ୟାସାଧକଗଣ ଥିଲେ ତନ୍ତ୍ର ସାଧକ । ସେମାନଙ୍କ ସାଧନାର ସହଚରୀ ଥିଲେ ନୈରାମଣି ଦେବୀ, ଚଡାମ୍ବୀ, ଶବରୀ ଇତ୍ୟାଦି । ଏମାନେ ଥିଲେ ତନ୍ତ୍ର ସାଧିକା ।

ଶିବ ଶକ୍ତି ଯୁକ୍ତ ହେଲେ ମାନବ ସଂସାରରେ ଯାବତୀୟ କାର୍ଯ୍ୟ ସଂପାଦନ କରେ ଅନ୍ୟଥା ଶିବ ଶବ ହୁଅନ୍ତି । ସେ ସମସ୍ତ ପ୍ରକାର ବାଧା ଦୂରୀଭୂତ କରି ମାନବ ଜଗତକୁ ଶକ୍ତି ପ୍ରଦାନ କରନ୍ତି । ସେ ସର୍ବଶକ୍ତି ସ୍ୱରୂପା ମା' କାଳୀ । ଅନନ୍ତ କାଳର ଅଧିଷ୍ଠାତ୍ରୀ ରୂପେ ମହାକାଳୀ ଚତୁର୍ଭୁଜା । ଦୁଇ ହାତରେ ଜଗତକୁ ପରିପାଳନ କରନ୍ତି, ଅନ୍ୟ ଦୁଇ ହାତରେ ଦୁଷ୍ଟଙ୍କୁ ବିନାଶ କରନ୍ତି । ତମ ଗୁଣରୁ ଉଦ୍‌ଭବ ହୋଇଛନ୍ତି ମା' କାଳୀ । ଚାମୁଣ୍ଡା ତନ୍ତ୍ରରେ ଦେବୀଙ୍କୁ ଦଶ ମହାବିଦ୍ୟା ରୂପେ ବର୍ଣ୍ଣନା କରାଯାଇଛି ।

କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନ ମସ୍ତା ଚ ବିଦ୍ୟା ଧୂମାବତୀ ତଥା
ବଗଳା ସିଦ୍ଧ ବିଦ୍ୟାଚ ମାତଙ୍ଗୀ କମଳାତ୍ମିକା
ଏକାଦଶ ମହାବିଦ୍ୟାଃ ସିଦ୍ଧ ବିଦ୍ୟା ପ୍ରକୀର୍ତ୍ତିତା ।

ଓଡ଼ିଶାର ପୂର୍ବ ଉପକୂଳରେ ଥିବା ଶାକ୍ତ ଧର୍ମର ପ୍ରମୁଖ ଅଞ୍ଚଳଗୁଡ଼ିକ ମଧ୍ୟରେ ଭଦ୍ରକ ଅନ୍ୟତମ । ଏ ମାଟିର ପୀଠଦେବୀ ମା' ଭଦ୍ରକାଳୀ । ଦେବୀଙ୍କର ମୂର୍ତ୍ତି ମୁଗୁନି ପଥରରେ ନିର୍ମିତ । ଦେବୀ ଚତୁର୍ଭୁଜା ଓ ସିଂହ ଉପରେ ଆସୀନ । ଦେବୀଙ୍କର ଉଚ୍ଚତା ପ୍ରାୟ ଚାରିଫୁଟ । ଦକ୍ଷିଣ ଭୁଜରେ ଖଡ଼୍‌ଗ ଓ ବାମ ଭୁଜରେ ଖର୍ପର । ତଳ ଦୁଇଟି ଭୁଜ ମଧ୍ୟରୁ ଦକ୍ଷିଣ ଭୁଜରେ କରମାଳା ଧାରଣ କରିଥାନ୍ତି ଓ ବାମ ଭୁଜରେ ଶ୍ରୀକୃଷ୍ଣଙ୍କୁ କୋଳରେ ଧାରଣ କରିଥାନ୍ତି । ଦେବୀଙ୍କର ବାମ

ଜାନୁସ୍ଥ ମୂର୍ତ୍ତି କେହି ଶ୍ରୀକୃଷ୍ଣ କହିଥିବାବେଳେ ଅନ୍ୟ କେହି ମୁଣ୍ଡରେ ମୟୂର ଚୁଳ ନ ଥିବାରୁ ମୂର୍ତ୍ତିଟି ବାଳକ ବୋଲି କହିଥାନ୍ତି । ଦେବୀଙ୍କର ବାମ ଓ ଡାହାଣ ପାର୍ଶ୍ୱରେ ଜୟା ଓ ବିଜୟା ମୂର୍ତ୍ତି ରହିଛି । ବାମ ପାର୍ଶ୍ୱରେ ଥିବା ମୂର୍ତ୍ତିଟି ପଥର ଓ ଡାହାଣ ପାର୍ଶ୍ୱ ମୂର୍ତ୍ତିଟି ପିତ୍ତଳରେ ନିର୍ମିତ । ଦୁର୍ଗା ପୂଜା ସମୟରେ ବାଦ୍ୟଯନ୍ତ୍ରର ସମାବେଶରେ ଜୟାମୂର୍ତ୍ତିକୁ ମନ୍ଦିରର ଚାରିପଟେ ବୁଲାଇ ଅଣାଯାଏ । ମନ୍ଦିରଟି ତିନି ଭାଗରେ ବିଭକ୍ତ । ଜଗମୋହନ, ଗର୍ଭଗୃହ ଓ ନାଟମନ୍ଦିର । ଭଦ୍ରକାଳୀ ମନ୍ଦିରଟି ଜଗମୋହନ ଓ ନାଟମନ୍ଦିରଠାରୁ ୨୦ ଫୁଟ୍ ଦୂରରେ ଅବସ୍ଥିତ । ମନ୍ଦିରର ଉଚ୍ଚତା ୪୦ ଫୁଟ୍ । ଜଗମୋହନ ଓ ନାଟମନ୍ଦିର ମଧ୍ୟରେ ଏକ ଯଜ୍ଞକୁଣ୍ଡ ଅବସ୍ଥିତ । ଗର୍ଭଗୃହରେ ଯେଉଁ ଆସନ ଉପରେ ଦେବୀ ବସିଥାନ୍ତି, ତା'ର ଲମ୍ବ ୮ ଫୁଟ୍ ଓ ପ୍ରସ୍ଥ ୫ ଫୁଟ୍ ଓ ଆସନଟିର ଉଚ୍ଚତା ସାଢ଼େ ଚାରିଫୁଟ୍ । ଜଗମୋହନର ଉପରିଭାଗ କାନ୍ଥରେ ଗଣେଶ, ସୂର୍ଯ୍ୟ, ବିଷ୍ଣୁ, ଶିବ ଓ ଦୁର୍ଗା ଏବଂ ଶ୍ରୀଜଗନ୍ନାଥ ମହାପ୍ରଭୁ ଏହି ବେଢ଼ାର ଅନ୍ୟ ମନ୍ଦିରରେ ପୂଜାପାଇ ଆସୁଛନ୍ତି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ସମୟରେ ଏହି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ତାଙ୍କର ଅଙ୍ଗଦେବତା ଭଦ୍ରକାଳୀ ପୀଠରେ ରହି ପୂଜା ପାଆନ୍ତି । ପ୍ରତ୍ୟେକ ଦିନ ଘ. ୬–୩୦ ମିନିଟ୍‌ରୁ ଦିନ ଗୋଟାଏ ପର୍ଯ୍ୟନ୍ତ ମନ୍ଦିର ଖୋଲାରହେ । ମା'ଙ୍କୁ ପୂଜା କରନ୍ତି ଦୀକ୍ଷିତ ପରିବାର । ଉଖୁଡ଼ା, କଦଳୀ, କ୍ଷୀର ଭୋଗ ହୁଏ ବାଳଭୋଗ, ଦ୍ୱିପ୍ରହର ଓ ରାତ୍ରିରେ ଅନ୍ନଭୋଗ ହୁଏ । ଦୁର୍ଗାପୂଜା ପ୍ରତିପଦଠାରୁ ଦଶମୀ ପର୍ଯ୍ୟନ୍ତ ଯଜ୍ଞ ହୁଏ । ଦୀପାବଳି ଦିନ ରାତିରୁ ମା'କାଳୀଙ୍କ ପୂଜା ଆରମ୍ଭ ହୁଏ । ଶାରଦୀୟ ପାର୍ବଣର ଆରମ୍ଭରେ ପ୍ରଥମେ ଜଗଜ୍ଜନନୀ ମା' ଦୁର୍ଗା, ମହାଲକ୍ଷ୍ମୀଙ୍କ ପୂଜା ସରିବା ପରେ ଶେଷରେ ଆସେ ମା'କାଳୀଙ୍କ ପୂଜା । ଭଦ୍ରକାଳୀ ପୀଠରେ ଥିବା ମା' ଭଦ୍ରକାଳୀଙ୍କ ମନ୍ଦିରରେ ଦୀପାବଳି ଅମାବାସ୍ୟାଠାରୁ ସାତଦିନ ଧରି ମା'ଙ୍କର ପୂଜାର୍ଚ୍ଚନା କରାଯାଏ । ବିଧି ଅନୁସାରେ ଏହି ସାତଦିନ ମା'ଙ୍କୁ ଭିନ୍ନ ଭିନ୍ନ ବେଶରେ ପୂଜା କରାଯାଏ । ଭଦ୍ରକାଳୀ ପୀଠର ଅନତି ଦୂରରେ ଭଦ୍ରକ ଆଖଣ୍ଡଳ ମଣି ରାସ୍ତାର ସାତ ଭଉଣୀ ନିକଟରେ ସପ୍ତମାତୃକା ପୀଠ ଓ ସାତଭଉଣୀ ଗ୍ରାମର ନାମ କରଣରୁ ଭଦ୍ରକ ଅଞ୍ଚଳରେ ମା' ଭଦ୍ରକାଳୀଙ୍କର 'ସପ୍ତସତୀ' ପୂଜା ପରଂପରାର ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ ।

ଭଦ୍ରକର ଆଉ ଏକ ପୁରାତନ ଶକ୍ତିପୀଠ ଯେଉଁଠି ମା' ଦକ୍ଷିଣ କାଳୀଙ୍କର ମୃଣ୍ମୟ ରୂପର ଉପାସନା କରାଯାଏ । ସଂପ୍ରତି ଭଦ୍ରକ ଜିଲ୍ଲା ଧୁଷୁରୀ ଥାନା ଅନ୍ତର୍ଗତ ବ୍ରାହ୍ମଣପାଳ ଭଳି ମଫସଲ ଗାଆଁରେ ଏହି ଶକ୍ତିପୂଜା ସ୍ୱତନ୍ତ୍ର ଭାବେ ହୋଇଥାଏ । ଏଠାରେ ଦକ୍ଷିଣକାଳୀଙ୍କ ମନ୍ଦିର ଅଛି । ୧୫୩୯ ମସିହାରେ ଏହି ମନ୍ଦିରର ଶୁଭାରମ୍ଭ ହୋଇଥିଲେହେଁ ୧୯୮୫ ମସିହାରେ ଏହା ସଂପୂର୍ଣ୍ଣ ହୋଇଛି ବୋଲି ଜନଶ୍ରୁତିରୁ ଜଣାଯାଏ । ଜନମତରେ ଏଠାକାର ଦେବୀ ହେଉଛନ୍ତି ଆଦ୍ୟାକାଳୀ । ଏହି ସ୍ଥାନରୁ କାଳନ୍ଦୀ ପଣ୍ଡା ନାମକ ଜଣେ କାଳୀ ସାଧକ ବଙ୍ଗଭୂଇଁରେ କାଳୀ ସାଧନା କରୁଥିଲେ । ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ଦେବୀ ଏଠାକୁ ଆସିଥିବାର କିମ୍ବଦନ୍ତୀ ଅଛି ।

ବ୍ରାହ୍ମଣପାଳ ଦେବୀଙ୍କର ମୃଣ୍ମୟ ମୂର୍ତ୍ତି ପୂଜା କରାଯାଏ ଏବଂ ଦେବୀଙ୍କର ଅଷ୍ଟଧାତୁରେ ନିର୍ମିତ ମୂର୍ତ୍ତିକୁ ବ୍ରାହ୍ମଣ ସବୁଦିନ ପୂଜା କରନ୍ତି । କାଳୀ ଖୁବ୍ ପ୍ରତ୍ୟକ୍ଷ ବୋଲି ପାଖ ଆଖର ଲୋକେ ବିଶ୍ୱାସ କରିଥାନ୍ତି । ତାଙ୍କ ପ୍ରିୟ ଭୂଷଣ ନାଲି ଶଙ୍ଖା । ଏ ସଂପର୍କରେ ଏକ କିମ୍ବଦନ୍ତୀ ଅନେକ ଦିନୁ ପ୍ରଚଳିତ । ଦେବୀ ଗୋଟିଏ ଝିଅ ହୋଇ ଗାଁର ପିଲାଙ୍କ ସଂଗେ ନଈବାଲିରେ ଖେଳନ୍ତି । ତାଙ୍କ ବର୍ଣ୍ଣ ଶ୍ୟାମଳା । ଦିନକର କଥା, ଜଣେ ଶଙ୍ଖାରୀ ଶଙ୍ଖାନେଇ ସେଇବାଟେ ଗଲା 'ଶଙ୍ଖାନେବ....' ଡାକି ଡାକି । ଝିଅଟି କହିଲା ମୋତେ ଶଙ୍ଖା ଦେଇ ଯା' । ମୋ ବାପାଠୁଁ ପଇସା ନେଇଯିବୁ । ଶଙ୍ଖାରୀ ପଚାରିଲା, ତମ ବାପା କିଏ ? ତହୁଁ ସେ କାଳୀ ପୂଜକଙ୍କ ନାମ କହିଲେ । ଶଙ୍ଖା ପିନ୍ଧେଇ ଦେଇ ପୂଜକ ପାଖକୁ ଯାଆନ୍ତେ ସେ ଆଶ୍ଚର୍ଯ୍ୟ ହେଲେ । ନଈରେ ଝିଅଟିକୁ ପାଇଲେ ନାହିଁ । ଶଙ୍ଖାରୀକୁ ପଇସା ଦେଲେ । ଦେଖନ୍ତି ଯେ ଦେବୀଙ୍କର ବିଗ୍ରହରେ ଶଙ୍ଖା ଶୋଭା ପାଉଛି ।

ବ୍ରାହ୍ମଣପାଳ କାଳୀଙ୍କର ମୃଣ୍ମୟ ମୂର୍ତ୍ତିର ରଂଗ ଗାଢ଼ କଳା, ମୁଣ୍ଡ ମାଳିନୀ, ହସ୍ତରେ ଖଡ଼୍‌ଗ, ଅନ୍ୟ ହସ୍ତରେ ନିହିତ ଅସୁରର ଛିନ୍ନ ମସ୍ତକ, କରାଳ ବଦନ, ମୁକ୍ତ କେଶ, ଚତୁର୍ଭୁଜ ଧାରିଣୀ ଉଲଗ୍ନ ରୂପ ଅତୀବ ଭୟଙ୍କର । ମା'ଙ୍କର ଏପରି

ରଣୋନ୍ମାଦିନୀ କରାଳ ମୂର୍ତ୍ତି ଦେଖି ଦେବତାମାନେ ଭୟଭୀତ ହେବାରୁ ଦେବୀଙ୍କର ସ୍ୱାମୀ ଶିବଙ୍କୁ ତାଙ୍କ ଗନ୍ତବ୍ୟ ପଥରେ ଶୟନ କରିବାକୁ ପଡ଼ିଥିଲା । ଦେବୀ ଶିବଙ୍କ ବକ୍ଷରେ ଭ୍ରମବଶତଃ ବାମ ପାଦ ରଖି ପ୍ରକୃତିସ୍ଥ ହୋଇଥିଲେ । କାଳୀଙ୍କର ଏହି ମୃଣ୍ମୟ ମୂର୍ତ୍ତିର ଦୃଶ୍ୟ ଶକ୍ତିପୀଠ ବ୍ରାହ୍ମଣପାଳଠାରେ ଦେଖିବାକୁ ମିଳେ । ମା' ଦକ୍ଷିଣକାଳୀଙ୍କର ଯଥାବିଧି ପୂଜାର ଅବ୍ୟବହିତ ପୂର୍ବରୁ ସତ୍ୟନାରାୟଣ / ସତ୍ୟପୀର ଓ ଚକ୍ରପୂଜା କରାଯାଇଥାଏ । ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖ ଅଛି – ନିଳାଦ୍ରୌ ଶ୍ରୀଜଗନ୍ନାଥ ସାକ୍ଷାତ୍ ଦକ୍ଷିଣ କାଳିକା । ଏଥି ସହିତ ବୈଦାନ୍ତିକ ମତରେ ପଞ୍ଚମ'କାର ପୂଜା ବିଧାନ କରାଯାଇଥାଏ । ପ୍ରକାଶ ଥାଉକି, କାର୍ତ୍ତିକ ଅମାବାସ୍ୟା ପୂର୍ବରୁ ମୃଣ୍ମୟୀ ମୂର୍ତ୍ତି ପ୍ରସ୍ତୁତ ବେଳେ ସେଥିରେ ଆଦ୍ୟାକାଳୀ ବା ଦକ୍ଷିଣ କାଳୀଙ୍କ ବ୍ରହ୍ମ (ଆତ୍ମସତ୍ତା)କୁ ସ୍ଥାପନ କରାଯାଏ । ବିସର୍ଜନ ବେଳେ ମୂର୍ତ୍ତିଠାରୁ ତାହାକୁ କାଢ଼ି ପୁଣି ପୀଠସ୍ଥଳୀକୁ ଅଣାଯାଏ । ଏହି ପୀଠରେ ପୂଜାର୍ଚ୍ଚନା କଲେ ମାନସିକ ସିଦ୍ଧି ଲାଭ ହୁଏ ବୋଲି ଦୃଢ଼ ବିଶ୍ୱାସ ରହିଛି । ବ୍ରାହ୍ମଣପାଳର ଏହି ଶକ୍ତିପୀଠରେ ପୂଜିତ ମା' ଦକ୍ଷିଣ କାଳୀଙ୍କ ପାଖରେ ବଳି ପ୍ରଥାଟି ବହୁ ପ୍ରାଚୀନ କାଳରୁ ଚଳି ଆସୁଛି । ଏଠାକାର ପଶୁବଳି ସେଇ ପ୍ରାଚୀନ ବାମାଚାର ତାନ୍ତ୍ରିକ ପ୍ରକ୍ରିୟାର ପ୍ରସାରଣ ଶୀଳ ଲୋକାଚାର ମାତ୍ର । ଦକ୍ଷିଣାଚାର ଓ ବାମାଚାର ମଧ୍ୟରେ ଆଭିଚାରିକ ବ୍ୟବଧାନ ବା ସ୍ୱାତନ୍ତ୍ର୍ୟତା ତାତ୍ତ୍ୱିକ ନିଶ୍ଚୟ ତାମସିକ ନୁହେଁ । ମା' ଦକ୍ଷିଣକାଳୀ ମଙ୍ଗଳଦାତ୍ରୀ, ସ୍ନେହମୟୀ, କରୁଣାମୟୀ – ସତ୍ୟ–ଶାନ୍ତି–ଆଲୋକ–ଆନନ୍ଦର ପ୍ରତିମୂର୍ତ୍ତି ଜନନୀ ।

ଭଦ୍ରକ ରେଳଷ୍ଟେସନ ଚରମ୍ପା ଅଞ୍ଚଳର ବହୁ ପୁରାତନ କାଳୀପୂଜା ଆଜି କେବଳ ଓଡ଼ିଶା ନୁହେଁ, ପଶ୍ଚିମବଂଗ, ବିହାର, ଝାଡ଼ଖଣ୍ଡ ଇତ୍ୟାଦି ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଛି । ରେଳ ଷ୍ଟେସନର ଜଣେ ବଂଗୀୟ ଷ୍ଟେସନ ମାଷ୍ଟରଙ୍କ ଉଦ୍ୟମରେ ଦୀର୍ଘଦିନର ଏହି କାଳୀପୂଜା ମହାସମାରୋହରେ ପାଳିତ ହୋଇ ଆସୁଛି । ଆଧ୍ୟାତ୍ମିକ ବିଶ୍ୱାସ ସାଙ୍ଗକୁ ପାର୍ବଣର ମାହୋଲ, ସୁସଜ୍ଜିତ ମେଢ଼, ତୋରଣ, ରଂଗୀନ ଆଲୋକମାଳା, ବିଭିନ୍ନ ପ୍ରକାର ବେପାର–ବାଣିଜ୍ୟ ଓ ଲକ୍ଷ ଲକ୍ଷ ଲୋକଙ୍କ ସମାଗମରେ ବହୁ ବର୍ଷ ଧରି ଭଦ୍ରକର କାଳୀପୂଜା ଏକ ଗଣ ପର୍ବରେ ପରିଣତ ହୋଇଛି । ଏବେ ଏହି କାଳୀପୂଜାର ମେଢ଼ ସଂଖ୍ୟା ବଢ଼ି ଚାଲିଛି । ଚରମ୍ପା ଅଞ୍ଚଳରେ ଥିବା ସ୍ଥାୟୀ ମନ୍ଦିର ସାଙ୍ଗକୁ ତିନୋଟି ମେଢ଼, କୁଆଁସ ରାଜଘାଟ ମେଢ଼ ଓ ନୂଆ ବସ୍‌ଷ୍ଟାଣ୍ଡ ନିକଟରେ ନିର୍ମିତ ନୂତନ ଦକ୍ଷିଣେଶ୍ୱର କାଳୀ ମନ୍ଦିରଠାରେ କାଳୀପୂଜା ମହା ଆଡ଼ମ୍ବରରେ ପାଳିତ ହେଉଛି ।

ଏତଦ୍‌ବ୍ୟତୀତ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଅଞ୍ଚଳର ଦକ୍ଷିଣ କାଳୀପୂଜା, ତିହିଡ଼ିର ଶ୍ୟାମାକାଳୀ ପୂଜା, ଧାମନଗର ରାମେଶ୍ୱରପୁରଠାରେ ରକ୍ଷାକାଳୀ ପୂଜା, ଅସୁରାଳିଠାରେ ରଟନ୍ତୀକାଳୀ ପୂଜା, ଧୁଷୁରୀରେ କାଳୀପୂଜା, ବନ୍ତ ଭଣ୍ଡାରିପୋଖରୀ ଅଞ୍ଚଳରେ କାଳୀପୂଜା ସମଗ୍ର ଜିଲ୍ଲାରେ ଏକ ମହାନ୍ ପର୍ବ ଭାବରେ ପାଳିତ ହେଉଛି । ତେବେ ପଲ୍ଲୀ ଅଞ୍ଚଳ ହେଲେ ମଧ୍ୟ ବ୍ରାହ୍ମଣପାଳର ଦକ୍ଷିଣ କାଳୀଙ୍କର ପୂଜା କିମ୍ବଦନ୍ତୀ ତଥା ଲୋକକଥା ଅନୁଯାୟୀ ପାଞ୍ଚଶତ ବର୍ଷରୁ ଊର୍ଦ୍ଧ୍ୱଧରି ପୂଜା ପାଇଁ ଆସିବା ବିଶେଷ ଗୁରୁତ୍ୱ ବହନ କରେ ।

ମା' କାଳୀ ହେଉଛନ୍ତି ମହାମାୟା ମା' ଦୁର୍ଗାଙ୍କର ଆଉ ଏକ ରୂପ । ସେଇ ସୂତ୍ରରେ ମହେଶ୍ୱରୀ ଓ ମହାକାଳୀ ଏକ ଓ ଅଭିନ୍ନ । ଅସଲ ଦର୍ଶନ କଲେ ମହାକାଳୀ କେତେ ମନୋହରୀ ଶକ୍ତି ରୂପେ ସତ୍ତାରେ ସଂଚରି ଯାନ୍ତି, ଠିକ୍ ଯେପରି ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସଙ୍କୁ ସେ ଅନୁଭୂତ ହୋଇଥିଲେ । ସେ ସଂପର୍କରେ ଠାକୁର କହନ୍ତି – କାଳୀଙ୍କ ରଂଗ କ'ଣ କଳା ? ଦୂରରୁ ଆକାଶର ରଂଗ ନୀଳ ଦେଖାଯାଏ କିନ୍ତୁ ତାର ନିକଟବର୍ତ୍ତୀ ହେଲେ ତା'ର କିଛି ରଂଗ ନଥିବା ପରି କାଳୀଙ୍କର ମଧ୍ୟ କୌଣସି ରଂଗ ନାହିଁ । କାଳୀ ମୂର୍ତ୍ତିରେ ଭୟଙ୍କର ଦେଖାଯାନ୍ତି କାଳୀ ଯେତେବେଳେ ମଣିଷ ତାଙ୍କୁ ଦୂରରୁ (ଅଭାବେ ଅଭେଟ) ଦେଖେ କିନ୍ତୁ ତାଙ୍କର ନିକଟବର୍ତ୍ତୀ ହେଲେ (ଭାବକୁ ନିକଟ) ସେ ହିଁ ପରମ କଲ୍ୟାଣୀ ମହେଶ୍ୱରୀ ରୂପେ ଅନୁଭୂତ ହୁଅନ୍ତି ।

ଯୁଗେ ଯୁଗେ ପୁରୁଷ ନାରୀକୁ ପ୍ରାଣର ଆରାଧ୍ୟ ଦେବୀ ଓ ତା' ହୃଦ ସିଂହାସନରେ ଅଧିଷ୍ଠାତ୍ରୀ ସାମ୍ରାଜ୍ଞୀ ରୂପେ ଦେଖି ଆସିଛି । ବିଶ୍ୱ କବି ରବୀନ୍ଦ୍ର ନାଥ ଟାଗୋର ଉଚ୍ଛ୍ୱସିତ କଣ୍ଠରେ ଗାଇଛନ୍ତି–

ଦେଖଗୋ କମଳାସନ ଜନନୀ ଲକ୍ଷ୍ମୀର
ଦେଖ ନାରୀ ହୃଦୟରେ ପବିତ୍ର ମନ୍ଦିର ।

ନାରୀ ଆଜି ମାନବର ଧାତ୍ରୀ, ଉର୍ବରତାର ପ୍ରତୀକ । ପ୍ରାଚୀନ ୟୁରୋପ୍‌ରେ ଅନାବୃତ୍ତ ଭିତ୍ତିପ୍ରଦ ସ୍ତନଯୁକ୍ତ ନାରୀ ମୂର୍ତ୍ତିପୂଜା ପାଉଥିବା ସଂଧାନ ମିଳିଛି । ଦଶ ହଜାର ବର୍ଷ ପୂର୍ବେ ତୁରସ୍କରେ ମୃତ୍ତିକାର ସ୍ତନ ପୂଜା ପାଉଥିବାର ପ୍ରମାଣ ମିଳେ । ଦେବୀ ଆଇସିସ୍ ଓ ନୀଳ ନଦୀର ଦେବତା ହାପିଓ ହେଉଛନ୍ତି ସ୍ତନବତୀ ନାରୀ ମୂର୍ତ୍ତି । ବାଇବେଲ୍‌ରେ ଦୁଇଟି ମେରି ଅଛନ୍ତି । ଗୋଟିଏ ମେରିମାତା ବା କୁମାରୀ ମେରି ଈଶ୍ୱରଙ୍କ ପୁତ୍ରଙ୍କ ଜନନୀ ।

ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ମହେଞ୍ଜୋଦାରୋରେ ସଭ୍ୟତା କାଳରେ ସିନ୍ଧୁ ଦେଶର ଲୋକମାନେ ମାତୃଦେବୀ ଓ ଯୋଗରତ ଶିବଙ୍କୁ ପୂଜା କରୁଥିବା ପ୍ରମାଣ ମିଳେ ବିଭିନ୍ନ ଖୋଦିତ ପ୍ରତିମୂର୍ତ୍ତିରୁ । ପରବର୍ତ୍ତୀ କାଳର ଶକ୍ତିପୂଜା ମହେଞ୍ଜୋଦାରୋ ଯୁଗର ମାତୃଦେବୀ ଆରାଧନା ଦ୍ୱାରା ଅନୁପ୍ରାଣିତ ହୋଇଥିବା କଥା ପ୍ରଖ୍ୟାତ୍ ଐତିହାସିକ ରମେଶ ଚନ୍ଦ୍ର ମଜୁମ୍‌ଦାର୍ ଉଲ୍ଲେଖ କରିଛନ୍ତି । କର୍ଣ୍ଣାଟକ ଓ ମହାରାଷ୍ଟ୍ରରେ ବୀରଶୈବ ସଂପ୍ରଦାୟ ଥିଲେ ପ୍ରଭାବଶାଳୀ । ଏହି ସମୟରେ ଶାକ୍ତ ଧର୍ମର ଅଭ୍ୟୁଦୟ ଘଟିଥିଲା । ଦଶମ ଶତାବ୍ଦୀ ସାଂଖ୍ୟ ଦର୍ଶନ ପରେ ଭିତ୍ତିକରି ଗଢ଼ି ଉଠିଥିଲା ଶକ୍ତି ପୂଜା । ସାଂଖ୍ୟଦର୍ଶନ ମତରେ ପୁରୁଷ ବା ଶିବ ନିଷ୍କ୍ରିୟ ।

ଶିବଙ୍କ ସହଚରୀ ହେଲେ ଆରାଧ୍ୟ ଦେବୀ । ଶକ୍ତି ହେଉଛି ଉତ୍ପାଦନଶୀଳା, ସୃଷ୍ଟିର ବାସ୍ତବ କାରଣ । ଷଷ୍ଠ ଓ ଅଷ୍ଟମ ଶତାବ୍ଦୀ ମଧ୍ୟରେ ପଞ୍ଚରାତ ସଂହିତା ବିଷ୍ଣୁଙ୍କ ଶକ୍ତିର ବ୍ୟାଖ୍ୟା କରି ବୈଷ୍ଣବ ଧର୍ମର ଉନ୍ମେଷ ଘଟାଇଥିଲା । ପରବର୍ତ୍ତୀ କାଳରେ ବିଷ୍ଣୁ ପୁରାଣ, ଭାଗବତ ପୁରାଣ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା ମାଧ୍ୟମରେ ବୈଷ୍ଣବ ଧର୍ମକୁ ଲୋକପ୍ରିୟ କରିଥିଲା । ଭକ୍ତିଭାବର ପ୍ରସାର, ଶାକ୍ତ ଓ ବୈଷ୍ଣବ ଧର୍ମର ମିଳିତ ପ୍ରଭାବରେ ଦେବଦେବୀ ପୂଜା ଲୋକପ୍ରିୟ ଓ ବର୍ଣ୍ଣାଢ଼୍ୟ ହୋଇପାରିଥିଲା । ଶବର ପାଦ ଚର୍ଯ୍ୟାପାଦରେ ମୟୂର ପୁଚ୍ଛ ଧାରିଣୀ ଦେବୀଙ୍କ କଥା କହିଛନ୍ତି । ଆଦିମ ଅଧିବାସୀ ଶବର ପ୍ରଥମେ ଦେବୀପୂଜା କରୁଥିଲେ । ସେମାନଙ୍କଠାରୁ ଆର୍ଯ୍ୟମାନେ ଦୁର୍ଗାଙ୍କ ପୂଜା ଗ୍ରହଣ କରିଥିବା ମନେହୁଏ । ଉଁଚା ଉଁଚା ପାର୍ବତୀ ତହିଁ ବସଇ ଶବରୀ କାଳୀ । ନାରୀର ବୈଭବ ମାତୃଶକ୍ତିର ଅନନ୍ତ ଅକ୍ଷୟ ପ୍ରତୀକ ହେଉଛନ୍ତି ଦେବୀ, ଦୁର୍ଗା, କାଳୀ ଯିଏ ଗାଁ ଗାଁରେ ଠାକୁରାଣୀ ରୂପେ ପୂଜିତ । ଯେଉଁ ମାତୃଶକ୍ତିକୁ ବର୍ଣ୍ଣନା କରି ଭକ୍ତକବି ମଧୁସୂଦନ ରାଓ ଲେଖିଛନ୍ତି– ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଖ ଜିଣି ହେ... କାହିଁ ପଟ୍ଟାନ୍ତର ତା'ର, ରାଜ୍ୟ ବିଭବ କି ଛାର । ସେ ଶକ୍ତିର ଆରାଧନା ଯେ ଭଦ୍ରକର ଭଦ୍ରକାଳୀ ପୀଠ ଓ ବ୍ରାହ୍ମଣପାଳର ଦକ୍ଷିଣକାଳୀଙ୍କ ପୀଠରେ ଶହ ଶହ ବର୍ଷ ଧରି ଚାଲିଛି, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଶକ୍ତି ରୂପିଣୀ ଦେବୀ କାଳୀଙ୍କ ଆରାଧନା ଦୀପାବଳିର ପ୍ରଧାନ କୃତ୍ୟ । ସେଥିପାଇଁ ଶାସ୍ତ୍ରରେ ଯଥାର୍ଥରେ ଉଲ୍ଲେଖ ରହିଛି, ଅଗ୍ନି ସୂର୍ଯ୍ୟ ଆଦିତେମ୍ ... ଦୀପାବଳି ଶବ୍ଦ ହିଁ ଆଲୋକ ସଂପର୍କିତ । ସନାତନ ଧର୍ମର ଆର୍ଯ୍ୟ ଋଷିମାନେ ଏହି ଆଲୋକ ପାଇଁ ସମୁଚ୍ଚାରିତ ଭାବେ ପ୍ରାର୍ଥନା କରୁଥିଲେ ଦୀପଂ ଦେହୀ, ଜ୍ୟୋତିଂ ଦେହୀ । ଯୁଗ ପୁରୁଷ ରାମଚନ୍ଦ୍ର ରାବଣକୁ ବିଜୟା ଦଶମୀରେ ନିଧନ କରି ଅଯୋଧ୍ୟା ଫେରିବା ପରେ କାର୍ତ୍ତିକ ମାସ ଅମାବାସ୍ୟା ଦିନ ତାଙ୍କର ଅଭିଷେକ ଉତ୍ସବ ପାଳିତ ହୋଇଥିଲା । କୃଷ୍ଣ ନରକାସୁରକୁ ବଧ କରିବା ପରେ ମର୍ତ୍ତ୍ୟବାସୀ ତାଙ୍କୁ ଏହିଦିନ କାଉଁରିଆ କାଠି ଜାଳି ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ଅସୁର ରାଜା ବଳି ଦ୍ୱାରା ମାତା ଲକ୍ଷ୍ମୀ ସାତ ପାତାଳରେ ବନ୍ଦୀରୁ ମୁକ୍ତିଲାଭ କରିଥିଲେ । ଏହି ଦିନ ଓଡ଼ିଆ ସାଧବ ପୁଅ ତା'ର ବୋଇତ ନେଇ ଦୂର ବିଦେଶରୁ ପ୍ରତ୍ୟାବର୍ତ୍ତନ କରିଥାଏ । ତାଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଘିଅର ଦୀପ ଜଳା ଯାଉଥିଲା । ଜୈନ ଧର୍ମାବଲମ୍ବିମାନେ ଚବିଶ ତୀର୍ଥଙ୍କର ମହାବୀରଙ୍କର ନିର୍ବାଣ ଦିବସ ଉପଲକ୍ଷେ ଏହି ଦିବସକୁ ପାଳନ କରିଥାନ୍ତି । ସେମାନେ ଏହି ଦିବସକୁ ଯକ୍ଷରାତ୍ର ବୋଲି କହିଥାନ୍ତି । ଏହି ଦିନ ରାଜା ବିକ୍ରମାଦିତ୍ୟ ସିଂହାସନ ଆରୋହଣ କରିଥିଲେ ବୋଲି ଉଜ୍ଜୟିନୀବାସୀ ରାତ୍ରର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଆଲୋକିତ କରି ରଖିଥିଲେ । ଏହି ଦିବସରୁ ଗୁପ୍ତାବ୍ଦ ପ୍ରଚଳିତ ହୋଇଥିଲା । ଚାଲୁକ୍ୟ ବଂଶର ରାଜାଙ୍କ ଶାସନ କାଳରେ ଦୀପାବଳିର ସୂଚନା ମିଳେ । ସମ୍ରାଟ ଆକବର ଦୀପାବଳି ପାଳନ କରୁଥିଲେ ବୋଲି ନଜିର ଅଛି । ଦୟାନନ୍ଦ ସରସ୍ୱତୀଙ୍କର ମୃତ୍ୟୁ ଓ ସ୍ୱାମୀ ରାମତୀର୍ଥଙ୍କର ଜନ୍ମ ତଥା ମୃତ୍ୟୁ

ଏହି ଦିବସରେ ହୋଇଥିଲା । ଏହି ଦିବସରେ ପରଲୋକଗତ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଦିଆଯାଇଥିବାରୁ ଏହାକୁ ପୟା ଅମାବାସ୍ୟା ବୋଲି କୁହାଯାଇଥାଏ । ଏହି ଦିନ ଜଗତଗୁରୁ ଶଙ୍କରାଚାର୍ଯ୍ୟ ମୃତ ଦେହ ମଧ୍ୟରେ ପ୍ରବେଶ କରି ପୁନର୍ଜନ୍ମ ଲାଭ କରିଥିଲେ । ପୁନଶ୍ଚ ଗୁରୁଗୋବିନ୍ଦ ସିଂ ଗୋଆଲିୟର ଦୁର୍ଗରୁ ତାଙ୍କ ସହଯୋଗୀମାନଙ୍କ ସହ ମୁକ୍ତ ହୋଇଥିବାରୁ ଜୈନ ଓ ଶିଖ୍ ଧର୍ମାବଲମ୍ବିମାନେ ଏହି ଦିବସକୁ ଆଲୋକିତ ପର୍ବଭାବେ ପାଳନ କରିଥିଲେ ।

ମୋଟ ଉପରେ ଦୀପାବଳି ପର୍ବର ପ୍ରାଚୀନତା ଅନସ୍ୱୀକାର୍ଯ୍ୟ । ପରବର୍ତ୍ତୀ କାଳରେ ସଭ୍ୟତାର ବିକାଶ ପଥରେ ଦୀପାବଳିକୁ ଉତ୍ସବ ମୁଖର କରି ସମାଜରେ ସାମୂହିକ ଓ ଆନୁଷ୍ଠାନିକ ସ୍ୱୀକୃତି ଦେବା ମୂଳରେ ଯେଉଁସବୁ ଉପାଖ୍ୟାନ ଅନେକାଂଶରେ ଦାୟୀ, ପଣ୍ୟକାର ଓ ବଣିକମାନଙ୍କର ଅର୍ଥନୀତିକ ନବ ବର୍ଷର ପରିକଳ୍ପନା ତନ୍ମଧ୍ୟରୁ ଅନ୍ୟତମ । ସେମାନେ ଏତିକି ବେଳେ ନୂଆଖାତା ପତ୍ର ବର୍ଷକ ପାଇଁ ଖୋଲନ୍ତି । କୃଷିଭିତ୍ତିକ ବର୍ଷ ଗଣନା ଦୃଷ୍ଟିରୁ ଦୀପାବଳିର ତାତ୍ପର୍ଯ୍ୟ ପ୍ରକାଶ କରାଯାଇପାରେ । ଶସ୍ୟଦେବୀ ଲକ୍ଷ୍ମୀ ଆରାଧନା ଭୋଜିଭାତ ପ୍ରଭୃତି ବିତରଣର ବ୍ୟବସ୍ଥା ସେହି ପରିପ୍ରେକ୍ଷୀରେ ବିଚାରଯୋଗ୍ୟ । ଏତଦ୍‌ବ୍ୟତୀତ ଦୀପାବଳିରେ ଆଲୋକମାଳା ସଜାଇବା ଦ୍ୱାରା ବର୍ଷା ଋତୁରେ ଜନ୍ମ ନେଇଥିବା ସ୍ୱାସ୍ଥ୍ୟହାନିକର କୀଟ ପତଙ୍ଗ ଆଲୋକ ସଂସ୍ପର୍ଶରେ ଆସି ମୃତ୍ୟୁବରଣ କରନ୍ତି । ମୋଟ ଉପରେ କହିବାକୁ ଗଲେ ଏହା ଏମିତି ଏକ ପର୍ବ, ଯାହା ପୌରାଣିକ, ଐତିହାସିକ ଓ ସାମାଜିକ ପୃଷ୍ଠଭୂମି ଉପରେ ହିଁ ପର୍ଯ୍ୟବସିତ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ଦୀପାବଳି ହେଉଛି ଆଲୋକର ପର୍ବ । ଅନ୍ଧକାର ଦୂର କରି ଜଗତକୁ ଆଲୋକିତ କରିବା ପାଇଁ ପ୍ରତୀକାତ୍ମକ ଭାବରେ ଘରେ ଘରେ ଦୀପର ଆଲୋକ ପ୍ରଜ୍ୱଳିତ ହୁଏ । ଏହି ଆଲୋକ ଜଗତବାସୀଙ୍କୁ ଶାନ୍ତି, ସୌହାର୍ଦ୍ଦ୍ୟ ଓ ସୁଖର ବାର୍ତ୍ତା ପ୍ରଦାନ କରେ । ସେହିପରି ମା'କାଳୀ ଜଗତରେ ଶାନ୍ତି ପ୍ରତିଷ୍ଠା ପାଇଁ ଏହି ଦିବସରେ ପୂଜିତା ହୁଅନ୍ତି ।

**ସହାୟକ ଗ୍ରନ୍ଥସୂଚୀ :**

୧) ମିଶ୍ର, ଅନ୍ତର୍ଯ୍ୟାମୀ । ଭାରତୀୟ ଧର୍ମ ଓ ସଂସ୍କୃତି

୨) ପଣ୍ଡା, ଗୟାଧର । ସଂପାଦନା । ଶକ୍ତିମୟୀ । ଭଦ୍ରକ, ବ୍ରାହ୍ମଣପାଳ, ୨୦୦୮ / ୨୦୧୦ ।

---

ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ
ଚାନ୍ଦବାଲି, ଭଦ୍ରକ, ପିନ୍ – ୭୫୬୧୩୩



# ସତ୍ୟ ଓ ଅହିଂସାର ପ୍ରତୀକ ମହାତ୍ମା ଗାନ୍ଧୀ

ଚନ୍ଦ୍ରମଣି ସେଠୀ

ସତ୍ୟ ଓ ଅହିଂସାକୁ ଆଧାର କରି ମାନବ, ମାନବ ହୃଦୟକୁ ଜୟ କରିପାରେ । ଏହାଦ୍ୱାରା ବିଶ୍ୱରେ ତା'ର ମାନବିକତାର ପ୍ରତିଷ୍ଠା ହୋଇଥାଏ । ଶତ୍ରୁ ମିତ୍ରରେ ପରିଣତ ହୋଇପାରେ । ଯାହା ସଂସାରରେ ସତ୍ୟ, ତାହା ସବୁଦିନ ପାଇଁ ସତ୍ୟ । ସତ୍ୟର ଧ୍ୱଜା ସଦା ଚଳଚଞ୍ଚଳ । ସତ୍ୟ ପରିପ୍ରକାଶ ଦ୍ୱାରା ଜଣେ ଆଉ ଜଣଙ୍କର ଶତ୍ରୁ ହୋଇପାରେ, କିନ୍ତୁ ହୃଦୟର କଳଙ୍କ ବା ଅସଦାଚାର ସବୁଦିନ ପାଇଁ ଧୌତ ହୋଇଯାଏ । ସତ୍ୟ ସଂସାରକୁ ସରସ–ସୁନ୍ଦର କରେ । ସତ୍ୟପ୍ରେମୀ ମାନବ ସଦା ଆନନ୍ଦ ଅନୁଭବ କରେ । ଶତ୍ରୁ ତା'ର ପ୍ରତିଶୋଧ ନେଇପାରେ, କିନ୍ତୁ ସେ ଦଣ୍ଡକୁ ଭ୍ରୂକ୍ଷେପ କରେନାହିଁ । ସତ୍ୟବ୍ରତୀ ସର୍ବଦା ଈଶ୍ୱରପ୍ରେମୀ ବା ଭଗବତ୍ ପ୍ରେମୀ ଜୀବନ ବିତାଇଥାଏ । କବି ରାମକୃଷ୍ଣ ନନ୍ଦଙ୍କ ଲେଖାରେ:–

ସତ କହିବାକୁ କିଆଁ ଡରିବି
ସତ କହି ପଛେ ମଲେ ମରିବି ।



ଯେତେ ବିପଦ ଆସୁ ସତ୍ୟପ୍ରେମୀ ନିର୍ଭୟ ଭାବରେ ତା'ର ସମୟ ଅତିବାହିତ କରିଥାଏ । ତେଣୁ କୁହାଯାଏ – 'ସତ୍ୟମେବ ଜୟତେ' । ସର୍ବଦା ସବୁ କ୍ଷେତ୍ରରେ ସତ୍ୟର ଜୟ ଉପଲବ୍ଧି ହୋଇଥାଏ ।

ଏ ସମଗ୍ର ସୃଷ୍ଟି ସତ୍ୟ ଦ୍ୱାରା ପରିଚାଳିତ । ଏ ସଂସାର ମଧ୍ୟରେ କଳୁଷତା ଯେତେ ଅନୁଭବ ହେଲେ ମଧ୍ୟ କିଛି ଅଂଶରେ ସତ୍ୟତା ବ୍ୟାପ୍ତ ହୋଇଛି । ଯାହା ଫଳରେ ଏ ସୃଷ୍ଟି ପରିଚାଳିତ ହେଉଛି । ଅନ୍ୟ ପକ୍ଷରେ ମିଥ୍ୟା ଏ ସଂସାରକୁ ଯେତେ କଳୁଷିତ କଲେ ମଧ୍ୟ ସତ୍ୟ ତାହାକୁ ଧୌତ କରି ନିର୍ମଳ କରିଦିଏ । ସତ୍ୟ ଯୁଗେ ଯୁଗେ ମହାନ୍ । ସତ୍ୟବ୍ରତୀ ମାନବ ତା'ର ଜ୍ଞାନ ଖଡ୍‌ଗ ଦ୍ୱାରା ସମାଜରୁ ଅସତ୍ ବା କଳୁଷିତ ଚିନ୍ତାଗୁଡ଼ିକୁ ଛେଦନ କରିଥାଏ । ସତ୍ୟର ବ୍ୟାପକତା ସୁଦୂରପ୍ରସାରୀ । ଅନ୍ୟ ପକ୍ଷରେ ଅହିଂସା ଚିନ୍ତାଧାରା ମାନବକୁ ମହାମାନବରେ ପରିଣତ କରିଥାଏ । ଶତ୍ରୁର ହୃଦୟକୁ ଜୟ କରିବାକୁ ହେଲେ ଅହିଂସା ମାଧ୍ୟମରେ ତାହା ସମ୍ଭବ ହୋଇଥାଏ । ଏଥିପାଇଁ ସହନଶୀଳତା ଏକ ବଳିଷ୍ଠ ଅସ୍ତ୍ର । ଶତ୍ରୁ ପ୍ରତି ଶତ୍ରୁତା ଆଚରଣ ଦ୍ୱାରା ଶତ୍ରୁର କ୍ରୋଧାଗ୍ନି ବଢ଼ିଚାଲେ । ଯାହା ଫଳରେ ସେ ତା'ର ମାନସିକତା ହରାଇ ହୃଦୟର ପରମ ପୁରୁଷଙ୍କୁ ଭୁଲିଯାଏ । ଶତ୍ରୁର ପ୍ରତିଶୋଧ ବନ୍ଧୁକ ଗୁଳିରେ ନୁହେଁ, ଖଡ୍‌ଗର ଧାର ଦ୍ୱାରା ନୁହେଁ ବା କଳୁଷିତ ଭାଷା ଦ୍ୱାରା ନୁହେଁ । କେବଳ ଅହିଂସା ନୀତି ଦ୍ୱାରା ।

ଯେତେବେଳେ ଇଂରେଜ ବଣିକମାନେ ବେପାର ବଣିଜ କରିବା ଉଦ୍ଦେଶ୍ୟରେ ସାତ ସମୁଦ୍ର ଲଘଂନ କରି ଭାରତର ବିଭିନ୍ନ ସ୍ଥାନରେ ବସତି ସ୍ଥାପନ କରି ସ୍ୱର୍ଣ୍ଣପ୍ରସୂ ଭାରତର ଧନ ରତ୍ନ ଓ ପ୍ରକୃତିଦତ୍ତ ସମ୍ପଦରେ ମୁଗ୍ଧ ହୋଇ ବିସ୍ତାର ଲାଭ କରିବାକୁ ବସିଲେ ଏବଂ ପରିଶେଷରେ ଭାରତବର୍ଷରେ ନିଜର ସାମ୍ରାଜ୍ୟ ବିସ୍ତାର କଲେ । ଭାରତର ଅଜସ୍ର ଧନ ରତ୍ନ ତାଙ୍କ ଦେଶକୁ ବୋହିନେଲେ । ଭାରତବର୍ଷ ସମ୍ପୂର୍ଣ୍ଣ ଭାବରେ ବ୍ରିଟିଶ୍ ସରକାରଙ୍କ ଅଧୀନରେ ରହିଲା । ପ୍ରଜାମାନଙ୍କ ଉପରେ ବିଭିନ୍ନ ପ୍ରକାର 'କର' ଜୋର ଜବରଦସ୍ତ ବସାଇ ଇଂରେଜମାନେ ବିପୁଳ ଅର୍ଥ ତାଙ୍କ ଦେଶକୁ ବୋହିନେଲେ । ଯଦି କେହି 'କର' ପ୍ରଦାନରେ ଅବହେଳା କରୁଥିଲା, ତାକୁ କଠିନ ଦଣ୍ଡରେ ଦଣ୍ଡିତ କରାଯାଉଥିଲା । ଜଙ୍ଗଲ ମଧ୍ୟରେ ବ୍ୟାଘ୍ର ଓ ସିଂହ ଯେପରି ନିରୀହ ଜୀବମାନଙ୍କୁ ମାରି ନିଜର କ୍ଷୁଧା ମେଣ୍ଟାନ୍ତି, ସେହିପରି ବ୍ରିଟିଶ୍ ଶାସକଙ୍କ ହିଂସ୍ର ଭାବ ସାରା ଭାରତବର୍ଷକୁ ସଂକ୍ରମିତ କଲା । ଦୀର୍ଘ ଦୁଇ ଶତ ବର୍ଷ ଧରି ସେମାନଙ୍କ ଶାସନ ମଧ୍ୟରେ ସେମାନଙ୍କର ଲୁଣ୍ଠନ ଚିନ୍ତାଧାରା ଏତେ ବ୍ୟାପକ ହେଲା ଯେ, ସେମାନେ ଭାରତୀୟ ପଣ୍ୟଦ୍ରବ୍ୟ ପରିବର୍ତ୍ତେ ସ୍ୱଦେଶର ପଣ୍ୟଦ୍ରବ୍ୟ ବ୍ୟବହାର କରିବାକୁ ଭାରତୀୟଙ୍କୁ ବାଧ୍ୟ କଲେ । ଯେଉଁମାନେ ସେମାନଙ୍କ ଆଜ୍ଞା ପାଳନ କରିବାକୁ ଅବାଧ୍ୟ ହେଲେ ସେମାନଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରାଗଲା । ସେମାନଙ୍କର ନିଷ୍ଠୁର ଚିନ୍ତାଧାରା ଭାରତବାସୀଙ୍କ ପାଇଁ ଏକ ଦାରୁଣ ବ୍ୟାଧି ସ୍ୱରୂପ ସଂକ୍ରମିତ ହେଲା । ଏହାକୁ ବିରୋଧ କରି ଭାରତର ବିଭିନ୍ନ ଅଞ୍ଚଳରେ ଅଶାନ୍ତିର ବାତାବରଣ ସଂକ୍ରମିତ ହେବା ସଙ୍ଗେସଙ୍ଗେ ବ୍ରିଟିଶ୍ ଶାସକଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଗଲା । ସେସମୟରେ ଓଡ଼ିଶାର ଖୋର୍ଦ୍ଧା ଅଞ୍ଚଳର ପାଇକମାନଙ୍କ ବିପ୍ଳବ ଉଲ୍ଲେଖଯୋଗ୍ୟ । ସ୍ୱ ମାତୃଭୂମିର ମର୍ଯ୍ୟାଦା ଓ ସମ୍ମାନ ରକ୍ଷା ନିମନ୍ତେ ସେମାନେ ଖଡ୍‌ଗ ଦ୍ୱାରା ବିପ୍ଳବ ଆରମ୍ଭ କରିଥିଲେ । ସେମାନଙ୍କର ଏହି ଦୁଃସାହସିକ ବିପ୍ଳବ ଇଂରେଜ ଶାସକଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଦେଶର ସ୍ୱାଧୀନତା ସଂଗ୍ରାମରେ ଖୋର୍ଦ୍ଧାର ପାଇକମାନଙ୍କ ବିପ୍ଳବ ଏକ ଐତିହାସିକ ବିପ୍ଳବ ଥିଲା । ସେହିପରି ଓଡ଼ିଶାର ଅନ୍ୟ ସ୍ଥାନମାନଙ୍କରେ ଯଥା : କଟକ, ବାଲେଶ୍ୱର, ଢେଙ୍କାନାଳ, ସମ୍ବଲପୁର, କୋରାପୁଟ ଇତ୍ୟାଦି ଜିଲ୍ଲାମାନଙ୍କରେ ଗଣ ବିପ୍ଳବ ବ୍ରିଟିଶ୍ ଶାସକଙ୍କ ବିରୁଦ୍ଧରେ ଦେଖା ଦେଇଥିଲା ।

ଯେତେବେଳେ ସଂସାରରେ ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତି ଏବଂ ଅପରାଧ ତା'ର କାୟା ଭୟଙ୍କର ରୂପ ଧାରଣ କରିଥାଏ, ସେତେବେଳେ ଭଗବାନ ମାନବ ରୂପ ଧରି ଜନ୍ମଲାଭ କରି ଆସିଥା'ନ୍ତି । ଭାରତବାସୀଙ୍କ ଏହି ଦୁର୍ଦ୍ଦିନ ସମୟରେ ଗୁଜୁରାଟର ପୋରବନ୍ଦରଠାରେ ଜନ୍ମଲାଭ କରିଥିଲେ ମୋହନ ଦାସ କରମଚାନ୍ଦ ଗାନ୍ଧୀ । ତାଙ୍କର ଛାତ୍ର ଜୀବନରୁ ବ୍ରିଟିଶ୍ ସରକାରଙ୍କ ପାଶବିକ ଚିନ୍ତାଧାରା ତାଙ୍କ ହୃଦୟକୁ ବିଦାରିତ କରିଥିଲା । ଲଣ୍ଡନରେ ଓକିଲାତି ପାସ୍ କରିବା ପରେ ସେ ନିଜ ଦେଶ ଭାରତକୁ ଫେରିଆସିଲେ । ସେ କିଛିଦିନ ଭାରତରେ ଓକିଲାତି କରିଥିଲେ । କିନ୍ତୁ ମିଛ କହିବା ଓ ଲାଞ୍ଚ ଗ୍ରହଣ କରିବାକୁ ଏକ ଅପରାଧ ସ୍ୱୀକାର କରି ଓକିଲାତି ପେସାରୁ ଓହରିଗଲେ । ଭାରତବାସୀଙ୍କ କରୁଣ ଆର୍ତ୍ତନାଦ, ବ୍ରିଟିଶ୍ ଶାସକମାନଙ୍କର ଜନସାଧାରଣଙ୍କ ପ୍ରତି ଅମାନୁଷିକ ବଳ ପ୍ରୟୋଗ ତାଙ୍କ ହୃଦୟ କନ୍ଦରକୁ ବିଦାରିତ କରିଦେଇଥିଲା । ସେଥିପାଇଁ ତାଙ୍କ ହୃଦୟରେ ଜାଗ୍ରତ ହେଲା ସ୍ୱଦେଶ ଚିନ୍ତନ । କିପରି ନିଜ ମାତୃଭୂମି ଭାରତବର୍ଷକୁ ବ୍ରିଟିଶ୍ ଶାସନ କବଳରୁ ରକ୍ଷା କରିହେବ ଏବଂ ଦେଶରେ ସ୍ୱାଧୀନତାର ବାତାବରଣ ସୃଷ୍ଟି ହେବ, ଏହା ତାଙ୍କର ଭାବନାକୁ ବିଚଳିତ କରି ପକାଇଲା ।

ଦେଶ ମାତୃକାକୁ ରକ୍ଷା କରିବାକୁ ହେଲେ, ପ୍ରଥମେ ଦେଶବାସୀଙ୍କ ମଧ୍ୟରେ ଜନ ଜାଗରଣର ଆବଶ୍ୟକତା ଦରକାର ବୋଲି ସେ ଅନୁଭବ କଲେ । ସେତେବେଳେ ଦେଶରେ ଶିକ୍ଷାର ବିପୁଳ ପ୍ରସାର ହୋଇ ନ ଥିଲା । ଯେଉଁମାନେ ଦେଶପ୍ରେମୀ ଓ ଶିକ୍ଷିତ ସେମାନଙ୍କୁ ସେ ଏକାଠି କଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ଜବାହରଲାଲ୍ ନେହେରୁ, ଲାଲ୍ ବାହାଦୁର ଶାସ୍ତ୍ରୀ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍, ବାଲ୍ ଗଙ୍ଗାଧର ତିଲକଙ୍କ ଭଳି ଅନେକ ନେତୃବୃନ୍ଦ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ସହିତ ଯୋଗ ଦେଲେ । ଓଡ଼ିଶାର ହରେକୃଷ୍ଣ ମହତାବ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ସଦାଶିବ ମହାପାତ୍ର ପ୍ରଭୃତି ଅନେକ ନେତୃବୃନ୍ଦ ଏମାନଙ୍କ ସହିତ ସାମିଲ୍ ହେଲେ । ଗୋଟିଏ ଦୀପଶିଖାରୁ ଯେପରି ହଜାର ହଜାର ଦୀପଶିଖା ପ୍ରଜ୍ୱଳିତ ହୁଏ, ସେହିପରି ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କ ହୃଦୟର

ଦୀପଶିଖା ଭାରତର ହଜାର ହଜାର ହୃଦୟର ଦୀପଶିଖାକୁ ପ୍ରଜ୍ଜ୍ୱଳିତ କଲା । ଓଡ଼ିଶାର କଟକରେ ଜନ୍ମିତ ସୁଭାଷ ଚନ୍ଦ୍ର ବୋଷ ଏକ ବିପ୍ଳବୀ ନେତା ହିସାବରେ ସ୍ୱାଧୀନତା ସଂଗ୍ରାମରେ ସାମିଲ୍ ହୋଇଥିଲେ ।

ଆରମ୍ଭ ହେଲା ସ୍ୱାଧୀନତା ସଂଗ୍ରାମ କେବଳ ସତ୍ୟ ଓ ଅହିଂସା ନୀତି ବଳରେ । ମୋହନଦାସ କରମଚାନ୍ଦ ଗାନ୍ଧୀ ଥିଲେ ଏହି ସତ୍ୟ ଓ ଅହିଂସାର ଜ୍ୱଳନ୍ତ ଶିଖା । ଆନ୍ଦୋଳନ ତୀବ୍ର ଗତିରେ ସାରା ଭାରତ ବ୍ୟାପିଗଲା । ଭାରତମାତାର ଜୟଗାନରେ ସାରା ଦେଶ ପ୍ରକମ୍ପିତ ହୋଇଉଠିଲା । ବ୍ରିଟିଶ୍ ସରକାରଙ୍କୁ କୌଣସି ପ୍ରକାର ସାହାଯ୍ୟ ନ କରିବା ପାଇଁ ନିଷ୍ପତ୍ତି ନିଆଗଲା । ବ୍ରିଟିଶ୍ ଶାସକଙ୍କ ବନ୍ଧୁକ ଗୁଳିର ଗର୍ଜନ ସାରା ଦେଶବାସୀଙ୍କୁ ସ୍ତମ୍ଭୀଭୂତ କରିଦେଲା । ବନ୍ଧୁକ ଗୁଳିରେ କେତେ କେତେ ଦେଶପ୍ରେମୀ ସହିଦ୍ ହେଲେ । କେତେ କେତେ ନିରୀହ ଜନତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା, କେତେ କେତେ ନିରୀହ ଜନତାଙ୍କୁ କଳା ପାଣି ପଠାଇ ଦିଆଗଲା, କେତେକେତେ ସଂଗ୍ରାମୀଙ୍କୁ ଜ୍ୱଳନ୍ତ ଅଗ୍ନିକୁ ନିକ୍ଷେପ କରାଗଲା । ଶହଶହ ସଂଗ୍ରାମୀଙ୍କୁ ଜେଲ୍ ମଧ୍ୟରେ ଭର୍ତ୍ତି କରି ଦିଆଗଲା । ତଥାପି ସତ୍ୟ ଓ ଅହିଂସା ଯାହାକି ମହାତ୍ମା ଗାନ୍ଧୀଙ୍କ ନୀତିରୁ କେହି ଓହରି ନଥାନ୍ତି ।

ପଞ୍ଜାବର ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡରେ ଏକ ଆବଦ୍ଧ ସ୍ଥାନ ମଧ୍ୟରେ ନୃଶଂସ ବ୍ରିଟିଶ୍ ଶାସକଙ୍କ ଗୁଳିରେ ଅନେକ ସଂଗ୍ରାମୀ ମୃତ୍ୟୁବରଣ କରିଥିଲେ ଏବଂ ଅନେକ ସଂଗ୍ରାମୀ ଆହତ ହୋଇଥିଲେ । ବାଲେଶ୍ୱର ଜିଲ୍ଲାର ଇରମ୍‌ଠାରେ ବ୍ରିଟିଶ୍ ଶାସକଙ୍କ ଗୁଳିରେ ମଧ୍ୟ ଅନେକ ସହିଦ୍ ହୋଇଥିଲେ । କେବଳ ଏତିକି ନୁହେଁ, ଓଡ଼ିଶା ସମେତ ଭାରତର ବିଭିନ୍ନ ସ୍ଥାନରେ ହଜାର ହଜାର ସାଧାରଣ ଜନତା ସହିଦ୍ ହୋଇଥିଲେ । ସ୍ୱାଧୀନତା ସଂଗ୍ରାମରେ ଭାରତର ନାରୀମାନେ ମଧ୍ୟ ସାମିଲ୍ ହୋଇଥିଲେ । ଏହାବ୍ୟତୀତ ନାରୀଙ୍କୁ ପାଶବିକ ନିର୍ଯାତନା ଓ ମାନସିକ ନିର୍ଯାତନା ମଧ୍ୟ ଦିଆଯାଇଥିଲା ।

ଦାରୁଣ ଦୁଃଖ, ନିର୍ଯାତନା ଓ ସାରା ଭାରତବର୍ଷ ବ୍ରିଟିଶ୍ ଶାସକଙ୍କ ଗୁଳିରେ ଗର୍ଜନ କରୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କ ସତ୍ୟ ଓ ଅହିଂସା ନୀତିରୁ କେହି ବିଚ୍ୟୁତ ହୋଇ ନଥିଲେ । ମଗଧ ରାଜା ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକକୁ ପରିବର୍ତ୍ତିତ ହୋଇ ହୃଦୟରେ ତାଙ୍କର ଯେପରି ବିରାଟ ପରିବର୍ତ୍ତନ ଘଟିଥିଲା ଏବଂ ଶେଷରେ ମର୍ମେ ମର୍ମେ ହୃଦୟଙ୍ଗମ କରି ପାରିଥିଲେ ଯେ ମାନବ ହୃଦୟକୁ ମାନବ ଜୟ କରିବା ହେଉଛି ପ୍ରକୃତ ଧର୍ମ । ସେହିପରି ବିପ୍ଳବୀ, ରକ୍ତମୁଖା ବ୍ରିଟିଶ୍ ଶାସକଙ୍କ ହୃଦୟର ବିରାଟ ପରିବର୍ତ୍ତନ ଦେଖାଦେଲା ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ସତ୍ୟ ଓ ଅହିଂସା ନୀତି । କେବଳ ଭାରତ ନୁହେଁ, ସାରା ବିଶ୍ୱରୁ ବ୍ରିଟିଶ୍ ଶାସକଙ୍କ ନୀତି ପ୍ରତି ନିନ୍ଦା ପ୍ରସ୍ତାବ ଆସିଲା । ଶେଷରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତବର୍ଷ ସ୍ୱାଧୀନ ହେଲା ।

ଗାନ୍ଧୀଙ୍କ ସତ୍ୟ ଓ ଅହିଂସା ମନ୍ତ୍ରର ପ୍ରଭାବ ଏତେ ତୀବ୍ରତର ଥିଲା ଯେ, ଏହା ସମଗ୍ର ଭାରତର ଜନସାଧାରଣଙ୍କ ହୃଦୟକୁ ଛୁଇଁ ପାରିଥିଲା । ବ୍ରିଟିଶ୍ ଶାସକଙ୍କ ଅନ୍ୟାୟ, ଅତ୍ୟାଚାରର ଦମନଲୀଳା ଯେତେ ତୀବ୍ରତର ହେଲେ ମଧ୍ୟ ସ୍ୱାଧୀନତା ସଂଗ୍ରାମୀମାନେ ସତ୍ୟ ପଥରୁ କେବେ ବିଚ୍ୟୁତ ହୋଇ ନଥିଲେ ଓ ହିଂସାତ୍ମକ ନୀତିକୁ ପ୍ରୟୋଗ କରି ନଥିଲେ ।

ସତ୍ୟ ଓ ଅହିଂସା ନୀତିକୁ ଆଧାର କରି ଗାନ୍ଧିଜୀ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ, ବିଦେଶୀ ଦ୍ରବ୍ୟ ବର୍ଜନ କର, କୁଟି ଖାଅ, କାଟି ପିନ୍ଧ ତାଙ୍କର ଥିଲା ମୁଖ ନିଃସୃତ ବାଣୀ । ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଦାଣ୍ଡି ଯାତ୍ରା ଇତ୍ୟାଦି ତାଙ୍କ ଧୈର୍ଯ୍ୟ ଓ ସାହସର ପ୍ରତୀକ । ଭାରତବର୍ଷକୁ ରାମରାଜ୍ୟରେ ପରିଣତ କରିବା ଥିଲା ତାଙ୍କର ପ୍ରୟାସ । ସେ ଥିଲେ ଅହିଂସା ମାର୍ଗର ପଥିକ ଏବଂ ତାଙ୍କର ଏହି ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଅନେକ ଭାରତୀୟ ଏହି ମାର୍ଗରେ ସାମିଲ ହୋଇ ଭାରତବର୍ଷକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିଥିଲେ ।

ଗାନ୍ଧୀଙ୍କ ସରଳ ଜୀବନଯାପନ ଓ ଚାଲିଚଳଣି ଜନସାଧାରଣଙ୍କ ଉପରେ ଅନେକ ପ୍ରଭାବ ପକାଇଥିଲା । ଆଣ୍ଠୁ ଲୁଚୁ ନଥିବା ଖଣ୍ଡେ ଧୋତି ଓ ଖୋଲା ଦେହରେ କାନ୍ଧରେ ଖଣ୍ଡିଏ ଖଦଡ଼ ଗାମୁଛା ଥିଲା ତାଙ୍କର ବସ୍ତ୍ର । ବୃଦ୍ଧ ଶରୀରକୁ ହାତରେ ବାଡ଼ି ଧରି ସେ ସାରା ଭାରତବର୍ଷର ଜନସାଧାରଣଙ୍କ ହୃଦୟକୁ ସ୍ପର୍ଶ କରିଥିଲେ । ତାଙ୍କର ଦେଶାତ୍ମବୋଧକ ଭାଷଣ ଭାରତର ବିଭିନ୍ନ ସ୍ଥାନରେ ଉଭୟ ପୁରୁଷ ଓ ନାରୀମାନଙ୍କୁ ଏକ ସୂତ୍ରରେ ବାନ୍ଧି ରଖିଥିଲା । ଏକତା ହିଁ ବଳ । ସତ୍ୟ, ଶାନ୍ତି,

ଦୟା ଓ କ୍ଷମା ବଳରେ ମାନବ ଦେବତ୍ୱ ଲାଭ କରିପାରେ । ସ୍ୱାଧୀନତା ସଂଗ୍ରାମରେ ଗାନ୍ଧୀ ଏକାଧିକ ବାର ଜେଲ୍ ଯାଇଛନ୍ତି । ତାଙ୍କ ସହିତ ଅନ୍ୟ ବହୁ ସଂଗ୍ରାମୀ ଜେଲ୍ ଦଣ୍ଡ ମଧ୍ୟ ଭୋଗିଛନ୍ତି । ତଥାପି କାରାଗାର ମଧ୍ୟରେ ଆବଦ୍ଧ ହୋଇ ରହିଥିଲେ ମଧ୍ୟ ସେମାନଙ୍କର ଭାରତ ମାତା କି ଜୟ, ସ୍ୱାଧୀନ ଭାରତର ଜୟ ବୋଲି ତୁଣ୍ଡରୁ ଧ୍ୱନିତ ହେଉଥିଲା । ସେମାନେ ଥିଲେ ଦେଶ ମାତୃକାର ରକ୍ଷାକାରୀ ଓ ଜନସାଧାରଣଙ୍କ ପ୍ରେରଣାର ଉତ୍ସ ।

ମହାନ୍ ବିପ୍ଳବୀ ଓ ସ୍ୱାଧୀନତା ସଂଗ୍ରାମୀ ସୁଭାଷ ବୋଷ ଯିଏ କି ମୁକ୍ତ କଣ୍ଠରେ ଜନସାଧାରଣଙ୍କୁ କହୁଥିଲେ ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି, ବ୍ରିଟିଶ୍ ଶାସକଙ୍କୁ ଦେଶରୁ ବିତାଡ଼ିତ କରିବି, ସେ ନିଜେ ଗାନ୍ଧୀଙ୍କୁ 'ଜାତିର ଜନକ' ଉପାଧିରେ ଭୂଷିତ କରିଥିଲେ । ଦେଶର ବିଶିଷ୍ଟ ଜନନାୟକ ରବିନ୍ଦ୍ରନାଥ ଟାଗୋର୍, ଗାନ୍ଧୀଙ୍କୁ 'ମହାତ୍ମା' ଉପାଧିରେ ଭୂଷିତ କରିଥିଲେ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ସାରା ଭାରତବର୍ଷ କାହିଁକି ସାରା ବିଶ୍ୱରେ ବ୍ୟାପ୍ତ । ଭାରତର ସମସ୍ତ ଜନସାଧାରଣ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ତାଙ୍କୁ ଭଲ ପାଇଥିଲେ । ତେଣୁ ତାଙ୍କୁ ଜାତିର ଜନକ ହିସାବରେ ଆଖ୍ୟା ଦିଆଯାଇଛି । ସ୍ନେହ, ଶାନ୍ତି, ଦୟା, କ୍ଷମା ଓ କରୁଣାର ସେ ଥିଲେ ଅନ୍ତହୀନ ସାଗର । ହୃଦୟ ମାଧ୍ୟମରେ ହୃଦୟକୁ ଜୟ କରି ସମସ୍ତଙ୍କୁ ଆପଣେଇ ନେବା ଶକ୍ତି ତାଙ୍କଠାରେ ଥିଲା । ମହାନ୍ ଉଦାରଯୁକ୍ତ ବ୍ୟକ୍ତିତ୍ୱ ତାଙ୍କଠାରେ ବ୍ୟାପ୍ତ ଥିଲା । ତାଙ୍କର ନିର୍ମଳ ଓ ନିଷ୍କପଟ ହୃଦୟର ବ୍ୟାପ୍ତତା ସାରା ବିଶ୍ୱକୁ ସ୍ତମ୍ଭୀଭୂତ କରିଥିଲା । ସୃଷ୍ଟିର ମଙ୍ଗଳ ବା ସାରା ବିଶ୍ୱବାସୀଙ୍କର ମଙ୍ଗଳ ସାଧନ ଥିଲା ତାଙ୍କର ଧର୍ମ । ସେ କହୁଥିଲେ – ମାନବ ସେବା ହିଁ ଭଗବାନଙ୍କ ସେବା । ସେ ନିଜେ କୁଷ୍ଠ ରୋଗୀଙ୍କର ସେବା କରି ଜନସାଧାରଣଙ୍କୁ ଚେତାଉ ଥିଲେ । ମାନବ ହୃଦୟରେ ଭଗବାନଙ୍କ ଦର୍ଶନ ହିଁ ପ୍ରକୃତ ଦର୍ଶନ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭଗବାନଙ୍କର ସମସ୍ତେ ଅମୃତ ସନ୍ତାନ । ମନ୍ଦିର ଭିତରେ ଦେବଦେବୀଙ୍କ ଦର୍ଶନ ପାଇଁ ସମସ୍ତଙ୍କର ସମାନ ଅଧିକାର ଅଛି ବୋଲି ଗାନ୍ଧିଜୀ କହୁଥିଲେ । ଭାରତୀୟ ଦର୍ଶନ ଶାସ୍ତ୍ରରେ ମହାତ୍ମା ଗାନ୍ଧୀଙ୍କର ଆଦର୍ଶ ଚିର ସ୍ମରଣୀୟ । ସେ ଥିଲେ ଭଗବତ୍ ଗୀତା ପ୍ରେମୀ । ତାଙ୍କ ପାଖରେ ଗୀତା ସଦା ସର୍ବଦା ରହିଥାଏ । ଏହି ଗୀତାର ତତ୍ତ୍ୱକୁ ଆଧାର କରି ତାଙ୍କର ଜୀବନଶୈଳୀ ମହାନରୁ ମହାନତର ହୋଇଥିଲା । ବାସ୍ତବରେ ସେ ମହାତ୍ମା ଉପାଧିର ଅଧିକାରୀ । ଏପରି ବ୍ୟକ୍ତିତ୍ୱ ବିରଳ । ତାଙ୍କର ଦେଶ ବା ଜାତି ପ୍ରତି ଉତ୍ସର୍ଗୀକୃତ ପ୍ରେରଣା ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ ହେଉ । ପୁଣ୍ୟଭୂମି ଭାରତ ଭୂମିରେ ଏହିପରି ମହାତ୍ମା ଜନ୍ମଲାଭ କରନ୍ତୁ । ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା । ଦେଶର ସ୍ୱାଧୀନତା ସବୁଦିନ ପାଇଁ ବଳବତ୍ତର ରହୁ । ଯୁଗେଯୁଗେ ପୁଣ୍ୟଭୂମି ଭାରତବର୍ଷରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଜୟଗାନ ହେଉଥାଉ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ–୧୦



# କାର୍ତ୍ତିକ ମାସର ମାହାତ୍ମ୍ୟ

ରମାକାନ୍ତ ରାଉତ

ପଦ୍ମ ପୁରାଣରେ ଉତ୍ତରଖଣ୍ଡ ବର୍ଣ୍ଣନାନୁସାରେ କାର୍ତ୍ତିକ ମାସ ହିଁ ଭଗବତ ଆରାଧନା, ଉପାସନା ଦୃଷ୍ଟିରୁ ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ମାସ ରୂପରେ ସର୍ବଜନବିଦିତ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ ରାଧା ଦାମୋଦର ବେଶରେ ପ୍ରଭୁ ଶୋଭା ପାଇଥାନ୍ତି । କିନ୍ତୁ ଶୁକ୍ଳ ଏକାଦଶୀରୁ ପୂର୍ଣ୍ଣିମା ଯାଏଁ ବିଭିନ୍ନ ବେଶରେ ଶ୍ରୀଜୀଉମାନଙ୍କୁ ଭକ୍ତମାନେ ଯଥାକ୍ରମେ ଲକ୍ଷ୍ମୀନାରାୟଣ ବାଙ୍କଚୂଡା, ତ୍ରିବିକ୍ରମ, ଡାଳିକିଆ ଓ ରାଜବେଶ (ସୁନାବେଶ)ରେ ଦର୍ଶନ କରିଥାନ୍ତି ।

ଆଶ୍ୱିନ ମାସ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଏକାଦଶୀ ପର୍ଯ୍ୟନ୍ତ ସକାଳ ଧୂପ ପୂର୍ବରୁ ମହାପ୍ରଭୁ ଜଗନ୍ନାଥ ଯେଉଁ ବେଶ ହୁଅନ୍ତି, ତାହା ରାଧା ଦାମୋଦର ବେଶ ରୂପେ ପରିଚିତ । ନିମ୍ବାର୍କାଚାର୍ଯ୍ୟଙ୍କର ଶ୍ରୀକ୍ଷେତ୍ର ରହଣି ସମୟରେ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଠିଆ କିଆ, ବାଙ୍କଚୂଡା, ଡାଳିକିଆ ରାଜବେଶ ପ୍ରଭୃତି ପ୍ରଚଳିତ ହୋଇଆସୁଅଛି । ରାଧା ଦାମୋଦର ବେଶରେ ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ତିକଚ୍ଛ ପରିଧାନ କରନ୍ତି । ହସ୍ତରେ ଲାଗିହୁଏ ସୁବର୍ଣ୍ଣ ନୀଳଭୁଜ, ବାଉଁଶ ପାତିଆ କନାରେ ନିର୍ମିତ ଚୂଳ ତ୍ରିମୁଣ୍ଡି ଉପରେ ଥାଏ ଏବଂ ଚୂଳର ଅଗ୍ର ଭାଗରେ ଚନ୍ଦ୍ରିକା ଶୋଭାପାଏ । ପରମ ବ୍ରହ୍ମ ଠାକୁରଙ୍କ ଦର୍ଶନ କରିବା ପାଇଁ ପ୍ରତିଦିନ ହଜାର ହଜାର ଶ୍ରଦ୍ଧାଳୁ ଭକ୍ତ ଉପସ୍ଥିତ ହୁଅନ୍ତି । ରାଧା ଦାମୋଦର ବେଶ ରାଧାକୃଷ୍ଣଙ୍କର ଅପୂର୍ବ ଲୀଳାର ପରିଚୟ ଦିଏ । କୃଷ୍ଣଙ୍କୁ ଦାମ (ଦଉଡି)ରେ ଯଶୋଦା ବାନ୍ଧି ଦେଇଥିଲେ ବୋଲି ତାଙ୍କର ନାମ ଦାମୋଦର । କାର୍ତ୍ତିକ ମାସରେ ହବିଷ୍ୟାଳୀମାନେ ସକାଳୁ ପଞ୍ଚତୀର୍ଥରେ ସ୍ନାନ କରି ଶ୍ରୀଜଗନ୍ନାଥଙ୍କର ରାଧା–ଦାମୋଦର ବେଶ ଦର୍ଶନ କରନ୍ତି ।

ଭଗବାନ ବିଷ୍ଣୁଙ୍କ ଅତିପ୍ରିୟ ତଥା ଭୋଗ ଓ ମୋକ୍ଷରୂପୀ ଫଳ ପ୍ରଦାନକାରୀ ମାସଟି ହେଉଛି ଏହି ପବିତ୍ର କାର୍ତ୍ତିକ ମାସ । ଶାସ୍ତ୍ର କହେ, କାର୍ତ୍ତିକ ମାସସମ କୌଣସି ମାସ ନାହିଁ । ପଦ୍ମପୁରାଣରେ ବର୍ଣ୍ଣିତ ଅଛି, କାର୍ତ୍ତିକ ମାସରେ ବ୍ରତଧାରୀ ବ୍ୟକ୍ତି ଯଦି ରାତ୍ରିରେ ବିଷ୍ଣୁଙ୍କ ନିକଟରେ ଜାଗରଣ, ପ୍ରାତଃସ୍ନାନ ତୁଳସୀ ସେବନ, ଉଦାପନ କରିବା, ଦୀପଦାନ ଦେବା ଏହି ପାଞ୍ଚଟି ନିୟମ ପାଳନ କରେ, ତାକୁ ବ୍ରତର ପୂର୍ଣ୍ଣଫଳ ପ୍ରାପ୍ତ ହୋଇଥାଏ ।

କାର୍ତ୍ତିକ ମାସରେ ବ୍ରତ ଓ ତା'ର ମାହାତ୍ମ୍ୟ ବିଷୟରେ ମହାଦେବ ଶିବ କାର୍ତ୍ତିକଙ୍କ ଆଗରେ ବର୍ଣ୍ଣନା କରି କହିଲେ:– ପୁତ୍ର କାର୍ତ୍ତିକ ! କାର୍ତ୍ତିକ ମାସ ହେଉଛି ପ୍ରାତଃସ୍ନାନ ପାପନାଶକ । ଏହି ପବିତ୍ର ମାସରେ ଯେଉଁ ବ୍ୟକ୍ତି ବ୍ରତପାଳନ କରେ, ପୂର୍ଣ୍ଣଫଳ ଲାଭ କରିଥାଏ । ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣ କାଳରେ ବ୍ରାହ୍ମଣକୁ ପୃଥ୍ୱୀ ଦାନ କରି ଯେଉଁ ଫଳପ୍ରାପ୍ତି ହୋଇଥାଏ, କାର୍ତ୍ତିକ ମାସ ସାରା ଭୂଇଁରେ ଶୟନ କରୁଥିବା ବ୍ୟକ୍ତି ହିଁ ସେଇ ପୁଣ୍ୟଫଳ ଲାଭ ପାଇଥାଏ । କାର୍ତ୍ତିକ ମାସରେ ବ୍ରାହ୍ମଣ ଦମ୍ପତିମାନଙ୍କୁ ଭୁରି ଭୋଜନ ଦିଆଯାଇ ପୂଜନ କରାଯାଏ । କାର୍ତ୍ତିକ ପୂର୍ଣ୍ଣିମା ରାତିରେ ବ୍ରତକରି ବୃଷଭ ଦାନ କରିବା ଦ୍ୱାରା ଶିବପଦପ୍ରାପ୍ତ ହୋଇଥାଏ । ଗୋମାତା, ହସ୍ତୀ, ଅଶ୍ୱ ରଥ, ଘିଅ ଆଦି ଦାନ କରିବା ଦ୍ୱାରା ଧନ ସମ୍ପତ୍ତି ଐଶ୍ୱର୍ଯ୍ୟ ଲାଭ ହୁଏ । ବ୍ରତଧାରୀ ବ୍ୟକ୍ତି ଏହି ଶୁଭଦିନରେ ଉପବାସ କରି ଭଗବାନଙ୍କୁ ସ୍ମରଣ ଆଉ ଚିନ୍ତନ କଲେ ଯଜ୍ଞତୁଲ୍ୟ ଫଳଲାଭ ହେବା ସହ ସୂର୍ଯ୍ୟାଲୋକ ବି ପ୍ରାପ୍ତି

ହୋଇଥାଏ । କାର୍ତ୍ତିକ ମାସରେ ମେଷ ଦାନ କରାଯାଏ । ତେବେ ଗ୍ରହଯୋଗ କଷ୍ଟ ବା ଦୋଷ ନାଶ ହୁଏ । ଏହି ମାସରେ କନ୍ୟାଦାନ କରିବା ଦ୍ୱାରା ସନ୍ତାନ ବ୍ରତପୂର୍ଣ୍ଣ ହୋଇଥାଏ । କାର୍ତ୍ତିକ ମାସରେ ରାଶିଦାନ ନଦୀ ସ୍ନାନ ସଦା ସାଧୁସଙ୍ଗ ସଜ୍ଜନମାନଙ୍କ ଦର୍ଶନ ଏବଂ ପଳାଶପତ୍ରର ଖଲିରେ ଭୋଜନ କଲେ ମୋକ୍ଷପ୍ରାପ୍ତି ହୋଇଥାଏ । ପବିତ୍ର କାର୍ତ୍ତିକ ମାସରେ ଯେଉଁବ୍ୟକ୍ତି ମୌନ ବ୍ରତ ପାଳନ କରେ, ପଳାଶପତ୍ରରେ ଭୋଜନ କରେ, ରାଶିମିଶ୍ରିତ ଜଳରେ ସ୍ନାନ ନିରନ୍ତର କ୍ଷମାର ଆଶ୍ରୟ ତଥା ଭୂଇଁରେ ଶୟନ କରେ, ଏ ସବୁ ନିୟମ ଯଥାବିଧି ଅନୁସାରେ ପାଳନ କରୁଥିବା ବ୍ୟକ୍ତିର ପୁରୁଷ ପୁରୁଷ ଧରି ଯୁଗ ଯୁଗର ସମସ୍ତ ପାପ କ୍ଷୟ ହୋଇଯାଇଥାଏ । ଯେଉଁ ବ୍ୟକ୍ତି କାର୍ତ୍ତିକ ମାସରେ ପ୍ରତିଦିନ ଖଲିପତ୍ରରେ ଭୋଜନ କରେ, ତାଙ୍କୁ ଇନ୍ଦ୍ରଙ୍କ ଦୁର୍ଗତିକୁ ସାମ୍ନା କରିବାକୁ ପଡିନଥାଏ । ବରଂ ସେ ବ୍ୟକ୍ତି ସକଳ ତୀର୍ଥ ପୁଣ୍ୟଫଳର ଅଧିକାରୀ ହୋଇଥାଏ । ବ୍ରତଧାରୀ ବ୍ୟକ୍ତିର ସମସ୍ତ ମନସ୍କାମନା ପୂର୍ଣ୍ଣ ହୋଇଥାଏ । କାର୍ତ୍ତିକ ମାସ ପୂର୍ଣ୍ଣିମା ଆରମ୍ଭରେ ପ୍ରତି ରାତ୍ରରେ ବ୍ରତ ଆଉ ଜାଗରଣ କରିବା ଦ୍ୱାରା ସମସ୍ତଙ୍କ ମନୋବାଞ୍ଛା ପୂରଣ ହୋଇଥାଏ ବୋଲି ପୁରାଣରେ ବର୍ଣ୍ଣିତ ଅଛି । ପବିତ୍ର କାର୍ତ୍ତିକ ମାସରେ ବ୍ରତଧାରୀମାନେ ବ୍ରାହ୍ମଣ ଭୋଜନ ହୋମ ଓ ଦୀପ ପ୍ରଜ୍ୱଳନ କରିବାର ବିଧି ମଧ୍ୟ ରହିଅଛି । ଏହି ପାବନ ଦିବସରେ ଯମୁନା ନଦୀରେ କାର୍ତ୍ତିକ ସ୍ନାନ ସାରି ରାଧାକୃଷ୍ଣଙ୍କୁ ପୂଜନ, ଦୀପଦାନ ତଥା ବ୍ରାହ୍ମଣ ଭୋଜନ ଆଦି କରାଯାଏ ।

ଏହି ମାସରେ ଦୀପଦାନ ବିଶେଷ ଗୁରୁତ୍ୱ ଲାଭ କରିଥାଏ । କାର୍ତ୍ତିକ ମାସରେ ଯେଉଁ ବ୍ୟକ୍ତି ଠିକ୍ ସନ୍ଧ୍ୟା ସମୟରେ ଭଗବାନ ଶ୍ରୀହରିଙ୍କୁ ଆବାହନ କରି ରାଶି ତୈଳରେ ଦୀପ ପ୍ରଜ୍ୱଳନ କରେ ସେ ଅତୁଲ୍ୟ ଲକ୍ଷ୍ମୀ ରୂପ ସୌଭାଗ୍ୟ ଧନ ସମ୍ପତ୍ତିର ଅଧିକାରୀ ହୋଇଥାଏ । କାର୍ତ୍ତିକ ଅମାବାସ୍ୟା ଦିନ ପୂର୍ବ ପୁରୁଷଙ୍କ ସ୍ମୃତି ନିମନ୍ତେ ପିତୃଶ୍ରାଦ୍ଧ ହୁଏ । ସନ୍ଧ୍ୟାରେ ଦୀପ ଦାନ କରାଯାଏ । ଘିଅ ବଳିତା ଓ କାଉଁରିଆ କାଠିରେ ନିଆଁ ହୁଳା ଦେଖାଇ ବାଇଶି ପାବଚ୍ଛାଠାରେ ବଡବଡିଆ ଡାକ ଦିଆଯାଏ ।

ପବିତ୍ର କାର୍ତ୍ତିକ ମାସରେ ତୁଳସୀ ଉପାସନାରେ ସବୁଠାରୁ ମହାନ ପୁଣ୍ୟଫଳ ଲାଭ ମିଳିଥାଏ । ପ୍ରୟାଗରେ ସ୍ନାନ କଲେ କାଶୀରେ ମୃତ୍ୟୁହେଲେ ଆଉ ବେଦର ସ୍ୱାଧ୍ୟାୟ କଲେ ଯେଉଁ ପୁଣ୍ୟଫଳ ଲାଭ ମିଳିଥାଏ । ସେସବୁ ପୁଣ୍ୟ କେବଳ ତୁଳସୀ ପୂଜନ ଦ୍ୱାରା ହିଁ ପ୍ରାପ୍ତ ହୁଏ । ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଅଛି, ପବିତ୍ର କାର୍ତ୍ତିକ ମାସରେ ବ୍ରାହ୍ମ ମୁହୂର୍ତ୍ତରେ ଯେକୌଣସି ପବିତ୍ର ନଦୀରେ ସ୍ନାନ ତର୍ପଣ କରି ଭଗବାନ ବିଷ୍ଣୁ ତଥା ତାଙ୍କ ଇଷ୍ଟଦେବଙ୍କୁ ଉପାସନା କଲେ ପୁଣ୍ୟଫଳ ମିଳିଥାଏ । ପବିତ୍ର କାର୍ତ୍ତିକ ମାସରେ ସକାଳୁ ସକାଳୁ ସ୍ନାନ କଲେ ଶରୀର ନିରୋଗ ଓ ସୁସ୍ଥ ରହିଥାଏ । ଏହି ପବିତ୍ର ମାସରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ବେଶ ହୋଇଥାଏ । ଯଥା– ରାଧାଦାମୋଦର ବେଶ (କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ), ହରିହର ବେଶ (ଦୀପାବଳି ଅମାବାସ୍ୟାଠାରୁ କାର୍ତ୍ତିକ ପୂର୍ଣ୍ଣିମା ଯାଏଁ ପ୍ରତି ସୋମବାର), ଲକ୍ଷ୍ମୀନାରାୟଣ ବେଶ (ଶୁକ୍ଳ ଏକାଦଶୀ), ତ୍ରିବିକ୍ରମ ବେଶ (ଶୁକ୍ଳ ଦ୍ୱାଦଶୀ), ବାଙ୍କଚୂଡା ବେଶ (ଶୁକ୍ଳ ତ୍ରୟୋଦଶୀ), ଲକ୍ଷ୍ମୀ ନୃସିଂହ ବେଶ (ଶୁକ୍ଳ ଚତୁର୍ଦ୍ଦଶୀ), ରାଜରାଜେଶ୍ୱର ବେଶ (ପୂର୍ଣ୍ଣମୀ), ନାଗାର୍ଜୁନ ବେଶ (ପଞ୍ଚୁକ ଛଅ ଦିନ ପଡିଲେ) ।

**କାର୍ତ୍ତିକ ବ୍ରତ ଓ ବାଳ ଧୂପଭୋଗ :** ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ ରାଧା ଦାମୋଦର ବେଶ ବାଳଧୂପ ଓ କାର୍ତ୍ତିକ ବ୍ରତ କରାଯାଇଥାଏ । ପବିତ୍ର କାର୍ତ୍ତିକ ମାସରେ ସକାଳ ଧୂପ ପରେ ବାଳଭୋଗ ଧୂପ ହୁଏ ଓ ବନ୍ଦାପନା କରାଯାଏ । ବାଳଭୋଗ ପ୍ରଚଳନ ସମ୍ପର୍କରେ ଏକ କାହାଣୀ ଦାର୍ଢ୍ୟତା ଭକ୍ତିରେ ବର୍ଣ୍ଣନା ଅଛି । ଜଗନ୍ନାଥଙ୍କର ସେବକ ତଳିଚ୍ଛ ମହାପାତ୍ର ଗଜପତି ମହାରାଜା ମନ୍ଦିରକୁ ଆଗମନ କରୁଥିବାର ଶୁଣି ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ କୌଣସି ପୁଷ୍ପମାଲ୍ୟ ନଥିବାର ଦେଖିଲେ । ହଠାତ୍ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ତଳିଚ୍ଛ ମହାପାତ୍ର ନିଜ ଗଳାରେ ପିନ୍ଧିଥିବା ଫୁଲମାଳଟି ଶ୍ରୀଜଗନ୍ନାଥଙ୍କୁ ପିନ୍ଧାଇ ଦେଲେ ଓ ମହାରାଜ ଆସିବା ପରେ ସେହି ମାଳଟିକୁ ଶ୍ରୀଜଗନ୍ନାଥଙ୍କ ଗଳାରୁ ଆଣି ରାଜାଙ୍କୁ ଦେଲେ । ରାଜା ହଠାତ୍ ଦେଖିଲେ ଗୋଟିଏ ଲମ୍ବା ବାଳ । ଏହାର କାରଣ ପଚାରିବାରୁ ମହାପାତ୍ରେ କାଳିଆ ଠାକୁରଙ୍କ ଉପରେ ଭରଷାରେ ଛାଡି ରହିଲେ ଓ ପ୍ରଭୁ

ମଧ୍ୟ ଦାସର ମହତ୍ୱ ରଖିଲେ । ରାଜା ସିଂହାସନ ଉପରେ ଚଢ଼ି ମହାପ୍ରଭୁଙ୍କର ମସ୍ତକରେ କେଶ ଶ୍ରୀମଣ୍ଡକରୁ ବାହାରିବା ଦେଖି ଆନନ୍ଦ ବିହ୍ୱଳରେ କାନ୍ଦି ପକାଇଲେ ଓ ଅପୂର୍ବ ମହିମା ଅନୁଭବ କଲେ । ସେହିଦିନଠାରୁ ଏହି ତ୍ରିମୁଣ୍ଡୀଲାଗି ବେଶର ପରମ୍ପରା ପ୍ରଚଳିତ ହେଲା ଓ ବାଲଧୂପ ଭୋଗ ହେବାର ଗ୍ରହଣୀୟ ହେବାକୁ ରାଜା ଆଜ୍ଞା ଦେଲେ ଓ ଶ୍ରୀକ୍ଷେତ୍ରର ମଠାଧୀଶମାନେ ଏହି ଭୋଗ ଦ୍ରବ୍ୟ ପଠାଇବେ ବୋଲି ରାଜା କହିଲେ । ଏହାର ସ୍ମୃତି ରୂପରେ ବାଳଭୋଗର ପ୍ରଚଳନ କରାଯାଇଛି ।

ଗ୍ରାମ– ରାଣୀଗୋଡା, ପୋ–ଶୁକ୍ଳେଶ୍ୱର
ମାହାଙ୍ଗା, ଜି–କଟକ

# ହୋଇଯା ତୁ ମା’ ଭୈରବୀ

ବେବୀ ଶତପଥୀ

ଭାବୁଛି ଥରେ ଯଦି ଦୁନିଆର ଆଲୋକକୁ ଦେଖନ୍ତି
ଦୁନିଆକୁ ମଧ୍ୟ ମୋର କରାମତି ଦେଖାଇ ଦିଅନ୍ତି
ଯେପରି କଂସ ଦ୍ୱାରା ଦେବକୀଙ୍କ ଗର୍ଭ ହତ୍ୟା
ବନ୍ଦୀ କାରାଗାର ମଧ୍ୟରୁ କୃଷ୍ଣ ଯାଇ ବଢ଼ିଲେ ଗୋପପୁରେ
କଂସର ନିଧନ ପାଇଁ ।

ସେପରି ଥରେ ଯଦି ମା’ ତୁ ମୋତେ ଜନ୍ମ ଦିଅନ୍ତୁ
ମୁଁ ଚିର କୃତଜ୍ଞ ରୁହନ୍ତି ତୋ’ର ପାଖରେ
ପଛ ଘୁଞ୍ଚା ନାହିଁ ଯେଣୁ ବୀରର ଜାତକେ
‘ନିଜ ବଂଶ ରକ୍ଷା’– ଏ ଛାର କଥା ପାଇଁ
କିମ୍ବା ଏତେ ଆତଙ୍କ ?

ଝିଅ କ’ଣ ପୁଅଠୁ କମ୍ ?
ତେବେ ପୁଅ ଆସିଲା କେଉଁଠୁ ?
କେଉଁ ନାରୀ ତ ମାତା ରୂପରେ ତାକୁ ଜଗତକୁ ଆଣିଲା ।

ଡରିବାଟା ତ ଏକ ପିଲାଖେଳ
ଯିଏ ଡରିବ, ତାକୁ ଡରାଇବେ ସମସ୍ତେ
ଏଇତ ଦୁନିଆ ନିୟମ

ଡରକୁ ତୋ ମନରୁ ପୋଛିଦେ
ନିର୍ଭୟରେ ତୋର କନ୍ୟାଭ୍ରୂଣକୁ ଜନ୍ମ ଦେ
ଦେଖିବୁ ତୋର ଅମାପ ଆତ୍ମସନ୍ତୋଷ ।

ଅନ୍ୟାୟକୁ ପ୍ରଶୟ ଦେବା ଯେ ଏକ ଅନ୍ୟାୟ
ଦୁନିଆ ବଢ଼ିବ ଖାଲି ପାପର ଭାରରେ
ସମସ୍ତେ ଯଦି ଚିନ୍ତିବା ନିଜ ନିଜ କଥା ନେଇ
କିଏ ତେବେ ଆଗେଇବ ଏ ରଣ ଭୂମିରେ ?

ଲଢୁ ଲଢୁ ତୋ’ର ପ୍ରାଣଟି ଚାଲିଯିବ
ଏଥିପାଇଁ ଏତେ ଭୟ ! ଯାଉ ଜଡ଼ ଜୀବନ
ଆସୁ ଜୀବନ ଚେତନା
ଜାଗନ୍ତୁ କୋଟି କୋଟି ଜନତା ।
ନାରୀର ବିଭିନ୍ନ ରୂପ ଦୁର୍ଗା କାଳୀ ଭଳି
ଯଦି ଭଲ ହେଲେ ତୋତେ ଏତେ ଅସୁବିଧା
ତେବେ ହୋଇଯା ତୁ ମା’ ଭୈରବୀ ।

ଓଡ଼ିଶା ସଚିବାଳୟ ସେବା
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ଶହୀଦ ମଦନଲାଲ୍ ଧିଙ୍ଗ୍ରା

ପୀତାମ୍ବର ରାଉତ

ପ୍ରଥମ ହେବାରେ ଥାଏ ଅନନ୍ୟ ଅନୁଭୂତି । ପ୍ରଥମ କେବଳ ପ୍ରଥମ । ସ୍ୱତନ୍ତ୍ରତାର ସ୍ଥାନ । ପ୍ରଥମ ହୋଇଥିବା ବ୍ୟକ୍ତି ଯେତିକି ଆତ୍ମବିଭୋର ହୁଏ ସେତିକି ବାଧାବିଘ୍ନ ଏଡେଇ ଆଗକୁ ଗତି କରେ । ପ୍ରଥମ ଦିନଟି ଅଭୁଲା, ଚିରସ୍ମରଣୀୟ । ପ୍ରଥମ କରି ସନ୍ତାନଟିଏ ଘରକୁ ଆସିଲେ କେମିତି ଖୁସିର ବର୍ଷା ଏନ୍ତୁଡିଶାଳରୁ ଗାଁ ମୁଣ୍ଡ ଠାକୁରାଣୀ ମନ୍ଦିର ଯାଏଁ ଚହଟି ଯାଏ, ତାହା ସମସ୍ତେ ଉପଲବ୍ଧି କରିଥିବେ । ବଡଲୋକଙ୍କ ଜୀବନୀ, ସେମାନଙ୍କ ଜୀବନସଂଗ୍ରାମ, ଦେଶପ୍ରେମ, ଉଦ୍ଭାବନର ତରିକା, କାଳଜୟୀ କାବ୍ୟକବିତାର ଧାରାକୁ ଆମେ ପାଠ୍ୟପୁସ୍ତକରେ ଆହରଣ କରିଥାଉ । ପ୍ରାଥମିକ ବିଦ୍ୟାଳୟର କୋମଳମତି ଛାତ୍ରଛାତ୍ରୀଙ୍କ ମନ ସଂସାର ଜଞ୍ଜାଳର ଅପର ପାର୍ଶ୍ୱରେ ଏକ ମୁକ୍ତ ବାତାବରଣ ମଧ୍ୟରେ ଥାଏ । ତେଣୁ ମହାମାନବର ଜୀବନୀ ସେ ହୃଦୟରେ ଚିତ୍ରିତ ହୋଇଯାଏ ଓ ସେହି ପିଲାର ଭବିଷ୍ୟତ ଠିକ୍ ସେମିତି ହୋଇଯାଏ ।

ସେମିତି ଜଣେ ଛାତ୍ର ଥିଲେ ମଦନଲାଲ ଧିଙ୍ଗ୍ରା । ୧୯୦୮ ମସିହାର କଥା । ସେତେବେଳେ ଇଂଲଣ୍ଡରେ ଅଧ୍ୟୟନ କରୁଥିବା ଭାରତୀୟ ଛାତ୍ରମାନଙ୍କ ମଧ୍ୟରେ ମଦନଲାଲ ଧିଙ୍ଗ୍ରା ପାଠ ଉପରେ କମ୍ ଗୁରୁତ୍ୱ ଦେଉଥିଲେ କିନ୍ତୁ ରାଜନୀତିରେ ବେଶ୍ ସକ୍ରିୟ ଥିଲେ । ସେତେବେଳେ ଇଂରେଜମାନେ ଆମ ଦେଶରେ ରହି ଭାରତର ମୁକ୍ତି ସଂଗ୍ରାମୀମାନଙ୍କୁ ଯେଉଁ ଅସହନୀୟ ଦୁର୍ବ୍ୟବହାର ପ୍ରଦର୍ଶନ କରୁଥିଲେ ସେଥିପାଇଁ ଅଥୟ ହୋଇପଡିଥିଲେ ମଦନଲାଲ । ସେଠାରେ ଥିବା ସମସ୍ତ ଭାରତୀୟ ଛାତ୍ରମାନଙ୍କୁ ସେ ଏକାଠି କରି ଇଂରେଜ ବିରୁଦ୍ଧରେ ଲଢିବା ପାଇଁ ପ୍ରବର୍ତ୍ତାଉ ଥିଲେ । ମାତ୍ର ତାଙ୍କର ଏଇ ଛାତ୍ର ରାଜନୀତି କେବଳ ଆଲୋଚନାଚକ୍ର, ସଭାସମିତି, ତର୍କ, ପତ୍ରପତ୍ରିକା, ପ୍ରକାଶନରେ ସୀମିତ ଥିଲା । ଭାରତୀୟ ଛାତ୍ରମାନଙ୍କର ଏଭଳି ରାଜନୈତିକ କାର୍ଯ୍ୟକଳାପ ବାହାରକୁ ଯେତେ ନିରୀହ ଓ ନିରୁପଦ୍ରବ ଦିଶୁଥିଲେ ସୁଦ୍ଧା ଇଂରେଜ ସରକାର ଛାତ୍ରମାନଙ୍କର ଏହି ଗତିବିଧିକୁ ଲକ୍ଷ୍ୟ ରଖିବା ପାଇଁ ସାର୍ କର୍ଜନ୍ ଉଇଲ୍ ନାମକ ଜଣେ ଅଫିସର୍‌କୁ ଗୁଇନ୍ଦା ଭାବେ ନିଯୁକ୍ତି କଲେ । ମିଷ୍ଟର ଉଇଲ୍ ଭାରତୀୟ ଛାତ୍ରମାନଙ୍କ ସହ ବନ୍ଧୁ ଓ ଶୁଭେଚ୍ଛୁର ଛଦ୍ମବେଶରେ ଯାଇ ସେମାନଙ୍କ କାର୍ଯ୍ୟକଳାପର ଗୁପ୍ତ ରିପୋର୍ଟ କରିବାକୁ ଆରମ୍ଭ କଲେ । ଏକଥା ଜାଣିପାରି ମଦନଲାଲ ବିଚାର କଲେ ଯେ, ଉଇଲ୍‌ଙ୍କର ଔଦ୍ଧତ୍ୟକୁ ଯଥାଶୀଘ୍ର ସ୍ତବ୍ଧ କରି ନ ଦେଲେ ଇଂରେଜର ବହପ ଦିନକୁ ଦିନ ବଢି ଚାଲିବ । ଦ୍ୱିତୀୟତଃ ସେ ଅନୁଭବ କଲେ ଯେ ଇଂଲଣ୍ଡରେ ଏଭଳି କିଛି ଚରମ କାର୍ଯ୍ୟକଳାପ ସଂଘଟିତ ହେବା ଦରକାର, ଯାହାକି ଭାରତର ମୁକ୍ତି ସଂଗ୍ରାମୀମାନଙ୍କୁ କିଛି ଉତ୍ସାହ ଓ ପ୍ରେରଣା ଯୋଗାଇ ପାରିବ ଏବଂ ପ୍ରବାସରେ ଥିବା ଦୁର୍ବଳମନା ଭାରତୀୟ ଛାତ୍ରଛାତ୍ରୀମାନଙ୍କ ଭିତରେ ସାହସ, ଦମ୍ଭ, ଶୌର୍ଯ୍ୟ ସୃଷ୍ଟି କରିବ । ଏସବୁ ଦୃଷ୍ଟିରୁ ସେ ଉଇଲଙ୍କ ଔଦ୍ଧତ୍ୟର ଏକ ଫଇସଲା କରିବାକୁ କୃତସଂକଳ୍ପ ହୋଇଉଠିଲେ ।

ସେଦିନ ଭାରତୀୟ ଓ ଗୋରା ଛାତ୍ରମାନଙ୍କର ଏକ ସାଂସ୍କୃତିକ ସଭାରେ ମିଷ୍ଟର ଉଇଲ୍ ଭାଷଣ ଦେବାର ଥିଲା । ଏହିଠାରେ ହିଁ ତା'ର ହିସାବ ନିକାଶ କରିବା ସର୍ବୋତ୍କୃଷ୍ଟ ବୋଲି ସ୍ଥିର କଲେ ମଦନଲାଲ ସୁତରାଂ ଉଇଲ୍ ଭାଷଣ ଦେବାକୁ

ଠିଆ ହେବା ସଙ୍ଗେ ସଙ୍ଗେ ମଦନ ଲାଲ୍ ଠିଆହେଲେ ଶ୍ରୋତାଙ୍କ ଆସନରୁ ଏବଂ ସଙ୍ଗେ ସଙ୍ଗେ ଗର୍ଜି ଉଠିଲା ତାଙ୍କର ରିଭଲ୍‌ଭର୍ 'ଗୁଡୁମ୍ ଗୁଡୁମ୍' । ଗୋଟିଏ ମାତ୍ର ଗୁଳିରେ ଉଇଲ୍ ଭୂପତିତ ହେଲେ । ଉଇଲ୍‌କୁ ରକ୍ଷା କରିବା ପାଇଁ ଅନ୍ୟ ଜଣେ ବ୍ୟକ୍ତି, ମଦନ ଲାଲକୁ କାବୁ କରିବାକୁ ଯାଆନ୍ତେ ତାଙ୍କୁ ମଧ ମଦନ ଲାଲ ଗୁଳିବିଦ୍ଧ କଲେ । ମଦନ ଲାଲ କିନ୍ତୁ ଅବିଚଳିତ ପିସ୍ତଲ ହସ୍ତରେ ଠିଆ ହେଲେ । ଏହାର ଦଣ୍ଡ ସେ ଅମ୍ଳାନ ବଦନରେ ସହ୍ୟ କଲେ ଏବଂ ଭାରତୀୟ ମୁକ୍ତି ସଂଗ୍ରାମୀମାନେ ଅଧିକ ଉତ୍ସାହିତ ହେବେ ଏହାଦ୍ୱାରା । ପୋଲିସ୍ ତାଙ୍କୁ ଅନାୟାସରେ ଗିରଫ କଲା । ସେ ନିଜ ପକ୍ଷର ଯୁକ୍ତି ବିନା ଓକିଲରେ ନିଜେ ରଖୁଥିଲେ ।

ମଦନ ଲାଲ୍ ଜେଲ୍‌ରେ ଥିବାବେଳେ ତାଙ୍କର ସହପାଠୀ ଅନ୍ୟତମ ମହାନ ବିପ୍ଳବୀ ବୀର ସଭରକର ଓ.ଭି.ଭି.ଏସ୍ ଆୟାର ତାଙ୍କୁ ଦେଖିବାକୁ ଜେଲ୍‌କୁ ଯାଇଥିଲେ । ସେମାନଙ୍କୁ ମଦନ ଲାଲ୍ କହିଥିଲେ ଯେ– ଯେଉଁ ଇଂରେଜ ଆମର ପବିତ୍ର ଜନ୍ମଭୂମି ଭାରତବର୍ଷକୁ ଅପବିତ୍ର କରିବାକୁ ଚାହେଁ ତାକୁ ହତ୍ୟା କରିବା ମୋ ନିକଟରେ ନ୍ୟାୟର ନିର୍ଦ୍ଦେଶ । ମୁଁ ହିନ୍ଦୁ ଭାବରେ ମନେକରେ ଯେ ମୋ ଦେଶ ଜନନୀର ଅସମ୍ମାନ ନ ହେଉ, ମୁଁ ଜନନୀର ପୂଜା ବେଦୀ ତଳେ ଅର୍ଘ୍ୟ ଦେବା ପାଇଁ ମୋ ଛାତିରେ ଯେଉଁ ରକ୍ତ ଟିକକ ଅଛି, ସେହି ରକ୍ତ ମୁଁ ନିବେଦନ କରିଛି ।

ବର୍ତ୍ତମାନ ଭାରତବର୍ଷରେ ଗୋଟିଏ ମାତ୍ର ଶିକ୍ଷାର ପ୍ରୟୋଜନ ଅଛି– ସେ ଶିକ୍ଷା ହେଉଛି ଆତ୍ମ ବଳିଦାନ । ସେଥିପାଇଁ ମୁଁ ମୃତ୍ୟୁକୁ ବରଣ କରିନେଲି । ତା'ପରେ ମୃତ୍ୟୁଞ୍ଜୟୀ ବୀର ଧିଣ୍ଡାଙ୍କ କଣ୍ଠରୁ ପ୍ରକାଶିତ ହେଲା ତାଙ୍କର ଅନ୍ତିମ ଅଭିଳାଷ– ମୁଁ ଯେପରି ମୋର ଗର୍ଭଧାରିଣୀ ମା'ର କୋଳରେ ବାରମ୍ବାର ଜନ୍ମଗ୍ରହଣ କରି ଦେଶୋଦ୍ଧାର ସାଧନରେ ବାରମ୍ବାର ମୃତ୍ୟୁବରଣ କରେ । ଯେତେ ଦିନଯାଏଁ ମୋର ମାତୃଭୂମି ସ୍ୱାଧୀନ ହୋଇ ବିଶ୍ୱ ସଭାରେ ଗୌରବଜନକ ଆସନ ଗ୍ରହଣ ନ କରିଛି ସେତେଦିନ ଯାଏଁ ମୋତେ ଏହି ଆତ୍ମବଳିଦାନର ସୌଭାଗ୍ୟ ମିଳୁଥାଉ ।

ଅଗଷ୍ଟ ୧୭ ତାରିଖ ୧୯୦୮ ମସିହାରେ ମଦନ ଲାଲଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଗଲା ଇଂଲଣ୍ଡ ମାଟିରେ । ତେଣୁ ବିଲାତ ମାଟିରେ ପ୍ରଥମ ଭାରତୀୟ ସହିଦ୍‌ର ଗୌରବ ମୁକୁଟରେ ମଣ୍ଡିତ ହୋଇ ମଦନଲାଲ ଉତ୍‌ଫୁଲ୍ଲିତ ଚିତ୍ତରେ ଫାଶୀ ମଞ୍ଚକୁ ଆଲିଙ୍ଗନ କଲେ । ଏହା ଥିଲା ତାଙ୍କ ଦେଶ ଭକ୍ତିର ନିଦର୍ଶନ ।

ମୋର ଅନୁରୋଧ, ବିଦେଶ ମାଟିରେ ପ୍ରଥମ ଶହୀଦ୍ ଭାରତୀୟ ବିପ୍ଳବୀ ମଦନ ଲାଲ ଧିଣ୍ଡାଙ୍କ ଆତ୍ମଜୀବନୀ ପାଠ୍ୟପୁସ୍ତକରେ ସ୍ଥାନିତ କରାଯାଉ । ଏହାଦ୍ୱାରା ଅନେକ ଛାତ୍ରଛାତ୍ରୀ ପ୍ରଭାବିତ ହେବେ । ଯେମିତି ସେଦିନ ପ୍ରଭାବିତ କରିଥିଲା ଲୟେଡ୍ ଜର୍ଜଙ୍କ ଭଳି ବିଶ୍ୱବିଖ୍ୟାତ ପ୍ରଶାସକ ଓ ରାଜୀନତିଜ୍ଞଙ୍କୁ । ଯଦି ଭାଷା, ପରିବେଶ, ଇତିହାସରେ ମଦନ ଲାଲ୍ ଧିଣ୍ଡା ସ୍ଥାନ ପାଇବେ, ତେବେ ତାହା ହେବ ତାଙ୍କ ବଳିଦାନ ତଥା ଉତ୍ସର୍ଗୀକୃତ ଆତ୍ମା ପାଇଁ ସର୍ବଶ୍ରେଷ୍ଠ ସମ୍ମାନ ।

ନିଆଳୀ, କଟକ



# ଓଡ଼ିଶାରେ ନବୀନ ଯୁଗ

ଦିନେ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଶାର ନେତୃତ୍ୱ ନେଇଥିଲେ ନବୀନ ପଟ୍ଟନାୟକ । ହେଲେ ନିଜର ଦୂରଦୃଷ୍ଟି, କ୍ରମାଗତ ପ୍ରଶାସନିକ ସଂସ୍କାର ଏବଂ ଲୋକାଭିମୁଖୀ କାର୍ଯ୍ୟକ୍ରମ ପାଇଁ ଆଜି ସେ ଜଣେ ଲୋକପ୍ରିୟ ଓ ଅପ୍ରତିଦ୍ୱନ୍ଦ୍ୱୀ ରାଜନେତା ଭାବେ ରାଜ୍ୟ ଓ ଜାତୀୟ ସ୍ତରରେ ପ୍ରତିଷ୍ଠିତ ହୋଇପାରିଛନ୍ତି ।

୧୯୯୫ରୁ ୨୦୦୦ ମସିହା । ଓଡ଼ିଶା ରାଜନୀତିର ଏକ ସନ୍ଧିକ୍ଷଣ । କଡ ଲେଉଟାଉ ଥିଲା ଇତିହାସ । ରାଜନୈତିକ ଅସ୍ଥିରତା, ପ୍ରାକୃତିକ ବିପର୍ଯ୍ୟୟ ପୂରା ଦୋହଲାଇ ଦେଇଥିଲା ଓଡ଼ିଶାକୁ । ଏଥିରୁ ମୁକୁଳିବା ପାଇଁ ଏକ ସୁଯୋଗ୍ୟ ନେତୃତ୍ୱକୁ ଅପେକ୍ଷା କରି ରହିଥିଲା ଓଡ଼ିଶା । ଓଡ଼ିଶାବାସୀ ଚାହୁଁଥିଲେ ଏପରି ଏକ ନେତୃତ୍ୱ, ଯାହା ବିକାଶର ମନ୍ଥର ସ୍ଥିତିକୁ ବଦଳାଇ ସଠିକ୍ ରାସ୍ତା ଦେଖାଇବ ।




୧୯୯୭ ମସିହା, ଅପ୍ରେଲ ୧୭ ତାରିଖ । ଲୋକପ୍ରିୟ ଜନନେତା ବିଜୁ ପଟ୍ଟନାୟକଙ୍କର ଦେହାନ୍ତ ହୋଇଗଲା । ନେତୃତ୍ୱର ଏକ ଶୂନ୍ୟତା ଅନୁଭୂତ ହେଲା ରାଜ୍ୟରେ । କିଏ ଓଡ଼ିଶାକୁ ବିକାଶ ପଥରେ ଆଗେଇ ନେବ ? କିଏ ଓଡ଼ିଶାର ବିପର୍ଯ୍ୟସ୍ତ ଅର୍ଥ ବ୍ୟବସ୍ଥାକୁ ସୁଧାରି ସମସ୍ତଙ୍କ ମୁହଁରେ ହସ ଫୁଟାଇବ ? ଏହି ଚର୍ଚ୍ଚା ଚାଲିଥିଲା ଉଭୟ ବୁଦ୍ଧିଜୀବୀ ଏବଂ ସାଧାରଣ ଜନତା

ମହଲରେ । ଏହି ସମୟରେ ରାଜନୀତିକ ନେତୃତ୍ୱର ଯେଉଁ ନୂଆ ଧାରା ଆରମ୍ଭ ହୋଇଥିଲା, ତା'ର ମଙ୍ଗ ଧରିଥିଲେ ବିଜୁବାବୁଙ୍କ ସୁପୁତ୍ର ନବୀନ ପଟ୍ଟନାୟକ । ରାଜନୀତିରେ ସେତେବେଳେ ନବୀନ ଥିଲେ ନବୀନ ପଟ୍ଟନାୟକ । ପୂର୍ବରୁ କେବେ ବି ପ୍ରତ୍ୟକ୍ଷ ରାଜନୀତିରେ ସାମିଲ ନଥିବା ନବୀନ କିନ୍ତୁ ବିଜୁବାବୁଙ୍କ ସ୍ୱପ୍ନର ଓଡ଼ିଶାକୁ ଆଗକୁ ନେବା ପାଇଁ ଅଣ୍ଟା ଭିଡିଲେ । ରାଜନୀତିରେ ପ୍ରବେଶ କରିବା ସହ ସେ ବୁଝି ପାରିଥିଲେ ରାଜ୍ୟର ଆବଶ୍ୟକତା । କେବଳ ସେତିକି ନୁହେଁ, ଓଡ଼ିଶାର ବିକାଶ ପଥରେ ଥିବା ଅନ୍ତରାୟଗୁଡିକୁ ମଧ୍ୟ ସେ ଚିହ୍ନି ପାରିଥିଲେ । ଜାତୀୟ ଦଳଗୁଡିକର ଓଡ଼ିଶା ପ୍ରତି ଥିବା ବୈମାତୃକ ମନୋଭାବ ତାଙ୍କୁ ବିଚଳିତ କରିଥିଲା । ସେ ଅନୁଭବ କରିଥିଲେ ଯେ କେବଳ ଏକ ଶକ୍ତିଶାଳୀ ଆଞ୍ଚଳିକ ଦଳ ହିଁ ରାଜ୍ୟର ସ୍ୱାର୍ଥ ସାଧନ କରିପାରିବ, ରାଜ୍ୟକୁ ବିକାଶ ପଥରେ ଆଗେଇ ନେବ । ତେଣୁ ବିଜୁ ଜନତା ଦଳ ବା ବିଜେଡି ଗଠନ କରି ତାକୁ ଶକ୍ତିଶାଳୀ କରିବାରେ ମନପ୍ରାଣ ଢାଳି ଦେଇଥିଲେ ନବୀନ । ପ୍ରାଥମିକ ଅବସ୍ଥାରେ ସେ ବିଜେପି ସହ ମେଣ୍ଟ କରିବା ସହ କେନ୍ଦ୍ରରେ ବାଜପେୟୀଙ୍କ ନେତୃତ୍ୱାଧୀନ ଏନ୍‌ଡିଏ ସରକାରରେ ମନ୍ତ୍ରୀଭାବେ ଦାୟିତ୍ୱ ତୁଲାଇ ଥିଲେ । ଆସିକା ନିର୍ବାଚନମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇ ସେ ତାଙ୍କ ରାଜନୀତିକ ଇନିଂସ ଆରମ୍ଭ କରିଥିଲେ ।

୧୯୯୯ ମସିହା ମହାବାତ୍ୟାର ବିଭୀଷିକା ପରେ ରାଜ୍ୟର ମେରୁଦଣ୍ଡ ଭାଙ୍ଗିଯାଇଥିଲା । ସେତେବେଳର ସରକାରଙ୍କ ଅଦୂରଦର୍ଶୀ ପଦକ୍ଷେପ ଯୋଗୁଁ ପ୍ରାକୃତିକ ଦୁର୍ବିପାକର ମୁକାବିଲା କରିବାରେ ସଫଳ ହୋଇପାରିନଥିଲା ଓଡ଼ିଶା । ରାଜ୍ୟବାସୀଙ୍କ ଅସନ୍ତୋଷ ସାଙ୍ଗକୁ ରାଜନୀତିକ ଅସ୍ଥିରତା ଏବଂ ବିପର୍ଯ୍ୟସ୍ତ ଆର୍ଥିକ ଅବସ୍ଥା ଏକ ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଥିଲା । ଏହି ସମୟରେ ଓଡ଼ିଶାବାସୀଙ୍କ ଆଗରେ ଏକମାତ୍ର ବିକଳ୍ପରୂପେ ଠିଆ ହେଲା ନବୀନବାବୁଙ୍କ ନେତୃତ୍ୱାଧୀନ ବିଜୁ ଜନତା ଦଳ । ୨୦୦୦ ମସିହା ବିଧାନସଭା ନିର୍ବାଚନରେ ନବୀନଙ୍କ ଉପରେ ଆସ୍ଥାପ୍ରକଟ କରିଥିଲେ ଓଡ଼ିଶାବାସୀ । ବିଜେଡି କ୍ଷମତାକୁ ଆସିଲା ଏବଂ ପ୍ରଥମ ଥର ପାଇଁ ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେଲେ ନବୀନ ପଟ୍ଟନାୟକ । ଏହିଠାରୁ ଆରମ୍ଭ ହେଲା ଓଡ଼ିଶା ବିକାଶର ନବୀନ ପର୍ବ ।

ଅସହାୟ ଲୋକଙ୍କ ମୁହଁରେ ହସ ଫୁଟାଇବା ଥିଲା ନବୀନବାବୁଙ୍କ ପ୍ରାଥମିକ ଲକ୍ଷ୍ୟ । ସେ ଅନୁଭବ କରିଥିଲେ ଯେ ସମାଜର ଅବହେଳିତ ବର୍ଗଙ୍କ ଉନ୍ନତି ନହେଲେ ରାଜ୍ୟର ସାମଗ୍ରିକ ବିକାଶ ଅସମ୍ଭବ । ଗରିବ, ଆଦିବାସୀ, ମହିଳା, ବୃଦ୍ଧ-ବୃଦ୍ଧା, ଛାତ୍ର ଓ ଯୁବକଙ୍କ ପାଇଁ ସେ ଆଣିଲେ ଗୋଟିଏ ପରେ ଗୋଟିଏ ଅଭିନବ ଯୋଜନା । ସେପଟେ ରାସ୍ତାଘାଟ, ଗମନାଗମନ, ନଦୀରେ ସେତୁ ଏବଂ ଭିତ୍ତିଭୂମିର ବିକାଶ ଉପରେ ଗୁରୁତ୍ୱ ଦିଆଗଲା । ଗୋଟିଏ ଅନୁନ୍ନତ ରାଜ୍ୟର ଅପଖ୍ୟାତିରୁ ମୁକୁଳି ଓଡ଼ିଶା ଏକ ପ୍ରଗତିଶୀଳ ରାଜ୍ୟଭାବେ ପ୍ରତିଷ୍ଠା ହେବାର ଏ ଥିଲା ନବୀନ ପର୍ବ ।

ଗୋଟିଏ ପଟେ ବିକାଶ ପାଇଁ ନୂଆ ନୂଆ କାର୍ଯ୍ୟକ୍ରମ ଏବଂ ଅନ୍ୟପଟେ ପ୍ରଶାସନିକ ସଂସ୍କାର କରି ସେଗୁଡିକର ସୁଫଳ ତୃଣମୂଳ ସ୍ତରରେ ପହଞ୍ଚାଇବା ଥିଲା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରୟାସ । ଏହି ଉଦ୍ୟମର ଫଳଶ୍ରୁତି ନବୀନ ଏବଂ ତାଙ୍କ ଦଳ ବିଜେଡି ପାଇଁ ଥିଲା ଅତ୍ୟନ୍ତ ଅନୁକୂଳ । ୨୦୦୪ ନିର୍ବାଚନରେ ପୁଣି ନବୀନ ଉଡାଇଲେ ବିଜୟ ବାନା । ଭାଗୁଆଳି ବିଜେପିକୁ ସାଥିରେ ଧରି ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ହୋଇଥିଲେ ନବୀନ ।

ହେଲେ ପରେ ବିଜେଡି-ବିଜେପି ମେଣ୍ଟରେ ସୃଷ୍ଟି ହୋଇଥିଲା ଫାଟ । ୨୦୦୮ କନ୍ଧମାଳ ଦଙ୍ଗା ବ୍ୟଥିତ କରିଦେଇଥିଲା ରାଜ୍ୟବାସୀ ଓ ନବୀନଙ୍କୁ । ଓଡ଼ିଶା ପାଇଁ ଏହା ଥିଲା ଅତ୍ୟନ୍ତ ଭୟାନକ । ସମାଜରେ ସାମ୍ପ୍ରଦାୟିକ ବିଭେଦ ସୃଷ୍ଟି କରୁଥିବା ଶକ୍ତିକୁ ବରଦାସ୍ତ କରିପାରି ନ ଥିଲେ ଧର୍ମନିରପେକ୍ଷତାରେ ପୂର୍ଣ୍ଣ ବିଶ୍ୱାସ ରଖିଥିବା ନବୀନ ବାବୁ । ତେଣୁ ୨୦୦୯ ନିର୍ବାଚନରେ ବିଜେପିର ହାତ ଛାଡି ଏକାକୀ ମଇଦାନକୁ ଓହ୍ଲାଇଥିଲା ବିଜେଡି । ନବୀନଙ୍କ ନେତୃତ୍ୱ ପ୍ରତି ତୃତୀୟ ଥର ପାଇଁ ଓଡ଼ିଶାବାସୀ ଆସ୍ଥା ପ୍ରକଟ କରିଥିଲେ । ବିଜେପିର ସମର୍ଥନ ବିନା ନବୀନ ପ୍ରମାଣ କରିଥିଲେ ତାଙ୍କର ଲୋକପ୍ରିୟତା ଓ ଜନମାନସରେ ତାଙ୍କ ପ୍ରଭାବ ।

ତୃତୀୟ ପାଳି ସରକାର ଗଢିବା ପରେ ଲୋକାଭିମୁଖୀ ବିଶେଷକରି ଦାରିଦ୍ର୍ୟ ଦୂରୀକରଣ ପାଇଁ ବିଶେଷ ଧ୍ୟାନ ଦେଇଥିଲେ ନବୀନ ସରକାର । ଗରିବଙ୍କ ପାଇଁ ଖାଦ୍ୟ

ସୁରକ୍ଷାକୁ ସୁନିଶ୍ଚିତ କରିବା ପାଇଁ ଟଙ୍କିକିଆ ଚାଉଳ ଥିଲା ତାଙ୍କର ଅନନ୍ୟ ପରିକଳ୍ପନା । ମିଶନ ଶକ୍ତି ଜରିଆରେ ମହିଳାଙ୍କୁ ସ୍ୱାବଲମ୍ବୀ କରିବା, ମମତା ଯୋଜନାରେ ମା'ଓ ଶିଶୁଙ୍କ ସୁରକ୍ଷାକୁ ସୁନିଶ୍ଚିତ କରିବା ତାଙ୍କ ଦୂରଦୃଷ୍ଟିର ପରିଚୟ । ସହରାଞ୍ଚଳରେ ଆହାର ଯୋଜନା ଆରମ୍ଭ କରି ସେ ଅନ୍ୟମାନଙ୍କ ପାଇଁ ଉଦାହରଣ ପାଲଟିଛନ୍ତି । ଜଙ୍ଗଲ ଜମି ଓ ଜଙ୍ଗଲଜାତ ଜିନିଷ ଉପରେ ଆଦିବାସୀଙ୍କୁ ଅଧିକାର ଦିଆଯାଇଛି । ଗରିବ ମେଧାବୀ ଛାତ୍ରଙ୍କ ପାଇଁ ବୃତ୍ତି, ଯୁବକମାନଙ୍କୁ ତାଲିମ ଦେଇ ଆତ୍ମନିର୍ଭରଶୀଳ କରି ନବୀନ ତାଙ୍କ ଲୋକପ୍ରିୟତା ବଢାଇଛନ୍ତି । ଏମିତି ଅନେକ ଯୋଜନା ହିତାଧିକାରୀଙ୍କ ପାଖରେ ପହଞ୍ଚାଇ ପ୍ରଶାସନକୁ ଲୋକଙ୍କ ନିକଟତର କରିପାରିଛନ୍ତି । ଏଥିପାଇଁ ୨୦୧୪ ନିର୍ବାଚନରେ ପୂର୍ବର ସବୁ ରେକର୍ଡକୁ ଭାଙ୍ଗି ନୂତନ ରାଜନୀତିକ କୀର୍ତ୍ତିମାନ ପ୍ରତିଷ୍ଠା କରିଛନ୍ତି ନବୀନ ପଟ୍ଟନାୟକ ।

ଚାରି ଚାରି ଥର ମୁଖ୍ୟମନ୍ତ୍ରୀ ହେବା ପରେ ବି ନବୀନଙ୍କ ବ୍ୟକ୍ତିଗତ ଜୀବନ ଅତ୍ୟନ୍ତ ସରଳ । ପୋଷାକପତ୍ର କହିଲେ ଧଳା କୁର୍ତ୍ତା, ପାଇଜାମା ଓ କୋହ୍ଲାପୁରୀ ଚପଲ । ଆସବାବପତ୍ର କହିଲେ ସାଧାରଣ କାଠ ଚୌକି । ନିଜର ଜୀବନଶୈଳୀ ପାଇଁ ବାରମ୍ବାର ଜାତୀୟ ଗଣମାଧ୍ୟମରେ ଚର୍ଚ୍ଚାରେ ରହିଛନ୍ତି ନବୀନ ।

ଜୀବନଶୈଳୀ ସରଳ, ହେଲେ ପ୍ରଶାସନିକ କ୍ଷେତ୍ରରେ ସେ ଅତ୍ୟନ୍ତ ସ୍ୱଷ୍ଟ ଏବଂ ସ୍ୱଚ୍ଛ । ଦୁର୍ନୀତିର ଗନ୍ଧ ବାରିଲେ ସେ ହୋଇଯାନ୍ତି କଠୋର । ଦଳୀୟ ନେତା ହୁଅନ୍ତୁ କିମ୍ବା ପ୍ରଶାସନିକ ଅଧିକାରୀ, କାହାରିକୁ ବି ଛାଡିନାହାନ୍ତି ନବୀନ । ଯେଉଁମାନେ ସାଧାରଣ ଜନତାଙ୍କ ସ୍ୱାର୍ଥକୁ ଉପେକ୍ଷା କରିଛନ୍ତି, ତାଙ୍କ ବିରୋଧରେ କଠୋର ପଦକ୍ଷେପ ନେଇଛନ୍ତି ନବୀନ । ଏହା ହିଁ ତାଙ୍କ ଭାବମୂର୍ତ୍ତିକୁ ସ୍ୱଚ୍ଛ ଓ ନିର୍ମଳ କରି ରଖିଛି । ଓଡ଼ିଶା ରାଜନୀତିରେ ନବୀନଙ୍କ ଷ୍ଟାଇଲ୍ ଏକ ମାପଦଣ୍ଡ ସୃଷ୍ଟି କରିଛି, ଯେଉଁ ମାପଦଣ୍ଡରେ ରାଜନେତାଙ୍କୁ ତଉଲିଥାନ୍ତି ରାଜ୍ୟବାସୀ ।

*(ସୌଜନ୍ୟ: ନିତିଦିନ)*



# ବିଶ୍ୱ ବିଖ୍ୟାତ ସୂର୍ଯ୍ୟମନ୍ଦିର କୋଣାର୍କ

**ଦେବଦତ୍ତ ରଥ**

ବିଶ୍ୱ ବିସ୍ମୟର ବୈଶିଷ୍ଟ୍ୟ ବହନ କରୁଥିବା ତଥା ବାରଶତ ଶିଳ୍ପୀର ଶୈଳ୍ପିକ ସୌଷ୍ଠବର ଅନନ୍ୟ ପରାକାଷ୍ଠା ଯେଉଁ ପାଷାଣ ତନୁରେ ଅଦମ୍ୟ ଶ୍ରମ ଓ ସାଧନାର ଅନବଦ୍ୟ, ଅନିନ୍ଦ୍ୟ ରୂପ ମାଧୁରିମାର ଝଲକ ଫୁଟାଏ, ସେହି ସ୍ଥାଣୁ ସ୍ଥାପତ୍ୟର ଏକ ନିର୍ଜୀବ, ନିର୍ବାଣୋନ୍ମୁଖ, ନିର୍ବାତ, ନିଷ୍କମ୍ପ ପ୍ରସ୍ତରର ବିଶାଳ ମନମନ୍ଦିର ସୂର୍ଯ୍ୟମନ୍ଦିର 'କୋଣାର୍କ' । କେତେ ଉଷାର ଅରୁଣୋଦୟ, ସମୀର ହିଲ୍ଲୋଳରେ ତଟିନୀ ଚନ୍ଦ୍ରଭାଗା ଓ ଫେନିଳ ତରଙ୍ଗାୟିତ ମହୋଦଧିରୁ ଆନୀତ ମୃଦୁ ମଧୁର ଶୀକରପାତ, ସାନ୍ଧ୍ୟ ଗଗନ ଅଭୁଲା ପ୍ରତିଛବି, ସ୍ଥବିର ସନ୍ନ୍ୟାସୀ ସଦୃଶ ଦଣ୍ଡାୟମାନ ଅର୍କବଟ ଏହି ମୂକ ପାଷାଣ ଦେହରେ ପ୍ରାଣ ସ୍ପନ୍ଦନ ତୋଳି ଧରିଥିବା ବାରଶତ ଶିଳ୍ପୀଙ୍କର ଯେ ମୂକ ସାକ୍ଷୀ, ଏଥିରେ ଦ୍ୱିମତ ନାହିଁ ।

ସାଗର ବୀଚିବିଧୌତ ସ୍ୱର୍ଣ୍ଣାଭ ବେଳାଭୂମି, ଝାଉଁବନର ମର୍ମର ଧ୍ୱନି ଅଦ୍ୟାବଧି ପର୍ଯ୍ୟଟକ ପ୍ରାଣରେ ଭରିଦିଏ ଅଫୁରନ୍ତ ଆନନ୍ଦ ଓ ମନରେ ଅସରନ୍ତି ଚିନ୍ତା ଓ ଚେତନାର ରେଖାପାତ ହୋଇଉଠେ । ଏ ପତିତ ବାଲୁକା ଶଯ୍ୟାରେ ବିଶାଳ ମନ୍ଦିରର ପରିକଳ୍ପନା ସମ୍ଭବ କିପରି ଓ କାହିଁକି କେଉଁ ପରିସ୍ଥିତିରେ ପରିକଳ୍ପିତ ହୋଇ ଚୂଡ଼ାନ୍ତ ରୂପରେଖ ନେଇପାରିଲା । ସ୍ଥାପତ୍ୟର ଯାଦୁ ନଗରୀରେ ମୋହାଚ୍ଛନ୍ନ ଶରୀର ଓ ତନ୍ଦ୍ରାଭିଭୂତ ପ୍ରାଣରେ ବିମୁଗ୍ଧ ନିମିଷକ ନିମନ୍ତେ ହଜିଯାଏ, ବିସ୍ଫାରିତ ହୁଏ ସ୍ୱତଃପ୍ରବୃତ୍ତ ଭାବରେ –

ସ୍ୱର୍ଗରୁ ଦେବାବତରଣ ପରି ଆପାଦ ମସ୍ତକରେ ସତେକି କାହାରି ହାତର କାଉଁରୀ ସ୍ପର୍ଶରେ ଏମାନେ ଏପରି ପ୍ରାଣବନ୍ତ ହୋଇଉଠିଛନ୍ତି । କୋଣାର୍କର ସୂର୍ଯ୍ୟମନ୍ଦିର ନିମନ୍ତେ ୧୨ ସଂଖ୍ୟା ଏକ ବିଚିତ୍ର ତଥ୍ୟ ନିର୍ଣ୍ଣାୟକ ଶବ୍ଦ, ଯାହା ଏହାକୁ ଅଧିକ ରହସ୍ୟମୟ କରିଅଛି । ଭାରତୀୟ ସଂସ୍କୃତିରେ ସୂର୍ଯ୍ୟ 'ଦ୍ୱାଦଶ ମାର୍ତ୍ତଣ୍ଡ' ନାମରେ ବିଖ୍ୟାତ । ପ୍ରତ୍ୟେକ ମାସରେ ସୂର୍ଯ୍ୟଙ୍କର ନାମ, ଗତି ଓ ପ୍ରକୃତିରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଦ୍ୱାଦଶ ବର୍ଷର କଠୋର ତପସ୍ୟା କରି ବିଷ୍ଣୁଙ୍କର ସନ୍ତାନ 'ଶାମ୍ବ' 'ମୈତ୍ରେୟ ବନ'ରେ ଚନ୍ଦ୍ରଭାଗା ନଦୀକୂଳରେ ଦୂରାରୋଗ କୁଷ୍ଠ ବ୍ୟାଧିରୁ ଆରୋଗ୍ୟ ଲାଭ କରିଥିଲେ । ଦ୍ୱାଦଶ ଶତାବ୍ଦୀର ଶେଷ ଭାଗ ଓ ତ୍ରୟୋଦଶ ଶତକର ପ୍ରାରମ୍ଭରେ ଏହି ମନ୍ଦିରର ଶୁଭ ପରିକଳ୍ପନା କରାଯାଇଥିଲା । ଦ୍ୱାଦ ଶ ଯୋଡ଼ା ରଥଚକ୍ର ଉପରେ ମୁଖ ମନ୍ଦିର ଓ ଜଗମୋହନ ନିର୍ମିତ । ୧୨୦୦ ବଢ଼େଇଙ୍କର ୧୨ ବର୍ଷର କଠୋର ଶ୍ରମ ଓ ସାଧନାର ଫଳ ସ୍ୱରୂପ ଏ ବିଶାଳ ମନଲୋଭା ତଥା ଚିତ୍ତାକର୍ଷକ ମନ୍ଦିର ଦଣ୍ଡାୟମାନ । ସର୍ବଶେଷରେ ଧରମାର ଚରିତ୍ରକୁ ଏହା ସହିତ ଏକତ୍ର କରାଯାଇଅଛି, ଯାହାର ମଧ୍ୟ ବୟସ ଥିଲା ୧୨ ଏବଂ ଯିଏକି ମନ୍ଦିର ଦଧିନଉତି ସଳଖି ସାଗର ଗର୍ଭକୁ ଲମ୍ଫ ପ୍ରଦାନ କରିଥିଲା । ଏଥିରେ ତତକାଳୀନ ଗଙ୍ଗବଂଶୀ ଗଜପତିଙ୍କର ବାରବର୍ଷର ରାଜତ୍ୱ ବ୍ୟୟ ହୋଇଥିଲା ।

ଖ୍ରୀ. ୧୨୪୭ ପବିତ୍ର ଅକ୍ଷୟ ତୃତୀୟା ତିଥିରେ ମନ୍ଦିରର ଶୁଭାରମ୍ଭ ହୋଇଥିଲେ ମଧ୍ୟ ୧୨୫୮ ଖ୍ରୀ. ମାଘ ଶୁକ୍ଳ ସପ୍ତମୀ ତିଥି ଦିନ ଏ ମନ୍ଦିର ପ୍ରତିଷ୍ଠାର ଆୟୋଜନ କରାଗଲା । ଫଳରେ ରାଜା ମଧ୍ୟ ଶିଳ୍ପୀମାନଙ୍କୁ ୩ ମାସ ପୂର୍ବରୁ କାର୍ଯ୍ୟ ସାରିବାକୁ ଆଦେଶ ଦେଇଥିଲେ । ଏଥିରେ ବ୍ୟଥିତ ତଥା ବ୍ୟତିବ୍ୟସ୍ତ ହୋଇ ଶିବେଇ ସମାନ୍ତରା (ପ୍ରଧାନମନ୍ତ୍ରୀ ) ନିଜର ଅକ୍ଷମତା

ପ୍ରକାଶ ପୂର୍ବକ କାର୍ଯ୍ୟରୁ ଓହରି ଯାଇଥିଲେ । ପରେ ରାଜା ଅନ୍ୟ ଜଣଙ୍କୁ ମୁଖ୍ୟ ପଦରେ ଆସୀନ କଲେ । ପୂର୍ବ ନିର୍ଦ୍ଧାରିତ ନକ୍ସା ଅନୁସାରେ ମନ୍ଦିର ଦଧିନଉତି ଓ କଳସ ବସିବା ନେଇ ସମସ୍ୟା ଉପୁଜିଲା । କିଛି ଦୋଷତ୍ରୁଟି ରହିଛି ବୋଲି ଜଣାପଡ଼ିବା ପରେ ଏହାର ଉଚ୍ଚତାକୁ ସାମାନ୍ୟ ହ୍ରାସ କରାଯାଇଥିଲା ତଥାପି ଦଧିନଉତି ବସିବାର ସମସ୍ୟା ଉପୁଜିଲା, ରାଜା ଏହି ତଥ୍ୟ ଅବଗତ ହେଲେ ଏବଂ ଶିଳ୍ପୀକୁଳ ପରସ୍ପର ଦୋଷାରୋପରେ ମାତି ରହିଥିଲେ ।

ଶେଷରେ ରାଜାଙ୍କର ନିର୍ଦ୍ଦେଶ ଥିଲା ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ କାର୍ଯ୍ୟ ସମାପ୍ତ ନହେଲେ ମୁଣ୍ଡକାଟ ହେବ । ଏଠାରେ ବିଶୁ ମହାରଣାଙ୍କର ଏକମାତ୍ର ସନ୍ତାନ ଧର୍ମପଦର ପ୍ରସଙ୍ଗ ଆସେ । ଆଜି ମଧ୍ୟ ଜନଶ୍ରୁତିରେ ସେ କିମ୍ବଦନ୍ତୀ ମହାନାୟକ । ବିଶୁ ମହାରଣାଙ୍କ ଆଗରେ ପ୍ରଶ୍ନ 'ବାରଶତ ବଢ଼େଇରେ ଦାୟ ନା ପୁଅରେ ଦାୟ' ? ମନ୍ଦିରର ଦକ୍ଷିଣପାର୍ଶ୍ୱ ଚଟାଣ ଧର୍ମପଦ ଦ୍ୱାରା କଟାଯାଇଥିବା ଗାର ସ୍ଥାନୀୟ ଅଧିବାସୀଙ୍କ ମନରେ ଏହା ଧର୍ମପଦ ଅଙ୍କିତ ବୋଲି ବିଶ୍ୱାସ ଅଛି । ତା'ର ନିର୍ଦ୍ଦେଶକ୍ରମେ ମୁଣ୍ଡି ମରାଯାଇଥିଲେ ମଧ୍ୟ ଦଧିନଉତି, ଅଁଳାବେଢ଼ା ତଥା କଳସ ସ୍ଥାପନାରେ ତ୍ରୁଟି ରହିଥିବାର ଶିଳ୍ପୀମାନେ ଜାଣି ଏବଂ ଭବିଷ୍ୟତରେ ବିପଦର ଆଶଙ୍କା ଥିବାର ଅନୁମାନ କରିଥିଲେ । ମୁଣ୍ଡି ମରାଯିବା ପରେ ୧୨୫୮ ଖ୍ରୀ.ରେ ବୈଶାଖ କୃଷ୍ଣ ଅଷ୍ଟମୀ ଦିନ ପରିବର୍ତ୍ତେ ୩ ମାସ ପୂର୍ବରୁ ମାଘ ଶୁକ୍ଳ ସପ୍ତମୀ ରବିବାର ଜାନୁୟାରୀ ୧୩ ତାରିଖରେ ମନ୍ଦିର ପ୍ରତିଷ୍ଠା ପାଇଥିଲା ।

### ମୁଖ୍ୟ ମନ୍ଦିର ପତନର କାଳ ଓ କାରଣ

ନାନା ମୁନିଙ୍କର ନାନା ମତ ପରି ଏହି ମନ୍ଦିରର ମୁଖ୍ୟ ମନ୍ଦିର ବା ଗର୍ଭଗୃହ ଭାଙ୍ଗିଯିବାର ଅନେକ କାରଣ ପରିଲକ୍ଷିତ ହୁଏ । ଆଞ୍ଚଳିକ ମତବାଦ, ଭୌଗୋଳିକ, ପ୍ରତ୍ନତାତ୍ତ୍ୱିକ, ଭୂତାତ୍ତ୍ୱିକ ସର୍ବୋପରି ପୌରାଣିକ ମତବାଦ ରହିଅଛି । ଆଞ୍ଚଳିକ ମତବାଦ ଅନୁସାରେ ସ୍ଥାନୀୟ ବାସିନ୍ଦା କୁହନ୍ତି, European ancient mariners ସେମାନଙ୍କର ସାମୁଦ୍ରିକ ପୋତ ନେଇ ସାଗର ଯାତ୍ରାକାଳରେ ଦଧିନଉତି, ଧ୍ୱଜଦଣ୍ଡ ଓ ରତ୍ନକଳସ ନିକଟରେ ଥିବା ଶକ୍ତିଶାଳୀ ଚୁମ୍ବକ ବହୁଦୂରରୁ ଜାହାଜମାନଙ୍କୁ କୂଳକୁ ଆକର୍ଷିତ କରି ଆଣି କୂଳରେ ପିଟି ଭାଙ୍ଗୁଥିଲା । ଯାହାକୁ ବିଶ୍ୱାସକୁ ନେଇ ପଣ୍ଡିତ ନୀଳକଣ୍ଠ 'କୋଣାର୍କେ' କାବ୍ୟରେ ଲେଖିଛନ୍ତି –

'ଚୁମ୍ବକକି ଏଠି ଓଟାରୁଥିଲା ଜାହାଜମାନ
ଦେବତାକି ଏଠି ଥିଲେ ଗୋ ଶୂନ୍ୟେ ବିଲମ୍ବମାନ ?'

ସିଂହାସନ ଉପରେ ଶୂନରେ ସୂର୍ଯ୍ୟମୂର୍ତ୍ତି ଝୁଲନ୍ତ ଅବସ୍ଥାରେ ଥିଲେ କି, ଏ ଏକ ଅବାଞ୍ଛିତ ତଥା ଅସମର୍ଥିତ ଯୁକ୍ତି । ଚୁମ୍ବକର ଆକର୍ଷଣ ଦୂରତାଠାରୁ ପୋତ ଦୂରେଇ ନ ନେଇ ସେହି ବଣିକମାନେ ଚୁମ୍ବକଟିକୁ କାଢ଼ିନେଲେ । ମନ୍ଦିର ଦୁର୍ବଳ ହେଲା, କାରଣ ମୁଖ ଚୁମ୍ବକକୁ ଛାଡ଼ି ମୁଖ ଗର୍ଭଗୃହର ଐଶାନ, ଅଗ୍ନି, ବାୟୁ, ନୈଋତ, ପୂର୍ବ ପଶ୍ଚିମ, ଉତ୍ତର, ଦକ୍ଷିଣ, ଅର୍ଦ୍ଧ ଓ ଊର୍ଦ୍ଧ୍ୱ ଏପରି ଦଶ ଦିଗରେ ସମ ଦୂରତାରେ ରଖା ଯାଇଥିବା ଚୁମ୍ବକର ସମ ଆକର୍ଷଣ ଫଳରେ ଶୂନ୍ୟରେ ସୂର୍ଯ୍ୟ ବିଗ୍ରହ ଝୁଲୁଥିଲେ । ଏତଦ୍ ବ୍ୟତୀତ ଲୁହା କଡ଼ିର ମଧ୍ୟ ବ୍ୟାପକ ବ୍ୟବହାର ହୋଇଥିଲା, ଯାହା ଏବେ ମନ୍ଦିର ପରିସରରେ ଶାୟିତ । କଳଙ୍କିର ଲେଶ ସ୍ପର୍ଶ ନାହିଁ । ଏହି ଲୌହ କଡ଼ି ରାଜା ନରସିଂହ ଦେବ ଅନୁଗୁଳ ନିକଟସ୍ଥ ରଙ୍ଗଥଳୀ ଗ୍ରାମରୁ ଆଣିଥିଲେ । ଏହା ବୈଜ୍ଞାନିକ ମତବାଦ ଭିତ୍ତିକ ନୁହେଁ ।

ଧାର୍ମିକ ଭାବନା ଦୃଷ୍ଟିରୁ ବିଚାର କଲେ ପୁରାଣ ଓ ଗାଥାକୁ ଆଶ୍ରୟ କରି 'ଚନ୍ଦ୍ରଭାଗା' ଯେ କି ମହର୍ଷି ସୁମନ୍ତୁଙ୍କର ଏକମାତ୍ର କନ୍ୟା ଯେ ସାଗରବେଳାରୁ ସଂଗ୍ରହ କରିଥିବା 'ଗୁଡ଼କଙ୍କ' ପୁଷ୍ପକୁ କନ୍ଦୁକ ପରି ୨ ହାତରେ ତୋଳି ଆନମନା ହୋଇ ନୃତ୍ୟ କରିବା ଅବସରରେ ସପ୍ତାଶ୍ୱବାହିତ ରଥାରୂଢ଼ ସୂର୍ଯ୍ୟ ଦେବତାଙ୍କ ନଜର ପଡ଼ିଥିଲା ତା'ର ଅପରୂପ ରୂପ ଲାବଣ୍ୟରେ ।

ଅସାମାନ୍ୟ ସୁନ୍ଦରୀ 'ଚନ୍ଦ୍ରଭାଗା'ର ଅପୂର୍ବ ସୌନ୍ଦର୍ଯ୍ୟରେ ବିମୁଗ୍ଧ ସୂର୍ଯ୍ୟଦେବଙ୍କ ଉକ୍ତି–

'ଅଙ୍ଗେ, ବଙ୍ଗେ ମୁହିଁ କଳିଙ୍ଗେ,
ମଗଧେ ଦେଖିଛି କେତେ ସୁନ୍ଦରୀ
ଏ ଘୋଷା ଚରଣ ଘସା ପଥରକୁ
ନୋହିବେଟି କେହି ସରି'

ଏ ସମସ୍ତ ଭାବନାର କରୁଣ ପରିସମାପ୍ତି ଘଟେ ଚନ୍ଦ୍ରଭାଗାର ସାଗର ଜଳରେ ଲମ୍ଫ ପ୍ରଦାନ କରି ମୃତ୍ୟୁର ଶୀତଳ ସ୍ପର୍ଶକୁ ସ୍ପର୍ଶ କରିବା ପରେ । ମହର୍ଷି ଅଭିଶାପରେ ଅଭିଶପ୍ତ ହୁଅନ୍ତି ସୂର୍ଯ୍ୟଦେବତା ଓ ତାଙ୍କ ନିମନ୍ତେ ମନ୍ଦିରର ଅକାଳ ପତନ ଅବଶ୍ୟମ୍ଭାବୀ ହୋଇଉଠେ । ଏ ଧାର୍ମିକ ଭାବନା କତିପୟ ଜନମାନସରେ ଅଦ୍ୟାବଧି ଜୀବିତ ଥିଲେ ବି, କେହି ମଧ୍ୟ କଳାପାହାଡ଼ର ଅବତାରଣା କରିଥାନ୍ତି, ଯାହାକୁ Iconoclast fury ଭାବରେ ଅଭିହିତ କରାଯାଏ । ଏ ପ୍ରସଙ୍ଗକ୍ରମେ ଯୋଡ଼ି ହୋଇଯାନ୍ତି ଦେବୀ ରାମଚଣ୍ଡୀ, ଯେ ଅଦ୍ୟାବଧି କୁଶଭଦ୍ରା ଓ ସାଗର ମିଳନ ବିନ୍ଦୁରେ ପ୍ରତିଷ୍ଠିତା । ଜନଶ୍ରୁତି ଅଛି ଯେ, କଳାପାହାଡ଼ ତୃଷାତୁର ହୋଇ ଦେବୀ ରାମଚଣ୍ଡୀଙ୍କୁ ନାରୀ ରୂପରେ ଦେଖି ପାଣି ପାଇଁ ଅନୁରୋଧ ଜଣାନ୍ତେ ଦେବୀ କଳସୀ ଧରି ନଦୀ ମୁହାଣକୁ ଯାଇ ଆଉ ନଫେରିବାରୁ, ସେ ଯାଇ ଦେଖନ୍ତି ଯେ କେବଳ କଳସୀଟିଏ ପାଣିରେ ଭାସମାନ ଅବସ୍ଥାରେ ଅଛି, ଗାଇ ଉଠିଲା:

‘ଭଲା ରାମଚଣ୍ଡୀ ଭଲାରେ,
କଳା ପାହାଡ଼କୁ ଦୁଆରେ ବସାଇ
ଭଲା ପାଣି ପାଇଁ ଗଲାରେ ।’

ଏସବୁ କିମ୍ବଦନ୍ତୀ ଓ ମନଗଢ଼ା ଆଖାୟିକା । ଡଃ କରୁଣାସାଗର ବେହେରା କଳାପାହାଡ଼ ନାମଧାରୀ ସେପରି କୌଣସି ଚରିତ୍ର ଆକ୍ରମଣକାରୀକୁ ଐତିହାସିକ ଭାବରେ ସ୍ୱୀକୃତି ଦେଇନାହାଁନ୍ତି । ଏ ସମସ୍ତ ଭାବନା ଓ ଚିନ୍ତାଧାରାର ସମାଧି ଘଟିଥିଲେ ହେଁ ସର୍ବପ୍ରଥମେ ଏହାର ପତନର ମୁଖ୍ୟ କାରଣ ପ୍ରତି ଦୃଷ୍ଟି ଦେବାକୁ ହେବ । ଭୌଗୋଳିକ କାରଣ ପ୍ରତି ଗଭୀର ଦୃଷ୍ଟିପାତ କଲେ ଜଣାଯାଏ, ଏଠାରେ ଭୂକମ୍ପର କୌଣସି କାରଣ ନାହିଁ, ଏହି ମନ୍ଦିରର ଭାରସାମ୍ୟ ରକ୍ଷା ହୋଇ ନ ପାରିବାରୁ ଏହା ଭୂପତିତ ହେଲା । ‘Odisha ଗେଜେଟିୟର’ ପୁରୀ ଭାଗରେ ଅଛି, ଓଡ଼ିଶାରେ ଶେଷ ସ୍ୱାଧୀନ ଭୋଇବଂଶୀ ନରପତି ମୁକୁନ୍ଦଦେବଙ୍କର ଗୋହିରାଟିକିରି ଯୁଦ୍ଧରେ ନିଧନ ହେବା ପର୍ଯ୍ୟନ୍ତ ଏ ମନ୍ଦିର ଏକ ସ୍ୱୟଂସମ୍ପୂର୍ଣ୍ଣ ମନ୍ଦିର ଥିଲା, ଏଠାରେ ପୂଜା ଅର୍ଚ୍ଚନା ସମସ୍ତ କାର୍ଯ୍ୟ ଛତିଶା ନିଯୋଗର ବ୍ୟବସ୍ଥା ରହିଥିଲା । ଅଦ୍ୟାବଧି ମନ୍ଦିର ବେଢ଼ାସ୍ଥିତ କୂପ, ରନ୍ଧନଶାଳା, ମୁକ୍ତିମଣ୍ଡପ, ମାଜଣାମଣ୍ଡପ ପ୍ରତ୍ୟେକ ଦୃଷ୍ଟିଗୋଚର ହୁଏ । ଆକବରଙ୍କ ରାଜସଭାର ପଣ୍ଡିତ ସଭାସଦ୍ୟ ‘ଆବୁଲଫାଜଲ’ ଏହି ମନ୍ଦିର ପରିଦର୍ଶନ କରି ଉଚ୍ଚ ମନ୍ତବ୍ୟ ପ୍ରଦାନ କରିଥିବା କାରଣରୁ ଜଣାଯାଏ ଯେ ସେସମୟରେ ମନ୍ଦିର ଥିଲା ସ୍ୱୟଂ ସମ୍ପୂର୍ଣ୍ଣ । ତେଣୁ ଭୂକମ୍ପଜନିତ କ୍ଷତି, ଚୁମ୍ବକୀୟ ପ୍ରସଙ୍ଗ, କଳାପାହାଡ଼ର ଆକ୍ରମଣ ଏସବୁ ମିଥ୍ୟା ଓ କପୋଳକଳ୍ପିତ । ୧୯୯୨ଠାରୁ ଭାରତୀୟ ପ୍ରତ୍ନତାତ୍ତ୍ୱିକ ଗବେଷଣା ଏହାର ରକ୍ଷଣାବେକ୍ଷଣ କରୁଛନ୍ତି ।

ବ୍ରଜପାତଜନିତ ଧ୍ୱଂସ ହେବାର ଆଶଙ୍କା ମଧ୍ୟ ଅମୂଳକ । ଏହାର କାନ୍ଥର ମୋଟେଇ ୨୫ ଫୁଟ, ବଜ୍ରପାତରୁ ରକ୍ଷା ନିମନ୍ତେ ଏଥିରେ ଚକ୍ର, ତ୍ରିଶୂଳ ଓ ଅଷ୍ଟଧାତୁର କଡ଼ା ତମ୍ବାପାତର ବ୍ୟବହାର କରାଯାଇଅଛି । ଇଂରେଜ ଇଂଜିନିୟର ମିଷ୍ଟର ଆର୍ଟର୍ଣ୍ଣଙ୍କ ମତ ଯେ ମନ୍ଦିର ନିର୍ମାଣ ନିୟମରେ ଗର୍ଭଗୃହ ଓ ମୁଖଶାଳା ଭର୍ତ୍ତି ହୋଇଥିବା ବାଲି କାଢ଼ିବା ସମୟରେ ପ୍ରବଳ ପାର୍ଶ୍ୱଚାପ ଫଳରେ ବଜ୍ରକାନ୍ଥଗୁଡ଼ିକ ଭିତରକୁ ଖସିପଡ଼ିଲା । ଏଠାରେ ପ୍ରଶ୍ନଉଠେ ମନ୍ଦିର ଗର୍ଭଗୃହରେ ସିଂହାସନ ନିର୍ମିତ ହେଲା କାହିଁକି ? ୧୫୬୮ ପରେ ଓଡ଼ିଶାରେ ଆଫଗାନ ଶାସନର ସୂତ୍ରପାତ ଘଟେ । ଏ ସମୟରେ ମନ୍ଦିରମାନଙ୍କ ପ୍ରତି ଘୋର ଅବହେଳା ପ୍ରଦର୍ଶିତ ହୋଇଥିଲା । ୧୬୦୯ ଖ୍ରୀ.ରେ ଗର୍ଭଗୃହର ଶୀର୍ଷଦେଶରେ ଥିବା ‘ଧ୍ୱଜପଦ୍ମ’ ଖସିପଡ଼ିଲା । ଭାରସାମ୍ୟ ରକ୍ଷାଜନିତ ତ୍ରୁଟିବିଚ୍ୟୁତି ଧିରେ ଧିରେ ମନ୍ଦିରକୁ ଧ୍ୱଂସମୁଖକୁ ଆଗେଇନେଲା । ପରେ ପରେ ଗଜପତି ରାମଚନ୍ଦ୍ରଦେବଙ୍କ ଦେହାନ୍ତ ହେଲା । ସେ ପର୍ଯ୍ୟନ୍ତ ମନ୍ଦିର ଅକ୍ଷୁଣ୍ଣ ଥିଲା । ୧୬୦୭ ରୁ ୧୬୨୨ ଖ୍ରୀ. ପର୍ଯ୍ୟନ୍ତ ଗଜପତି ଶ୍ରୀମନ୍ଦିର ଆକ୍ରମଣ, ପରେ ତୋଡ଼ରମଲ୍ଲଙ୍କ ପୁତ୍ର କଳାଣମଲ୍ଲ ଓଡ଼ିଶାର ସୁବାଦାର ହେଲେ । ସେ ବି ପୁରୁଷୋତ୍ତମ ଦେବଙ୍କ ବିରୋଧୀ ଥିଲେ । ଏସବୁ କାରଣରୁ ଏହି ମନ୍ଦିର ରାଜାନୁଗ୍ରହ ଓ ଅନୁକମ୍ପାରୁ ବଞ୍ଚିତ ହୋଇପଡ଼ିଥିଲା ।

ପରବର୍ତ୍ତୀ ସମୟରେ ମକରମ ଖାଁଙ୍କ ଆକ୍ରମଣରେ ଗଜପତି ଅତିଷ୍ଠ ହୋଇ ‘ମାଣିତ୍ରିଗଜ’ରେ ଅବସ୍ଥାନ କଲେ ଏବଂ ସେଠାରେ ତାଙ୍କର ବିୟୋଗ ଘଟିଥିଲା । ତେଣୁ ଏହା ଅନସ୍ୱୀକୃତ ଯେ ୧୬୦୯ ଖ୍ରୀ.ରୁ ଆରମ୍ଭ ହେଲା କୋଣାର୍କ ସୂର୍ଯ୍ୟ ମନ୍ଦିରର

ପତନକାଳ । ଆଫଗାନମାନଙ୍କ ଦ୍ୱାରା ଓଡ଼ିଶା ବାରମ୍ବାର ଆକ୍ରମଣର ଶୀକାର ହୋଇ ସେମାନଙ୍କର ପୈଶାଚିକ ଲୋଲୁପ ଦୃଷ୍ଟିରୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବାରମ୍ବାର ଶ୍ରୀମନ୍ଦିର ଗର୍ଭଗୃହରୁ ବାହାରକୁ ଅଣାଯାଇ ଓଡ଼ିଶାର ବିଭିନ୍ନ ସ୍ଥାନରେ ଗୋପନରେ ରଖାଯାଇଥିଲା, ଏ କାର୍ଯ୍ୟ ତତକାଳୀନ ଗଜପତିମାନଙ୍କ ଦ୍ୱାରା ସାଧିତ ହୋଇଥିଲା ।

ଶୈଳ୍ପିକ ଚାତୁର୍ଯ୍ୟର ଅନନ୍ୟ ଇନ୍ଦ୍ରପୁରୀ, ସ୍ଥାପତ୍ୟର ଅଭିନବ' ତଥା ଜୀବନ୍ତ ସ୍ୱାକ୍ଷର, ଭାସ୍କର୍ଯ୍ୟର ଏକ ବିଶ୍ୱବିମୋହକ ପୀରାମିଡ଼ କହିଲେ ଅତ୍ୟୁକ୍ତି ହେବ ନାହିଁ । ରଥାକୃତିର ମନ୍ଦିର, ଅରୁଣ ସାରଥି, ସପ୍ତାଶ୍ୱବାହିତ ରଥ କେଉଁ ମୁହୂର୍ତ୍ତରେ ଆକାଶମାର୍ଗ ଉଡ଼ିଯିବାକୁ ସତେ ଉଦ୍ୟମରତ । ସେହି ଭାସ୍କର ନିର୍ମିତ ଅଶ୍ୱ ଆଜି ବି ଦର୍ପିତ ଓଡ଼ିଶାର ଦାମ୍ଭିକତାକୁ ସୁଦୃଢ଼ ରଖିଅଛି । ୨୪ ଚକ ଚତୁର୍ବିଂଶ ଶୀର ତତ୍ତ୍ୱ ଉପରେ ଆଧାରିତ । ପ୍ରତ୍ୟେକ ଅରରେ ଭିନ୍ନ ଦେବାଦେବୀଙ୍କର ମୂର୍ତ୍ତି ଖୋଦିତ, କେଉଁ ଚକ୍ରରେ ମଧ ରମଣୀର ପ୍ରାତଃ ଶଯ୍ୟା ତ୍ୟାଗଠାରୁ ରାତ୍ରିକାଳୀନ ବିଶ୍ରାମ ପର୍ଯ୍ୟନ୍ତ ନିଖୁଣତା ଓ ନିପୁଣତାର ଚିତ୍ର ନିହଣ ଓ ମୁଗୁର ମୁନରେ ଶିଳ୍ପୀ ଆଙ୍କିଛନ୍ତି ।

ମାନବର ଶରୀର ସହିତ ମନ୍ଦିର ପରିକଳ୍ପନା ପ୍ରାୟ ସମାନ । ପାଦ , ଜଂଘ, କଟୀ, ଉଦର, ବକ୍ଷ, ଗ୍ରୀବା ଓ ମସ୍ତକ ପରି ମନ୍ଦିରର ପାଦ, ଜଂଘ (ତଳ ଓ ଉପର) ପଟା, କଣି, ବସନ୍ତ, ପାଭାଗ, ଗ୍ରୀବା ଓ ଖପୁରୀ, ବାଡ଼ ଦେଖାଯାଏ । ଶ୍ରୀକ୍ଷେତ୍ର, ଶଙ୍ଖକ୍ଷେତ୍ର, ଯାଜପୁର ଗଦାକ୍ଷେତ୍ର, ଭୁବନେଶ୍ୱର ଏକାମ୍ରକ୍ଷେତ୍ର ଓ 'କୋଣାର୍କ' ଅର୍କକ୍ଷେତ୍ର । ପଦ୍ମଫୁଲର ପାଖୁଡ଼ା ଉପରେ ମନ୍ଦିର ଅତୀବ ରମଣୀୟ । ପ୍ରାଚୀନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଏହା 'ମୈତ୍ରେୟବନ' ନାମରେ ସୁବିଖ୍ୟାତ ।

ଭାରତର ପ୍ରଖ୍ୟାତ ପ୍ରନ୍ତତତ୍ତ୍ୱବିଦ ଐତିହାସିକ ଡଃ ଦେବଳା ମିତ୍ର ମୁଖଶାଳା ଓ ମୁଖ୍ୟ ମନ୍ଦିରର ନିମ୍ନଭାଗରେ ଥିବା ହାତୀମାନଙ୍କର ଗଣନା କରି ୮୦୦୦ ସଂଖ୍ୟା ବୋଲି ସ୍ଥିର କରିଛନ୍ତି । ୧୨୦୦ ବର୍ଦ୍ଧକୀଙ୍କର ୧୨ ବର୍ଷର ଏକ ସ୍ଥାନରେ ସ୍ଥିରୀକୃତ ଭାବରେ ମନ୍ଦିର ନିର୍ମାଣ, ଯେଉଁଥିରେ ସେମାନଙ୍କର ସ୍ୱଚ୍ଛ ହୃଦୟ ଓ ମନର ପ୍ରତିଫଳନ ପ୍ରତିଫଳିତ । ୨୪ ଅଶ୍ୱ ୨୪ ପକ୍ଷର ପ୍ରତୀକ ଏବଂ ୩ ଅଶ୍ୱ ସପ୍ତାହ ଓ ସାତରଙ୍ଗ ତଥା ସପ୍ତସ୍ୱରର ପ୍ରତୀକ । ମୁଖଶାଳାରେ ଥିବା ୩ ଅଶ୍ୱଙ୍କ ମଧ୍ୟରୁ ୪ ଜଣ ଡ଼ାହାଣ ଅର୍ଥାତ ଦକ୍ଷିଣ ଭାଗରେ ୩ ଜଣ ବାମଭାଗ ଅର୍ଥାତ ଉତ୍ତର ଭାଗରେ ଘୋଡ଼ ହୋଇଛନ୍ତି । କେହି କେହି ପ୍ରକାଶ କରନ୍ତି ଯେ ଡାହାଣ ଭାଗ ବାମ ଭାଗଠାରୁ ଶକ୍ତିଶାଳୀ ଅଧିକ, କେହି କହନ୍ତି ମନ୍ଦିର ନିର୍ମାଣ ବେଳେ ସୂର୍ଯ୍ୟ ଦକ୍ଷିଣାୟନରେ ଥିବାରୁ ଏ ପରିକଳ୍ପନା କରାଯାଇପାରିଥାଏ । ସମଗ୍ର ଓଡ଼ିଶା ତଥା ମହାଭାରତୀୟ ସଂସ୍କୃତିର ଅନନ୍ୟ ଏ ସୂର୍ଯ୍ୟମନ୍ଦିର କୋଣାର୍କ । ଏଠି କୋଣଅର୍କ (ସୂର୍ଯ୍ୟ) କୋଣାଦିତ ଭାବରେ ସୂର୍ଯ୍ୟଙ୍କୁ ଅଭିହିତ କରାଯାଏ । ପ୍ରଥମ ଉଦିତ ବାଳସୂର୍ଯ୍ୟର ଆଭା ନାଟ ମନ୍ଦିର ଓ ଜଗମୋହନ ଓ ଗର୍ଭଗୃହରେ ପ୍ରତିଷ୍ଠିତ ସୂର୍ଯ୍ୟ ବିଗ୍ରହର କପାଳ ସ୍ପର୍ଶ କରୁଥିଲା, ନାଟ ମନ୍ଦିର ଓ ମୁଖଶାଳା ମଧ୍ୟରେ ବିରାଜୁଥିଲା ଅରୁଣସ୍ତମ୍ଭ, ଘନ କଳା ମୁଗୁନି ପ୍ରସ୍ତରରେ ଏହା ନିର୍ମିତ, ଉପରଭାଗରେ ଅରୁଣ ଯୋଡ଼ହସ୍ତରେ ଆସୀନ ।

ମୁଖ୍ୟ ମନ୍ଦିରର ୩ ପାର୍ଶ୍ୱରେ ରହିଛନ୍ତି ଅପୂର୍ବ କମନୀୟ ମୁଖ ଲାବଣ୍ୟରେ ଢଳଢଳ ବାଳସୂର୍ଯ୍ୟ, ଗମ୍ଭୀର ତାପ ଜର୍ଜରିତ ମଧ୍ୟାହ୍ନ ସୂର୍ଯ୍ୟ ଏବଂ କ୍ଳାନ୍ତ, ମ୍ଳାନ ଅସ୍ତସୂର୍ଯ୍ୟ । ଏ ସମସ୍ତେ ନିଖୁଣ କଳା ମୁଗୁନି ପ୍ରସ୍ତରରେ ନିର୍ମିତ । ମୁଖଭଙ୍ଗୀ, ଅଙ୍ଗବସ୍ତ୍ର, ବାହନ ଓ ପାର୍ଶ୍ୱ ଦେବାଦେବୀରେ ଭିନ୍ନ ଅଙ୍କନ ସମୟ ସହିତ ତାଳ ଦେଇ ନିର୍ମିତ । ସୂର୍ଯ୍ୟଙ୍କର ପ୍ରାତଃ, ମଧ୍ୟାହ୍ନ ଓ ଅପରାହ୍ନ ବେଳାର କିରଣପାତ ହେଲେ ଏ ବିଗ୍ରହମାନେ ହୋଇଉଠନ୍ତି ଜୀବନ୍ତ ଓ ଉଲ୍ଲସିତ । ବିଶ୍ୱ କବି ରବିନ୍ଦନାଥ ତାଙ୍କ ଭ୍ରମଣରେ କହିଥିଲେ, "Where the words of human being have been defeated by the words of stone carved images"

ବାତ୍ସାୟନଙ୍କର କାମସୂତ୍ର ୬୪ ପ୍ରକାର ଚିତ୍ର ମନ୍ଦିର ଗାତ୍ରରେ ଖୋଦିତ । ଏହା ବିବିଧ ଯୌଗିକ ପ୍ରକ୍ରିୟାର ସ୍ୱଚ୍ଛ ପ୍ରତିଫଳନ । ମାନବର ଜୀବନଧାରାକୁ ସୁଶୃଙ୍ଖଳିତ ତଥା ଆଦର୍ଶନିଷ୍ଠ କରିବା ନିମନ୍ତେ ଏହା ଇଙ୍ଗିତ ପ୍ରଦାନ ମଧ୍ୟ କରେ । ବୈବାହିକ ଜୀବନକୁ ଅଧିକ ସୁଖମୟ ଓ ମଧୁମୟ କରିବା ନିମନ୍ତେ ଶୈଳ୍ପିକ ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି । ଓଡ଼ିଶାର କଳା, ସାହିତ୍ୟ, ସଙ୍ଗୀତ, ଧର୍ମୀୟ ଭାବନା, ପରମ୍ପରା, ଗୁରୁଶିଷ୍ୟ

ସମ୍ପର୍କ, ରାଜାଭିଷେକ, ବିବାହ ଶୋଷଣ, ଉତ୍ପୀଡ଼ନ, ଦଣ୍ଡବିଧି ବ୍ୟବସ୍ଥା, ବହିର୍ଦ୍ଦେଶୀୟ ବ୍ୟାପାରରେ ସାଂସ୍କୃତିକ ତଥା ବାଣିଜ୍ୟିକ ସମ୍ପର୍କ ସ୍ଥାପନ, ବାଲ୍ୟବିବାହ ପ୍ରଥା, ବାର୍ଦ୍ଧକ୍ୟାବସ୍ଥାରେ ଗ୍ରହଣ କରାଯାଉଥିବା ବାନପ୍ରସ୍ଥ, ବହୁପତ୍ନୀ ଗ୍ରହଣ ବ୍ୟବସ୍ଥା, ହସ୍ତୀଖେଦା, ରାତ୍ରୀକାଳୀନ ଯାତ୍ରା ସମୟରେ ପଥପ୍ରାନ୍ତରେ ଖାଦ୍ୟ ରନ୍ଧନ ବ୍ୟବସ୍ଥା, ନାରୀର ଆଭୂଷଣ ସାମଗ୍ରୀ, ପଥ ମଧ୍ୟରେ ଦସ୍ୟୁ ଆକ୍ରମଣ, ଶୀକାର କରିବାର ଦୃଶ୍ୟ, ରାଜାରାଣୀଙ୍କର ସ୍ୱତନ୍ତ୍ର ଦରବାର, ଦକ୍ଷିଣ ଆଫ୍ରିକୀୟ ରାଷ୍ଟ୍ର ସହିତ ଓଡ଼ିଶାର ସାଂସ୍କୃତିକ ତଥା ବାଣିଜ୍ୟିକ ଭାବର ଆଦାନପ୍ରଦାନ ସ୍ୱରୂପ ଜିରାଫର ଚିତ୍ର ମୁଖ୍ୟ ସ୍ଥପତି ଓ ତାଙ୍କ ଧର୍ମପତ୍ନୀଙ୍କର ଏକ ଚିତ୍ର, ସଙ୍ଗୀତାସରର ଚିତ୍ର, ବାହାର ଦେଶକୁ ହସ୍ତୀ ରପ୍ତାନିର ଦୃଶ୍ୟ, ଯୁଦ୍ଧର ବିଭୀଷିକା, ଓଡ଼ିଶୀ ସଙ୍ଗୀତର ବିବିଧ ମୁଦ୍ରା, ରଣ ନର୍ତ୍ତକ, ନର୍ତ୍ତକୀ, ବିବିଧ ଶାଳଭଙ୍କା, କଳାହାନ୍ତରିତା, ପ୍ରୋଷିତଭର୍ତ୍ତୃକା, କୁଳବଧୂମାନଙ୍କର ସୁଦୃଶ୍ୟ ଛବି ଏକାନ୍ତ ହୃଦ୍ୟ ତଥା ମନୋରମ ।

କୋଣାର୍କ ନାଟମନ୍ଦିର ମୁଖ୍ୟ ପ୍ରବେଶ ପଥରେ ୨ଟି ହସ୍ତୀ ଉପରେ ରହିଛି ୨ଟି ଦୁର୍ଦ୍ଦାନ୍ତ ସିଂହଙ୍କର ଚିତ୍ର । ସବୁଠାରୁ ଆଶ୍ଚର୍ଯ୍ୟଜନକ କଥା ଏହି ଯେ, ଦୁଇହାତୀଙ୍କର ଶୁଣ୍ଢରେ ୨ଟି ମାନବଙ୍କର ଆବଦ୍ଧ ଦୃଶ୍ୟ ଖୋଦିତ, ଯେଉଁମାନଙ୍କର ମୁଖରେ ଶ୍ମଶ୍ରୁ ଥିବାର ଚିତ୍ର ଦେଖିବାକୁ ମିଳେ । ହସ୍ତୀ ପୃଷ୍ଠଭାଗରେ ସିଂହ ସବାର ହେବାର ଦୃଶ୍ୟ ଏକ ସାଧାରଣ ଚିତ୍ର, କିନ୍ତୁ ଏ ବିରଳତାରେ କିଛି ରହସ୍ୟ ଲୁକ୍‌କାୟିତ । ରାଜା ନରସିଂହ ଦେବ ତାଙ୍କ ରାଜତ୍ୱକାଳରେ ୪ ଥର ବାହାର ରାଜ୍ୟର ଆଫଗାନମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିବାରୁ ତାଙ୍କ ବିଜୟର ସ୍ମାରକୀ କୁହାଯାଉଥିବା ଏହି ନାଟମନ୍ଦିରରେ ଆଫଗାନ ମୁସଲମାନ ସୈନ୍ୟଙ୍କର ବିଗ୍ରହକୁ ସ୍ଥାନ ଦେଇପାରିଥାନ୍ତି । ନାଟ ମନ୍ଦିରରେ ରାଜାଙ୍କର ଯୁଦ୍ଧାଭାସର ଚିତ୍ର, ପଶୁ ସହ ଯୁଦ୍ଧର ଚିତ୍ର, ୨ ଜଣ ନାରୀଙ୍କର ପାରସ୍ପରିକ ମୁଷ୍ଟି ଯୁଦ୍ଧ, ଯାହାକୁ ପରିଦର୍ଶନ କରି ତତକାଳୀନ ମହୀୟସୀ ଇନ୍ଦିରା ଗାନ୍ଧୀ ନିଜର ଦୁଇ ପୁତ୍ରବଧୂ ସୋନିଆ ଓ ମେନକାଙ୍କୁ ୧୯୭୫ ମସିହାରେ ଓଡ଼ିଶା ଗସ୍ତରେ ଆସଥିବା ସମୟରେ ଭାବ ବିହ୍ୱଳିତା ହୋଇ ଦେଖାଇଥିଲେ । ୧୯୯୪ ରେ 'UNESCO' ଦ୍ୱାରା ଏହି ମନ୍ଦିର 'World Heritage' ର ମାନ୍ୟତା ଲାଭ କରିଅଛି । ASI ଦ୍ୱାରା ମନ୍ଦିର ପରିଦର୍ଶନ ନିମନ୍ତେ ପ୍ରବେଶିକା ଶୁଳ୍କର ବ୍ୟବସ୍ଥାରେ ଭାରତୀୟ ପର୍ଯ୍ୟଟକଙ୍କ ନିମନ୍ତେ ୧୦ ଟଙ୍କା କରାଯାଇଥିବାବେଳେ ବୈଦେଶିକଙ୍କ ନିମନ୍ତେ ୫ ଡଲାର କିମ୍ବା ୨୫୦ ଟଙ୍କା ରଖାଯାଇଅଛି । କ୍ୟାମେରାର ପ୍ରକାରଭେଦ ନେଇ ଶୁଳ୍କର ଧାର୍ଯ୍ୟ ହୋଇଛି । କୋଣାର୍କର ସର୍ବାଦୌ ଆକର୍ଷଣୀୟ ହେଉଛି ନବଗ୍ରହ ଶିଳା, ଏକକ ବିଶାଳ କଳା ମୁଗୁନି ପଥରରେ ୯ଟି ଗ୍ରହଙ୍କର ନିତାନ୍ତ ନିଖୁଣ କମନୀୟ ଅଙ୍ଗ ସୌଷ୍ଠବ ଏବେବି ସମ୍ପୂର୍ଣ୍ଣ ଦୁର୍ଲ୍ଲଭ ।

ଇଂରେଜ ସରକାର ଏହାର କାରୁକାର୍ଯ୍ୟରେ ଅତୀବ ମୁଗ୍ଧ ହୋଇଥିଲେ । ସମ୍ପ୍ରତି ପୂଜା ପାଉଥିବା ନବଗ୍ରହ ଶିଳା ମୂଳଖଣ୍ଡର ଏକ ତୃତୀୟାଂଶ । ଆଜି ବହୁ ଭକ୍ତ ଏହି ନବଗ୍ରହ ପୂଜାପାଠ କରି ମନସ୍କାମନା ପୂର୍ଣ୍ଣ କରିବାର ମାର୍ଗ ଦେଖନ୍ତି । ଏହି ନବଗ୍ରହ ଭିତରୁ ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ପୂଜିତ ହେଉଛନ୍ତି ।

ଅର୍କକ୍ଷେତ୍ରରେ କୋଣାର୍କର ସୂର୍ଯ୍ୟମନ୍ଦିରର ସ୍ଥିତି ଠିକ୍ ଗ୍ରହମଣ୍ଡଳୀର ମଧ୍ୟବିନ୍ଦୁରେ ସୂର୍ଯ୍ୟଙ୍କ ଅବସ୍ଥାନ ପରି ଏହାର ଅବସ୍ଥିତି । ତତ୍‌କାଳୀନ ବିଜ୍ଞମଣ୍ଡଳୀ, ଜ୍ୟୋତିଷ୍କ, ଶିଳ୍ପଶାସ୍ତ୍ରବିତ୍‌ମାନଙ୍କ ତତ୍ତ୍ୱାବଧାନରେ ହୋଇପାରିଅଛି । ଏଗାର ଏକର ଭୂପରିବେଷ୍ଟିତ ସ୍ଥାନ ପ୍ରାଚୀର ଦ୍ୱାରା ହୋଇଥିଲା ଆବଦ୍ଧ । ଏହା ପୂର୍ବ ପଶ୍ଚିମର ଦୈର୍ଘ୍ୟ ଥିଲା ୮୫୭ ଫୁଟ, ଉତ୍ତର ଦକ୍ଷିଣ ୫୪୦ ଫୁଟ । ପ୍ରାଚୀରର ଉଚ୍ଚତା ଥିଲା ୧୫ ଫୁଟ, ମୋଟେଇ ଥିଲା ୬ ଫୁଟ । ଏଥିରେ ଦୁଇଟି ଦ୍ୱାର ଥିଲା ପୂର୍ବ ଓ ଦକ୍ଷିଣ । ପୂର୍ବ ପାର୍ଶ୍ୱରେ ବିରାଜମାନ ଗୁମୁଟରେ ଥିବା ମନ୍ଦିରର ସ୍ଥିତି ପ୍ରାୟ ନାହିଁ । ବେଢ଼ା ମଧ୍ୟରେ ଥିଲା ୨୮ଟି ମନ୍ଦିର, ଅଦ୍ୟାବଧି ଯାହାର କୌଣସି ଲେଶମାତ୍ର ଚିହ୍ନବର୍ଣ୍ଣ ନାହିଁ । ସମ୍ପ୍ରତି ଦକ୍ଷିଣ ପଟେ ପାକଶାଳାର ଭଗ୍ନାବଶେଷ, ରୋଷ କାର୍ଯ୍ୟ ନିମନ୍ତେ କୂଅ ମଧ୍ୟ ଅଦ୍ୟାବଧି ଅଛି । ଏତଦ୍‌ବ୍ୟତୀତ ସରଗୃହର ଭଗ୍ନାବଶେଷ, ଏହାର ପଶ୍ଚିମକୁ ଯୁପବେଦୀ ମଧ୍ୟ ରହିଅଛି । ଆବୁଲଫାଜଲଙ୍କର 'ଆଇନ-ଇ-ଆକବରୀ' ଗ୍ରନ୍ଥରୁ ଜଣାଯାଏ ଯେ ବେଢ଼ା ମଧ୍ୟରେ ୬ ଗୋଟି ମନ୍ଦିର ଓ ବାହାରେ ୨୨ଟି ମନ୍ଦିର ଥିଲା । ସୂର୍ଯ୍ୟ ମନ୍ଦିର ଐଶାନ କୋଣରେ ଶିବ ମନ୍ଦିର,

ଅଗ୍ନିକୋଣରେ ଗଣେଶ ମନ୍ଦିର, ନୈଋତ କୋଣରେ ବିଷ୍ଣୁମନ୍ଦିର ଓ ବାୟୁକୋଣରେ ଦେବୀ ମନ୍ଦିର ଅବସ୍ଥିତ । ଏ ସମସ୍ତର ରୂପରେଖ ନାହିଁ ।

### କୋଣାର୍କରୁ ଅପସାରିତ ବିଗ୍ରହ

ଖ୍ରୀ. ୧୬୨୮ ମାର୍ଚ୍ଚ ୧୭ ତାରିଖରେ ଏହି ମନ୍ଦିରରୁ ସୂର୍ଯ୍ୟନାରାୟଣ ବିଗ୍ରହ ସ୍ଥାନାନ୍ତରିତ ହୋଇ ପୁରୀ ଶ୍ରୀମନ୍ଦିରର ମଧ୍ୟରେ ଥିବା ଲକ୍ଷ୍ମୀମନ୍ଦିର ନିକଟରେ ଥିବା ଇନ୍ଦ୍ରଙ୍କ ମନ୍ଦିର ନିକଟରେ ସ୍ଥାନିତ କରାଗଲା । ସେହି ଦିନଠାରୁ ଏଠାରେ ପୂଜା ପ୍ରଚଳିତ ହୋଇଆସୁଅଛି । ୧୭୭୯ ଖ୍ରୀ.ରେ ମରହଟ୍ଟା ଶାସନ କାଳରେ କୋଣାର୍କ ସମ୍ମୁଖରେ ଖସି ପଡ଼ିଥିବା 'ଅରୁଣସ୍ତମ୍ଭ'କୁ ଖଣ୍ଡ ଖଣ୍ଡ କରି ପୁରୀ ନିଆଯାଇ ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ ସ୍ଥାପନ କରାଗଲା । ପୁରୀର ସ୍ଥାନୀୟ ପ୍ରସ୍ତର ଶିଳ୍ପୀ ଏହାକୁ 'କରାଳ' ଅଠା ଦେଇ ଯୋଡ଼ି ଏପରି ସର୍ବାଙ୍ଗ ସୁନ୍ଦର ଭାବେ ସ୍ଥାପନ କରିଥିଲେ ଯେ ତାହା ଅଦ୍ୟାବଧି ବହୁବିଜ୍ଞ ଇଂଜିନିୟରମାନଙ୍କ ନିମନ୍ତେ ସନ୍ଦେହର ବିଶାଳ ପ୍ରଶ୍ନବାଚୀ ରୂପରେ ଦଣ୍ଡାୟମାନ । କୋଣାର୍କର ବହୁବିଧ ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ଏହା ସମଗ୍ର ବିଶ୍ୱରେ ବିଖ୍ୟାତ । ଏହି ମନ୍ଦିରର ଅନେକ ବିଗ୍ରହ ସମ୍ପ୍ରତି ଶ୍ରୀମନ୍ଦିର ପୁରୀର ଭୋଗମଣ୍ଡପରେ ସ୍ଥାନ ପାଇଛନ୍ତି, ଯେଉଁ ଚିକକଣ କଳା ମୁଗୁନିର ତୁଳନା ନାହିଁ । କୋଣାର୍କର ନବଗ୍ରହ ପ୍ରସ୍ତର ଖିଚିଙ୍ଗରୁ ଅଣାଯାଇଥିଲା । ମୁଖ୍ୟ ମନ୍ଦିରରେ ଥିବା ସୁବିଶାଳ ଗଜସିଂହର ଓଜନ ମଧ୍ୟ କଳ୍ପନାତୀତ ।

ପୁରନ୍ଦର କେଶରୀଙ୍କ ଦ୍ୱାରା ୯ମ ଶତାବ୍ଦୀରେ ନିର୍ମିତ ପ୍ରାଚୀନତମ ସୂର୍ଯ୍ୟମନ୍ଦିର ଯାହା ମନ୍ଦିର ବେଢ଼ାର ଦକ୍ଷିଣ ଭାଗରେ ଅବସ୍ଥିତ, ଏହା ଏବେ ଛାୟା ଓ ମାୟା ମନ୍ଦିର ନାମରେ ବିଖ୍ୟାତ । କୋଣାର୍କ କ୍ଷେତ୍ରର ରକ୍ଷୟିତ୍ରୀ ଭାବେ ଅଷ୍ଟଚଣ୍ଡୀ ପ୍ରତିଷ୍ଠିତ ହୋଇଥିଲେ, ଏମାନେ ହେଲେ ରାମଚଣ୍ଡୀ, ଖାଲକୋଠି, ଭଗବତୀ, ରୁଦ୍ରାଣୀ, ଖିଲେଶ୍ୱରୀ, ଚର୍ଚ୍ଚିକା, ଝାଡ଼େଶ୍ୱରୀ ଓ ମହାକାତ୍ୟାୟନୀ । ଏମାନଙ୍କ ବ୍ୟତୀତ ଅଷ୍ଟରୁଦ୍ର ହେଲେ ମୁକ୍ତେଶ୍ୱର, କାମଦେବ, ଶୋଭନେଶ୍ୱର, ରାମେଶ୍ୱର, ଚିତ୍ରେଶ୍ୱର, ଉତ୍ପଳେଶ୍ୱର, ମଙ୍ଗଳେଶ୍ୱର, ଈଶାନେଶ୍ୱର । ଏମାନଙ୍କ ମଧ୍ୟରୁ ଅନେକ ପୀଠ କାଳର କରାଳ ଗର୍ଭରେ ବିଳୟ ହୋଇଛି ।

ଉତ୍କଳର ଗଜପତିଙ୍କର ସେଦିନର ସେହି ଭାସ୍କରଙ୍କ ଗୃହ ମଧ୍ୟରେ ରାତ୍ରି ଅତିଥି ହେବାର ରହସ୍ୟ ସହିତ ଯୁଦ୍ଧାଶ୍ୱର ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ, ସମ୍ପ୍ରତି ରାଜ୍ୟ ସରକାରଙ୍କର ଯାହା ସଙ୍କେତ ସୂଚୀ ରୂପରେ ରାଜଧାନୀର Master Canteen ଛକରେ ସ୍ଥାପିତ । ପ୍ରତି ବର୍ଷ ମାଘସପ୍ତମୀ ମେଳା ଅବସରରେ ଶ୍ରଦ୍ଧାଳୁ ଲକ୍ଷ ଲକ୍ଷ ଧର୍ମପ୍ରାଣ ମଧ୍ୟ ସ୍ନାନ କରି ବାଳସୂର୍ଯ୍ୟଙ୍କୁ ଦର୍ଶନ କରନ୍ତି । ଶାମ୍ବଦଶମୀର ସେହି ପବିତ୍ର ସ୍ମୃତି ସୂର୍ଯ୍ୟଦେବଙ୍କୁ ପୂଜାର୍ଚ୍ଚନା କରି ଅଭିଶପ୍ତ ଶାମ୍ବ ରୋଗରୁ ମୁକ୍ତି ଲାଭ କରିଥିଲେ । ଭାରତର ତଥା ବିଶ୍ୱର ସର୍ବୋଚ୍ଚ, ସର୍ବୋତ୍ତମ ଆଜି ଭୂମିଶାୟୀ ହେଲେବି ବିଶ୍ୱ ପର୍ଯ୍ୟଟକ ମହଲରେ ପ୍ରଶ୍ନବାଚୀ ହୋଇ ରହିଅଛି । ଅନେକ ଗବେଷଣା ଓ ତଥ୍ୟ ଅଦ୍ୟାବଧି ଆବିଷ୍କୃତ ହୋଇସାରିଲାଣି । ପଣ୍ଡିତ ସ୍ୱର୍ଗତ ସଦାଶିବ ରଥ ଶର୍ମା ଓ ଗଜେନ୍ଦ୍ରନାଥ ଦାଶ ଏବଂ ଆଇସମାନଙ୍କ ମିଳିତ ସହଯୋଗରେ ବିଶାଳ ପୁସ୍ତକ ଅନେକ ତଥ୍ୟ ଓ ଫଟୋ ସମ୍ବଳିତ ପୁସ୍ତକ 'A new light on the Sun temple Konark' ପ୍ରକାଶିତ ହୋଇସାରିଛି । ଏତଦ୍‌ବ୍ୟତୀତ ପଣ୍ଡିତ ସ୍ୱର୍ଗତ କୃପାସିନ୍ଧୁ ମିଶ୍ରଙ୍କ ରଚିତ 'କୋଣାର୍କ' ଓ ଡଃ କରୁଣା ସାଗର ବେହେରାଙ୍କ ରଚିତ 'କୋଣାର୍କ' ସମ୍ବନ୍ଧୀୟ ପୁସ୍ତକ ସମ୍ପ୍ରତି ଗବେଷଣା ସାପେକ୍ଷ ।

ଏଲ୍‌–୪୫, ଫାଷ୍ଟ ଫେଜ୍
ହାଉସିଂ ବୋର୍ଡ, ଭୀମଟାଙ୍ଗି
ଭୁବନେଶ୍ୱର–୨

